କଳିଙ୍ଗ ଭାରତୀ ଗ୍ରନ୍ଥମାଳା

—୧୦—

କଳିଙ୍ଗପ୍ରାଣ

# ବିଚ୍ଛନ୍ଦଚରଣ



୧୯୭୭

ସମ୍ପାଦନା :

ଡାକ୍ତର **ଶୈଳେଶ୍ୱର ନନ୍ଦ**

ପ୍ରକାଶକ—
**କଳିଙ୍ଗ ଭାରତୀ,** କଟକ

ମୁଦ୍ରଣ—
ସଂସାର ପ୍ରେସ୍, କଟକ

ପ୍ରଥମ ମୁଦ୍ରଣ—
୧୯୭୭

ମୂଲ୍ୟ—
ପାଞ୍ଚ ଟଙ୍କା ମାତ୍ର

ଉପଦେଷ୍ଟା—
ଶ୍ରୀ ରଜତ କୁମାର କର
ଡାକ୍ତର କବପ୍ରସାଦ ମିଶ୍ର
ଶ୍ରୀ ଚନ୍ଦ୍ରଶେଖର ନନ୍ଦ

ସମ୍ପାଦନା—
ଡାକ୍ତର ଶୈଳେଶ୍ୱର ନନ୍ଦ

ସହସମ୍ପାଦନା—
ଶ୍ରୀ ପୁରୁଷୋତ୍ତମ ପଟ୍ଟନାୟକ
ଡାକ୍ତର ଅଜିତ କୁମାର କର

# କଳିଙ୍ଗ ଭାରତୀ ଓ ଉତ୍କଳ ଛାତ୍ର ସାହିତ୍ୟ ସମାଜ

ପ୍ରତିଷ୍ଠାବ୍ଦ— ୧୯୪୩

ପ୍ରତିଷ୍ଠାତା— ୰ ବଚ୍ଛନ୍ଦଚରଣ ପଟ୍ଟନାୟକ

ଅଧ୍ୟକ୍ଷ, ଅଭ୍ୟର୍ଥନା ସମିତି— ଶ୍ରୀ ନରସିଂହ ସ୍ୱାଇଁ

ଉପଦେଷ୍ଟା— ଶ୍ରୀ ହୃଦାନନ୍ଦ ରାୟ

ସଭାପତି— ଶ୍ରୀ ରଜତ କୁମାର କର

ଉପସଭାପତି— ଡାକ୍ତର କବପ୍ରସାଦ ମିଶ୍ର
ଇଞ୍ଜିନିୟର ଚନ୍ଦ୍ରଶେଖର ନନ୍ଦ
ଶ୍ରୀ ସୋମନାଥ ନନ୍ଦ

ସମ୍ପାଦକ— ଡାକ୍ତର ଶୈଳେଶ୍ୱର ନନ୍ଦ
ଶ୍ରୀ ପୁରୁଷୋତ୍ତମ ପଟ୍ଟନାୟକ

ସଂଗଠନ ସମ୍ପାଦକ— ଡାକ୍ତର ଅଜିତ କୁମାର କର

ସମ୍ପାଦକ, ଉତ୍କଳ ଯୁବ ସାହିତ୍ୟ ସମାଜ— ଶ୍ରୀ ପ୍ରଫୁଲ୍ଲ କୁମାର ନାୟକ
ଶ୍ରୀ ଚିତ୍ତରଞ୍ଜନ ପଣ୍ଡା

ବଚ୍ଛନ୍ଦ ହୀରକ ଜୟନ୍ତୀ ପରିଚାଳନା ସମିତି—

ଡକ୍ଟର ରାଧାନାଥ ରଥ
ଶ୍ରୀ ବଚକ୍ଷାନନ୍ଦ କର
ଶ୍ରୀ ଶ୍ରୀହର୍ଷ ମିଶ୍ର
ଶ୍ରୀ ଗଜେନ୍ଦ୍ର ନାୟକ
ଶ୍ରୀ ପ୍ରତାପ କୁମାର ଚଉଧୁରୀ
ଶ୍ରୀ ପ୍ରଭାତ କୁମାର ନନ୍ଦ
ଶ୍ରୀ ଶ୍ୟାମସୁନ୍ଦର ପାଢ଼ୀ
ଶ୍ରୀ ଅମୂଲ୍ୟରତ୍ନ ନନ୍ଦ
ଶ୍ରୀ ପ୍ରଶାନ୍ତ କୁମାର ମିଶ୍ର
ଶ୍ରୀ ଅନଙ୍ଗରାଜ ବଶ୍ୱାଳ
ଶ୍ରୀ ବାବୁଲାଲ୍ ଦୋଶୀ
ଶ୍ରୀ ଶିବପ୍ରସାଦ ଦାଶ

# ସମ୍ପାଦକୀୟ

ଆଜକୁ ତିନି ଚଉଠ ଶତାବ୍ଦୀ ପୂର୍ବେ ଓଡ଼ିଆ ଭାଷା ସାହିତ୍ୟ ତଥା ସଂସ୍କୃତିକୁ ବିଜାତୀୟ ପ୍ରଭାବରୁ ମୁକ୍ତ କରି ପରମ୍ପରାନୁବର୍ତ୍ତୀ ଜାତୀୟଭାବରେ ଉନ୍ମୁଖ କରିବାପାଇଁ ଉତ୍କଳଜନନୀର ଅଙ୍କ ବିମଣ୍ଡନ କରିଥିଲେ ସାହିତ୍ୟ ସାଧକ-ସଂଗ୍ରାମୀ ବିଚ୍ଛନ୍ଦଚରଣ । ନିଜର ଦୃଢ଼ ମନୋବଳ, ଅମାପ ପରିଶ୍ରମ, କଠୋର ତପସ୍ୟା ଓ ନିଷ୍ଠାପର ଈଶ୍ୱରବିଶ୍ୱାସ ବଳରେ ତିନି ଶତାବ୍ଦୀର ସାଂସ୍କୃତିକ ଶୃଙ୍ଖଳରୁ ଓଡ଼ିଆ ସାହିତ୍ୟ, ଭାଷା ଓ କଳାକୁ ବିମୁକ୍ତ କରି ତାର ଗୌରବୋଜ୍ଜ୍ୱଳ ଐତିହ୍ୟ-ସହ ସମତା ରକ୍ଷାକରି ସେ ସୃଷ୍ଟି କରିଥିଲେ ସାହିତ୍ୟ ଓ ସାହିତ୍ୟିକ ଗୋଷ୍ଠୀ, ଯେ ଏହି ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ସାରା ଓଡ଼ିଶାରେ ଏକ ବିପ୍ଳବାତ୍ମକ ନବ ଚେତନାର ଜାଗରଣ କରାଇପାରିଥିଲେ । ଗୁରୁଦେବ ବିଚ୍ଛନ୍ଦଚରଣ ପଟ୍ଟନାୟକ ଏ ଜାତିକୁ ଆହ୍ୱାନଦେଇ ନିଜେ କହିଛନ୍ତି, "ଉତ୍କଳୀୟମାନଙ୍କପରି ସଙ୍ଗୀତ-ପ୍ରାଣ, କବିତାପ୍ରାଣ ଓ କଳାପ୍ରାଣ ଜାତି ଏକା ଭାରତରେ କାହିଁକି ସାରା ପୃଥିବୀରେ ଆଉ ନାହାନ୍ତି । କୋଣାର୍କ, ପୁରୀ ଓ ଭୁବନେଶ୍ୱର ପରି ବୈଦେହୀଶ ବିଳାସ, ରସକଲ୍ଲୋଳ ଓ ବିଦଗ୍ଧଚିନ୍ତାମଣି ଉତ୍କଳୀୟମାନଙ୍କର ଅନୁପମ ସୃଷ୍ଟି । ଛନ୍ଦୋମୟ ଗୀତ ଉତ୍କଳୀୟ ଜୀବନର ପ୍ରିୟତମ ସାମଗ୍ରୀ । ଏଥିପାଇଁ ଉତ୍କଳୀୟ ମନୀଷା ବହୁ ଶତାବ୍ଦୀବ୍ୟାପୀ ଶ୍ରମ ଓ ଗବେଷଣାଦ୍ୱାରା ସୃଷ୍ଟି କରିଛି ଅଗଣିତ ଛନ୍ଦ ଓ ସଂଖ୍ୟାହୀନ ରାଗ-ରାଗିଣୀ ।" ଏଣୁ ସେହି ଛନ୍ଦକଳ୍ପତରୁ ତଳେ ରହି ମଧ୍ୟ ରସସୁଧା ନ ମେଣ୍ଟିଲାପରି ଆମେ ପରଧନ ପ୍ରତି ଆସକ୍ତ ହେବା ଦୁଃଖର ବିଷୟ—

"ଗାଉଛି ଉତ୍କଳ ପରସଙ୍ଗୀତ
ନ ଜାଣୁଛି ନିଜେ ନିଜର ବିତ୍ତ
ସେ କାଳ ବିପଞ୍ଚୀ ଏ କାଳ ତାନ
ଯୋଗ ବିନା ଧରି ହାରୁଛି ମାନ
ଛନ୍ଦକଳ୍ପତରୁ ତଳେ ଯେ
ରହି ରସସୁଧା ନ ମେଣ୍ଟୁଛି ତାର
ଭାଗ୍ୟେ ବିଳବ କେ ବଳେ ଯେ ?"

(କବିତା କୁମୁଦ)

ନିଜସ୍ୱ ସାହିତ୍ୟର ବିକଳ୍ପ ଅବସ୍ଥାର ସନ୍ଦର୍ଶନରେ ଦୁଃଖରେ ମ୍ରିୟମାଣ ହେବା ଯେତିକି ଜାତୀୟପ୍ରାଣତାର ପରିଚାୟକ, ତତୋଧିକ ରୂପାୟନ ତାଙ୍କର ଆଶାବାଦର ଆଗ୍ନେୟ ସ୍ଫୁଲିଙ୍ଗ—ଯୁବଗୋଷ୍ଠୀ ପ୍ରତି ଆହ୍ୱାନ—

ଗାଅ ବାଣୀସୁତେ ! ସାରି ସଙ୍ଗୀତ
ଯାର ମହିମା ଏ ହେଉ ସ୍ପନ୍ଦିତ;
ପ୍ରାଚୀନ ଛନ୍ଦରେ ବିଶ୍ୱଭାବନା
ତାଳ ଗାଅ କବି ଉତ୍ଫୁଲ୍ଲମନା ଯେ
ମଧୁଧାରା ବର୍ଷି ସିଞ୍ଚ ହେ
ଅନାଗତ ବଂଶ- ଧରଙ୍କ ପାଇଁକି
ଗୁରୁ ଗଉରବ ସଞ୍ଚ ହେ ।

(କବିତା କୁମୁଦ)

ସେଇ ଆଶାବାଦର ଅପୂର୍ବ ଆଲେଖ୍ୟକାରଙ୍କର ପ୍ରେରଣା ଓ ଉତ୍ସାହରେ ଉନ୍ମାଦିତ ହୋଇ କଳିଙ୍ଗ-ସଂରକ୍ଷ ଯୁବଗୋଷ୍ଠୀ ଗୁରୁଦେବଙ୍କର ଅମର ବାର୍ତ୍ତା ଓଡ଼ିଶାର ପୁରପଲ୍ଲୀ, ଉପାନ୍ତ ଅଞ୍ଚଳ ଓ ସହର, ନଗର-ଠାରୁ ଆରମ୍ଭ କରି ଓଡ଼ିଶା ବାହାରେ ସର୍ବଭାରତୀୟ

ସ୍ତରରେ ଉତ୍କଳୀୟ ନିଜସ୍ୱ ବୈଶିଷ୍ଟ୍ୟ ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ ଓଡ଼ିଆ କଳା ସାହିତ୍ୟର ଜାତୀୟ ପରମ୍ପରା ପ୍ରତି ସମସ୍ତଙ୍କୁ ସଜାଗ କରିବାରେ ସମର୍ଥ ହୋଇଅଛନ୍ତି ।

ଇଂରାଜୀ ଓ ବଙ୍ଗଳା ସାହିତ୍ୟରୁ ଆନୀତ ଭାବଧାରା-ବିମୁକ୍ତ ଛନ୍ଦର ଅନୁରାଗପ୍ରୀତ ସେତେବେଳର ସାହିତ୍ୟିକମାନେ ତରୁଣକୁଳକୁ ପ୍ରଭାବିତ, ଉନ୍ମାଦିତ ତଥା ମଦମତ୍ତ କରାଉଥିଲେ । ଏହି ସାଧନା ମୁଖ୍ୟତଃ ରାଧାନାଥଙ୍କ ସମୟରୁ ଆରମ୍ଭହୋଇ ସବୁଜ ଯୁଗରେ ପାଞ୍ଚଜନ୍ୟ ଶଙ୍ଖର ବିଭିନ୍ନ ସ୍ୱର ଦେଇ ଦେଶସାରା ବିଚ୍ଛୁରିତ ହୋଇପଡ଼ିଲା । ଲୋକେ ଭଞ୍ଜଙ୍କୁ ଭୁଲିବାକୁ ଆରମ୍ଭ କଲେ । ଦୀନକୃଷ୍ଣ, ପଞ୍ଚସଖା, ଅଭିମନ୍ୟୁଙ୍କ ସାହିତ୍ୟ କ୍ରମଶଃ ବିସ୍ମୃତି ଗର୍ଭରେ ଲୋପ ପାଇଲା । ତେଣୁ ନବ ତରୁଣ ସାହିତ୍ୟିକଙ୍କ ଆଖିରେ ଭଞ୍ଜ ଏକ ନାରୀ ଓ ଡିକ୍‌ସିନାରୀର ସ୍ୱରୂପ ଭିନ୍ନ ଆଉ କଣ ବା ହୁଅନ୍ତେ ?

ବିଜୁଳି ଇନ୍ଦ୍ରଧନୁର ବଳ କଷାକଷି ସେତେ-ବେଳକୁ ସରିଛି । କିନ୍ତୁ ବିଚ୍ଛନ୍ଦଚରଣ ଓଡ଼ିଆଙ୍କ ଏତାଦୃଶ ମନୋଭାବ, ଓଡ଼ିଆ ଭାଷାର ଏ କୁପରିଣାମ ଦେଖି ନିଶ୍ଚେଷ୍ଟ ରହିପାରିଲେ ନାହିଁ । ସିଂହର ହୁଂକାରରେ ଗଗନ ପବନ ପ୍ରକମ୍ପିତ ହେଲା । ନିନ୍ଦୁକ ଗୋଷ୍ଠୀ ମଧ୍ୟ ସେତେବେଳେ ଗୁରୁଦେବଙ୍କୁ ଖଞ୍ଜଣାଦ୍ଧୂର୍ଲ ଆଖ୍ୟାରେ ଆଖ୍ୟାୟିତ କରିବାକୁ ଭୁଲି ନ ଥିଲେ ।

ଭଞ୍ଜଜୟନ୍ତୀକୁ ମାଧ୍ୟମ କରି ବିଚ୍ଛନ୍ଦ ଚରଣ ଓଡ଼ିଆ ଜାତିର, ତଥା ଓଡ଼ିଆ ଭାଷାର ନିଜସ୍ୱ ଦାସକାଠିଆ, ପାଲା, ଓଡ଼ିଶୀ ନୃତ୍ୟ, ଓଡ଼ିଶୀ ସଙ୍ଗୀତର ପ୍ରଚାର ତଥା ପ୍ରସାର ଆରମ୍ଭ କଲେ । ପଦ୍ମତୋଳା ଧାଣି ଲୋକଙ୍କର ଚେତନା ଫେରିଆସିଲା । ଲୋକଙ୍କ ଚକ୍ଷୁ ଉନ୍ମୋଚିତ ହେଲା । ଅନ୍ଧ ଦିଗନ୍ତର ଅବସାନ ହେଲା । ଉଚ୍ଛ୍ୱସିତ ଆବେଗରେ ଓଡ଼ିଶାର କୋଣ ବିକୋଣରେ ବିଚ୍ଛନ୍ଦଚରଣଙ୍କର ଆଦର୍ଶର ମଶାଲ ପ୍ରଜ୍ୱଳିତ କଲା ଲକ୍ଷ ଆଲୋକବର୍ତ୍ତିକା । ଭଞ୍ଜଜୟନ୍ତୀ, କବିସୂର୍ଯ୍ୟ ଜୟନ୍ତୀ, ପଞ୍ଚସଖା ଜୟନ୍ତୀ ଇତ୍ୟାଦି ଆଜି ଓଡ଼ିଶାର ସର୍ବତ୍ର ବିପୁଳ ସମାରୋହରେ ପାଳିତ ହେଉଅଛି । ତାଙ୍କର ପ୍ରଚେଷ୍ଟା ଫଳରେ ଭଞ୍ଜ, କବିସୂର୍ଯ୍ୟଙ୍କର ଉପହାସକମାନେ ଉପାସକରେ ପରିଣତ ହେଲେ । ଓଡ଼ିଆ ସଂସ୍କୃତିରୁ ବିଲୁପ୍ତ ଓଡ଼ିଶୀ ନୃତ୍ୟ ଶିକ୍ଷିତ ସମାଜରେ ଆଦୃତ ହେବା ସଙ୍ଗେ ସଙ୍ଗେ ଶାସ୍ତ୍ରୀୟ ନୃତ୍ୟ ରୂପେ ସର୍ବଭାରତୀୟ ସ୍ତରରେ ଗୃହୀତ ହେଲା । ଭଞ୍ଜ, କବିସୂର୍ଯ୍ୟ, ଦୀନକୃଷ୍ଣଙ୍କର ଅମର ରଚନାବଳୀ, ଉତ୍କଳୀୟ ପରମ୍ପରାରୁ ବିସ୍ମୃତପ୍ରାୟ ଛାନ୍ଦ ଓ ଓଡ଼ିଶୀ ସଙ୍ଗୀତ ଜନପ୍ରିୟ ହେବାକୁ ଆରମ୍ଭ କଲା ଓ ବେତାର କେନ୍ଦ୍ରରେ ପ୍ରତ୍ୟହ ପ୍ରଚାରିତ କରାଯାଇ ସମାଦୃତ ହେଲା । ସଙ୍ଗୀତପ୍ରାଣ ଓଡ଼ିଆଙ୍କର ନିଜସ୍ୱ ପାଲା, ଦାସକାଠିଆ, ଗୋଟିପୁଅ ଆଦି ପୁନଶ୍ଚ ପ୍ରତିଷ୍ଠିତ ହୋଇ ସଭା ସମିତିର ସାଂସ୍କୃତିକ ଶୋଭା ମଣ୍ଡନ କଲା ।

ଏସବୁ ଗୁରୁଦେବଙ୍କର ଆଜୀବନ ପ୍ରଚେଷ୍ଟାର ଫଳ । ତାଙ୍କର ପ୍ରତିଷ୍ଠିତ କଳିଙ୍ଗଭାରତୀ ଅନୁଷ୍ଠାନ ଏବେ ମଧ୍ୟ ଓଡ଼ିଶାର ପୁରପଲ୍ଲୀରୁ ପୋଥି, ଡଗଡମାଳୀ ସଂଗ୍ରହ ଓ ଆଇମା କାହାଣୀମାନ ଲିପିବଦ୍ଧ କରିବାରେ ବ୍ରତୀ ।

ନିଜର ଦୁଃଖ ଦୁର୍ବିପାକକୁ ଭ୍ରୂକ୍ଷେପ ନ କରି ସଂଗ୍ରାମୀ ଜୀବନରେ ନିଜକୁ ଉତ୍ସର୍ଗକରି ଗୁରୁଦେବ କହିଛନ୍ତି—"ମୋର ଅଶେଷ କଷଣମୟ ଜୀବନ, ମା କଳିଙ୍ଗ ଭାରତୀର ବର୍ତ୍ତମାନ ଦୁର୍ଦ୍ଦଶାର ଏକ ସଂକ୍ଷିପ୍ତ ସାରସଂଗ୍ରହ ମାତ୍ର । ମା'ର ବେଦନା ସ୍ମରଣକରି ମୁଁ ଯେତେ ବ୍ୟାକୁଳ ହୋଇଉଠେ, ମୋର ଅସହ୍ୟ ଭୌତିକ କଷଣ ତା ତୁଳନାରେ ମୋତେ କିଛି ବାଧେ-ନାହିଁ ।"

ବାସ୍ତବିକ ଅଗାଧ ପାଣ୍ଡିତ୍ୟକୁ ସ୍ୱୀୟ ସ୍ୱଚ୍ଛନ୍ଦ ପାରିବାରିକ ଜୀବନଯାପନ ନିମନ୍ତେ ନିୟୋଜିତ ନ

କରି ଅହର୍ନିଶ ସାହିତ୍ୟ ସାଧନା ଓ ସଙ୍ଗଠନର ବ୍ରତ ନେଇ ଓଡ଼ିଆଜାତିର ଚିରସ୍ଥିତିପାଇଁ ସେ ଯେଉଁ ତ୍ୟାଗ କରିଗଲେ ତାହା ଓଡ଼ିଆ ସାହିତ୍ୟ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ରହିବ । ନିଜର ଶାରୀରିକ ଅକ୍ଷମତାକୁ ଦୃଢ଼ପ୍ରତିଜ୍ଞ ମାନସିକ ଶକ୍ତି ନିକଟରେ ପରାହତ କରି, ଆର୍ଥିକ ଅନାଟନ, ଅସାମାଜିକ ବ୍ୟଙ୍ଗ ଆକ୍ଷେପକୁ ସାଂସ୍କୃତିକ ବାତାବରଣ ମଧ୍ୟରେ ବିସ୍ମୃତ-କରାଇ, ସେ ଆଜୀବନ ଯେଉଁ ନିରବଚ୍ଛିନ୍ନ ସାହିତ୍ୟ ସଂଗ୍ରାମ କରିଯାଇଛନ୍ତି, ତାହା ଏହି ଗ୍ରନ୍ଥର ପ୍ରଥମ ଭାଗରେ "ବିଚ୍ଛନ୍ଦ ଆତ୍ମଜୀବନୀ"ରେ ପ୍ରକାଶିତ । ଏହା ମାତ୍ର ତାଙ୍କ ଜୀବନର ଅର୍ଦ୍ଧେକ ଅନୁଭୂତି—ନିଜର ରୋଗାକ୍ରାନ୍ତ ପୂରୋଜୀବନରେ ସେ ଏହାକୁ ସମ୍ପୂର୍ଣ୍ଣ କରି ପାରିନାହାନ୍ତି । ଏଣୁ ଏହାର ୨ୟ ଭାଗ ବିଭିନ୍ନ ସାହିତ୍ୟିକମାନଙ୍କର ତାଙ୍କ କର୍ମମୟ ଜୀବନ ବିଷୟକ ପର୍ଯ୍ୟାଲୋଚନାରେ ପର୍ଯ୍ୟବସିତ । ତାଙ୍କର ବହୁ ବନ୍ଧୁ, ସହକର୍ମୀ ଓ ଶିଷ୍ୟମଣ୍ଡଳୀ ସେମାନଙ୍କର ଅନୁଭୂତି ଯଥାସମୟରେ ପଠାଇ ପାରିନାହାନ୍ତି । ଏଣୁ ସେ ସମସ୍ତ ଏ ଗ୍ରନ୍ଥରେ ସ୍ଥାନ ପାଇପାରିନାହିଁ । ପରେ ସେ ସବୁ ଦ୍ୱିତୀୟ ଭାଗରେ ପ୍ରକାଶିତ ହେବାର ଆଶା ରଖିଅଛୁ । ଏଣୁ ସଂକଳନ କରିବାରେ ଯଦି କିଛି ତ୍ରୁଟି ବା ଭ୍ରମ ଥାଏ ତେବେ ପାଠକେ ଓ କଳିଙ୍ଗଭାରତୀ ଶୁଭେଚ୍ଛୁ-ଗୋଷ୍ଠୀ କ୍ଷମା ଦେବେ ବୋଲି ବିଶ୍ୱାସ ।

କଳିଙ୍ଗ ଭାରତୀ ସେବକ ଗୋଷ୍ଠୀଙ୍କର ଉତ୍ସାହ ଓ ପ୍ରେରଣା ଏ ସଂକଳନ ପାଇଁ ମୋତେ ସମର୍ଥ କରିଥିବାରୁ ମୁଁ ସେମାନଙ୍କ ନିକଟରେ କୃତଜ୍ଞ । କଳିଙ୍ଗ ଭାରତୀ ସଭାପତି ଶ୍ରୀ ରଜତକୁମାର କର, ଉପସଭାପତି ଡାକ୍ତର କବିପ୍ରସାଦ ମିଶ୍ର ଓ ଶ୍ରୀ ଚନ୍ଦ୍ରଶେଖର ନନ୍ଦ ଓ ବନ୍ଧୁ ଶ୍ରୀ ପୁରୁଷୋତ୍ତମ ପଟ୍ଟନାୟକ ଓ ଡାକ୍ତର ଅଜିତ୍ କୁମାର କରଙ୍କର ସାହାଯ୍ୟ ତଥା ଉପଦେଶ ବିନା ଏ ଗ୍ରନ୍ଥର ପ୍ରକାଶ ହୁଏ ତ ସମ୍ଭବ ହୋଇ ନ ଥାନ୍ତା । ଏତଦ୍‌ବ୍ୟତୀତ ଶ୍ରୀ ସଦାନନ୍ଦ ମିଶ୍ର, ଶ୍ରୀ ପ୍ରଶାନ୍ତ କୁମାର ମିଶ୍ର, ଶ୍ରୀ ପ୍ରତାପ ଚଉଧୁରୀ, ଶ୍ରୀ ଅନଙ୍ଗରାଜ ବିଶ୍ୱାଳ ଓ ଉତ୍କଳ ଯୁବ ସାହିତ୍ୟ ସମାଜର ସଂପାଦକଗଣ ଶ୍ରୀ ପ୍ରଫୁଲ୍ଲ କୁମାର ନାୟକ, ଶ୍ରୀ ନିରଞ୍ଜନ ମହାନ୍ତି, ଶ୍ରୀ ଚିତ୍ତରଞ୍ଜନ ଦାସ ପ୍ରମୁଖଙ୍କର ସାହାଯ୍ୟ ଓ ସହଯୋଗ ଅଶେଷ ପ୍ରଶଂସନୀୟ । ସର୍ବଶେଷରେ ସଂସାର ପ୍ରେସ ଏହାର ନିର୍ଭୁଲ ପ୍ରକାଶ ପାଇଁ ଧନ୍ୟବାଦାର୍ହ ।

ମା ଭାରତୀର ଆଶୀର୍ବାଦ ଭିକ୍ଷାକରି ପାଠକମାନଙ୍କ ନିକଟରେ ବିଚ୍ଛନ୍ଦଚରଣଙ୍କର ହୀରକ ଜୟନ୍ତୀ ଉପଲକ୍ଷେ ତାଙ୍କର କର୍ମ ଓ ଜୀବନର ସଂକ୍ଷିପ୍ତ ପରିଚୟ ଏହି "କଳିଙ୍ଗପ୍ରାଣ ବିଚ୍ଛନ୍ଦଚରଣ" ଅର୍ପଣ କରୁଅଛୁ । ଓଡ଼ିଆ ସାହିତ୍ୟରେ ଏ ଗ୍ରନ୍ଥ ତାର ସମୁଚିତ ଆସନ ଗ୍ରହଣ କରୁ ।

**ଜୟ ମା କଳିଙ୍ଗ ଭାରତୀ**

ଶୈଳେଶ୍ୱର ନନ୍ଦ



# ଯୁଗେ ଯୁଗେ……

## ସଙ୍ଗଠକ ବିଚ୍ଛନ୍ଦଚରଣଙ୍କର ଅମରବାଣୀ—

(୧) "ପ୍ରତିଭାର ଦୃଷ୍ଟି ଅଭ୍ରାନ୍ତ କିନ୍ତୁ ଯୁଗର ଦୃଷ୍ଟି ଭ୍ରାନ୍ତ । ତା ନ ହୋଇଥିଲେ ଯୀଶୁଙ୍କୁ କ୍ରୁଶରେ ବଳି ହେବାକୁ ହୋଇ ନ ଥା'ନ୍ତା କି ସକ୍ରେଟିସଙ୍କୁ ଗରଳ ପାନ କରିବାକୁ ପଡ଼ି ନ ଥାନ୍ତା ।"
(୧୭ । ୭ । ୪୭)

(୨) "ଯେ ପ୍ରକୃତ ପ୍ରତିଭାଶାଳୀ କବି ତାହାର ଭାବ ଯେପରି ଋଦ୍ଧିମନ୍ତ ଭାଷା ମଧ୍ୟ ସେହିପରି ଋଦ୍ଧିମନ୍ତ ।"
(୧୭ । ୧୦ । ୪୭)

(୩) "ଯେଉଁମାନେ ସାହିତ୍ୟକୁ ପାଦଦାନ କରି ଜୀବନରେ ଉନ୍ନତି କରିଅଛନ୍ତି, ସାହିତ୍ୟକୁ ମୁକୁଟ କରିଥିବା ଲୋକଙ୍କ ନିକଟରେ ସେମାନଙ୍କୁ ଅବଶ୍ୟ ହାର ମାନିବାକୁ ହେବ ।" (୮ । ୮ । ୪୭)

(୪) ମୋର ଅଶେଷ କଷଣମୟ ଜୀବନ ମା କଳିଙ୍ଗ-ଭାରତୀର ବର୍ତ୍ତମାନ ଦୁର୍ଦ୍ଦଶାର ଏକ ସଂକ୍ଷିପ୍ତ ସାରସଂଗ୍ରହ ମାତ୍ର । ମା'ର ବେଦନା ସ୍ମରଣ କରି ମୁଁ ଯେତେ ବ୍ୟାକୁଳ ହୋଇଉଠେ ମୋର ଅସହ୍ୟ ଭୌତିକ କଷଣ ତା ତୁଳନାରେ ମୋତେ କିଛି ବାଧେ ନାହିଁ ।" (୭ । ୭ । ୪୭)

(୫) "ଯେଉଁମାନଙ୍କ ହୃଦୟ ନୈରାଶ୍ୟରେ ପୂର୍ଣ୍ଣ, ସେମାନଙ୍କୁ ଚାରିଆଡ଼ ଅନ୍ଧାର ଦିଶେ । କିନ୍ତୁ ଯେଉଁମାନେ ଯୁଗପ୍ରବର୍ତ୍ତକ ସେମାନେ ନିଜେ ଆଲୋକର ଅବାରିତ ଉତ୍ସ । ସେମାନଙ୍କର ଆବିର୍ଭାବରେ ଅନ୍ଧକାର ପଳାୟନ କରେ । ନୈରାଶ୍ୟ କଅଣ, ଅନ୍ଧାର କଅଣ ସେମାନେ ଜାଣନ୍ତି ନାହିଁ । ସେମାନଙ୍କଦ୍ୱାରା ଉଦ୍‌ଭାସିତ ପଥରେ ଜଗତର ଲୋକେ ଗତି କରନ୍ତି । ଯୁଗପ୍ରବର୍ତ୍ତକମାନେ ସୂର୍ଯ୍ୟଙ୍କ ପରି ଜଗତର ନୟନ । ସେମାନଙ୍କ ବିନା ଜଗତ ଅନ୍ଧାର ।"
(୮ । ୭ । ୪୭)

(୬) "କୌଣସି ସାଧକର ନୈରାଶ୍ୟବାଦ ପୋଷଣ ହିଁ ଜୀବନ୍‌ମୃତ ଅବସ୍ଥା । ମୋର ପ୍ରାଣପ୍ରିୟ ଶିଷ୍ୟମଣ୍ଡଳୀ ମନେ ରଖିବା ଉଚିତ ଯେ ସେମାନେ ହିମାଳୟ ପରି ସୁଦୃଢ଼ ଓ ଉନ୍ନତ । × × × ରୁଷୋ, ଭୋଲଟାୟାରଙ୍କ ଲେଖନୀଶକ୍ତି ଓ ଗାନ୍ଧୀଙ୍କର ନିଷ୍ଠାପର ସାଧନାରେ ଇତିହାସର ଅଧ୍ୟାୟ ପରିବର୍ତ୍ତିତ ହୋଇଯାଇଅଛି । Uncle Tom's Cabinର ଲେଖକ ଦାସବ୍ୟବସାୟର ମୂଳୋତ୍ପାଟନ କରି ପାରିଅଛନ୍ତି । ତେଣୁ ମୁଁ ମୋ ଶିଷ୍ୟମଣ୍ଡଳୀକୁ ଆଉ ଥରେ ସତର୍କ କରିଦେଉଛି ଯେ ସେମାନଙ୍କର ନିଜ ଉପରେ ଖର୍ବୀକୃତ ଧାରଣା ବା ଅବିଶ୍ୱାସ ନ ଜନ୍ମେ ସେହି ଧାରଣା ପତନର ପଥ ପରିଷ୍କୃତ କରିଦେବ ।
(୭ । ୭ । ୪୭)



# ସାହିତ୍ୟ ପାଇଁ ସଂଗ୍ରାମ

## ( ବିଚ୍ଛିନ୍ନ ଆତ୍ମଚରିତ )

ଓଁ

**ନମୋ ଭଗବତେ ବାସୁଦେବାୟ**

### ପ୍ରଥମ ଅଧ୍ୟାୟ

ଅପାର କାଳପାରାବାରରେ ମୁଁ ଗୋଟିଏ ନଗଣ୍ୟ ବୁଦ୍‌ବୁଦ । ଜୀବନ ପଥରେ ଭେଟିଥିବା ନାନା ପ୍ରତିବନ୍ଧକର ତିକ୍ତ ସ୍ମୃତି ମନରେ ବହନ କରି ମୁଁ ଗତି କରୁଅଛି । ମୋର ଅଣଚାଶ ବର୍ଷ ପୂରି ଯାଇଅଛି ଓ ଚଳିତ ୧୯୫୦ ଖ୍ରୀଷ୍ଟାବ୍ଦ ଜାନୁଆରୀ ମାସ ୨୧ ତାରିଖଠାରୁ ପଚାଶ ବର୍ଷ ଆରମ୍ଭ ହୋଇଅଛି । ଆଜି ୧୯୫୦ ଖ୍ରୀଷ୍ଟାବ୍ଦ ନଭେମ୍ବର ମାସ ୨୪ ତାରିଖ କାର୍ତ୍ତିକ ପୂର୍ଣ୍ଣିମା । ବହୁ ଦିନରୁ କଳ୍ପିତ ଏ ଗ୍ରନ୍ଥର ମୁଁ ଆଜି ଶୁଭ ଦେଉଅଛି । ଭଗବାନ ଜାନକୀବଲ୍ଲଭଙ୍କ ଇଚ୍ଛାରେ ଯେ ଯେଉଁ କାର୍ଯ୍ୟ ସାଧନ କରିବାପାଇଁ ଏ ଧରାଧାମକୁ ପ୍ରେରିତ ହୋଇଅଛି ସେ ଅବଶ୍ୟ ସେ କାର୍ଯ୍ୟ ପୂରଣ କରିବ । ଜୀବନର ପଚାଶ ବର୍ଷରେ ଉପନୀତ ହୋଇ ଅନ୍ତତଃ ମୋ ଜୀବନରେ ତାଙ୍କ ଇଚ୍ଛାର କିପରି ପ୍ରକାଶ ଘଟିଅଛି ଏ ଗ୍ରନ୍ଥରେ ତେତିକ ମାତ୍ର ବର୍ଣ୍ଣନ କରି ମୁଁ ତାଙ୍କ ଅଘଟଘଟନପଟୀୟସୀ ମହିମାର କୀର୍ତ୍ତନ କରିବି । ମୋ ନିଜର ହୋଇ କୌଣସି କୃତିତ୍ୱ ନାହିଁ । ସବୁ ତାଙ୍କରି ମହିମା ଓ ତାଙ୍କରି କରୁଣା । ମୁଁ ଯନ୍ତ୍ର, ସେ ଯନ୍ତ୍ରୀ ।

ଇଂରାଜ ରାଜତ୍ୱର ଫଳ ସ୍ୱରୂପ ଉତ୍କଳ ତଥା ଭାରତର ଆଧ୍ୟାତ୍ମ୍ୟ ଦୃଷ୍ଟି ଉପରେ ପରଳ ମାଡ଼ି ଯାଇଅଛି । ଏହା କଳିକାଳର ପ୍ରଭାବ ମାତ୍ର । ଏ ପରଳକୁ ଦୂର କରିବା ପାଇଁ ସାହିତ୍ୟ ଆୟୁଧ ବିଶେଷ । ଇଂରାଜୀଶିକ୍ଷିତ ଲୋକମାନେ ଆଜି ଦେଶରେ ଶ୍ରେଷ୍ଠ । ପାଶ୍ଚାତ୍ୟ ସଭ୍ୟତାର ଜଡ଼ବାଦକୁ ଭିତ୍ତି କରି ଯେଉଁ ଅପସାହିତ୍ୟ ଏ ଦେଶରେ ସୃଷ୍ଟି ହେଉଅଛି ସେମାନଙ୍କ ମଧ୍ୟରୁ ଅନେକେ ତହିଁର ଉପାସକ । ସେମାନଙ୍କ ଦୃଷ୍ଟିଭଙ୍ଗୀ ବଦଳାଇ ଓ ଏ ଦେଶରେ ପୂର୍ବରୁ ରଚିତ ଆଧ୍ୟାତ୍ମବାଦମୂଳକ ସାହିତ୍ୟର ଉତ୍କର୍ଷ ପ୍ରମାଣ କରି ସେମାନଙ୍କୁ ତତ୍‌ପ୍ରତି ଆଗ୍ରହୀ କରିବା ଓ ସୁସାହିତ୍ୟ ରଚନା କରି ଏ ଦେଶର ସାରସ୍ୱତ କୋଷକୁ ସମୃଦ୍ଧ କରିବା ଏ ଦୁଇଟି କାର୍ଯ୍ୟ ଲାଗି ମୋର ଜନ୍ମ । ବହୁକାଳ ଦିଗ୍‌ଭ୍ରାନ୍ତ ହୋଇ ବୁଲିଲା ପରେ ମୋ ମନରେ ଏ ଚେତନାର ସ୍ଫୁରଣ ହେଲା । ମୋର ଗତ କେତେକ ବର୍ଷର ସାଧନା ଏହି ଚେତନାଦ୍ୱାରା ହିଁ ନିୟମିତ ହୋଇଅଛି ।

ଏଥିପାଇଁ ୧୯୪୩ ମସିହାରେ ମୁଁ କଳିଙ୍ଗଭାରତୀ ଅନୁଷ୍ଠାନ ପ୍ରତିଷ୍ଠା କଲି ଏବଂ ୧୯୪୪ ଖ୍ରୀଷ୍ଟାବ୍ଦରେ ଉତ୍କଳ ଯୁବ ସାହିତ୍ୟ ସମାଜର ଶୁଭ ଦେଲି । ଏ ଦୁଇ ଅନୁଷ୍ଠାନକୁ ମୁଁ ଜୀବନର ଚରମ କୃତିତ୍ୱ ବୋଲି ଜ୍ଞାନ କରେ । ସୀତାରାମଙ୍କ ପାଦପଦ୍ମରେ ଭକ୍ତି ଛଡ଼ା ଜୀବନର ଅନ୍ୟ ଯାବତୀୟ ଜିନିଷ ଏ ଦୁଇଟିର ନିକଟରେ ଗୌଣ ।

"ଛାର ଜୀବନ ମୋର ପଙ୍କିଳ ସରୋବର
ତହିଁ କବିତା-କୋକନଦ
ତବ କୃପାରୁ ଦେବ ! ଅଛି ସିନା ସମ୍ଭବ
ସତେ ତା ବିତରିବ ମୋଦ ହେ ବାଗୀଶ୍ୱର !
ବୋଲି ମୁଁ ଯାହା ଲେଖିଅଛି ତାହା ନିତାନ୍ତ ସତ ।

ଆଧ୍ୟାତ୍ମ୍ୟଜଗତର ପରମ ସତ୍ୟ ଭାରତୀୟ ହିନ୍ଦୁ ମହର୍ଷିମାନେହିଁ ଆବିଷ୍କାର କରିଅଛନ୍ତି । ସମଗ୍ର ପୃଥିବୀରେ ଭାରତର ସ୍ଥାନ ଅତୁଳ୍ୟ ଏବଂ ସମଗ୍ର ଭାରତରେ ଉତ୍କଳ ସମାନ ଭୂମି ଆଉ ନାହିଁ । ମର ମାନବ ଜନ୍ମରୁ ଉନ୍ନୀତ ହୋଇ ଦେବରାଜ୍ୟର ତୋରଣ ଅତିକ୍ରମ କରିବାକୁ ହେଲେ ମାନବକୁ ହିନ୍ଦୁମହର୍ଷିମାନଙ୍କ ଦାୟାଦ ହୋଇ ଭାରତ ବା ଉତ୍କଳରେ ହିଁ ଜନ୍ମଲାଭ କରିବାକୁ ହେବ । ଇନ୍ଦ୍ରିୟ ଲାଳସାକୁ ଦମନ କରି ଆଧ୍ୟାତ୍ମ୍ୟଚିନ୍ତନ ଓ ଆଧ୍ୟାତ୍ମ୍ୟସାଧନ କରିବା ପାଇଁ ଭାରତ ବା ଉତ୍କଳ ସମାନ ପ୍ରଶସ୍ତ ଭୂଖଣ୍ଡ ଆଉ ନାହିଁ । ଇନ୍ଦ୍ରିୟାତୀତ ନିତ୍ୟସୁଖର ସନ୍ଧାନ ଏହି ଭୂଖଣ୍ଡର ସାହିତ୍ୟରେ ହିଁ ସୁଲଭ । ଭାରତ ମଧ୍ୟରେ ଉତ୍କଳରେ ଲଳିତଶିଳ୍ପ ତଥା ଅନ୍ୟାନ୍ୟ ଯାବତୀୟ ଶିଳ୍ପର ସର୍ବଶ୍ରେଷ୍ଠ ପ୍ରକାଶ ଘଟିଅଛି । ଉତ୍କଳୀୟ ସ୍ଥାପତ୍ୟ-କଳାର ମନୋହାରିତା ଏକା ଭାରତରେ କାହିଁକି, ସମଗ୍ର ଭୂମଣ୍ଡଳରେ ଦୁର୍ଲ୍ଲଭ । ଜୀବନର ଯାବତୀୟ ବିଭାଗରେ ଉତ୍କଳୀୟମାନେ ସତ୍ୟ ଶିବ ସୁନ୍ଦର ଆଦର୍ଶର ପୁଷ୍କଳ ବିକାଶ ଘଟାଇଅଛନ୍ତି । ରାଜନୀତିକ ସ୍ଥିତିର ପ୍ରତିକୂଳତା-ବଶତଃ ଉତ୍କଳର ଯେଉଁ ଭାଗ୍ୟବିପର୍ଯ୍ୟୟ ଘଟିଅଛି ସେଥିଯୋଗୁଁ ଭାରତ ଆଜି ସ୍ୱାଧୀନତା ଲାଭ କରିଥିଲେ-ହେଁ ଉତ୍କଳୀୟମାନେ ନିଜର ପୂର୍ବଗୌରବ ପ୍ରତି ସମ୍ୟକ୍ ଅବହିତ ବା ସଚେତ ହୋଇପାରିନାହାନ୍ତି । ନାନା ଦୋଷର ଆକର ପ୍ରଚଳିତ ଶିକ୍ଷାକଳ ଉତ୍କଳର ଆଶା ଭରସାର ସ୍ଥଳ ଯୁବକମାନଙ୍କ ଆଗରେ ନାନା ଅପଆଦର୍ଶ ଉପସ୍ଥାପିତ କରି ସେମାନଙ୍କୁ ଦିଗ୍‌ଭ୍ରାନ୍ତ କରୁଅଛି । ଯୁବକମାନଙ୍କ ଜୀବନଯାପନର ଧାରା ପାଶ୍ଚାତ୍ୟ ଜଡ଼ବାଦୀ ଆଦର୍ଶରେ ନିୟମିତ ହେଉଅଛି । ଆର୍ଯ୍ୟ ମହର୍ଷିମାନଙ୍କ ଆବିଷ୍କୃତ ସତ୍ୟର ଆଲୋକ ସେମାନଙ୍କ ଜୀବନପଥକୁ ଉଦ୍‌ଭାସିତ କରୁନାହିଁ । ଉତ୍ତର ଜୀବନରେ ଜାତୀୟ ଜୀବନର ବିଭିନ୍ନ କ୍ଷେତ୍ରରେ ଅଧିକାଂଶ ଆସନ ଲାଭ କଲାପରେ ସେମାନେ ପାଶ୍ଚାତ୍ୟ ଭୂଖଣ୍ଡରୁ ଆଗତ ଜଡ଼ବାଦର ପ୍ରତିନିଧି ହୋଇ ପଡ଼ୁଅଛନ୍ତି । ଭାରତର ସ୍ୱାଧୀନତା ଲାଭଦ୍ୱାରା ମଧ୍ୟ ଏ ବ୍ୟାଧିର ପ୍ରତିକାର ହୋଇ-ପାରୁନାହିଁ । ପାରଲୌକିକ ଚିନ୍ତା ବହୁ ଶିକ୍ଷିତଙ୍କ ଜୀବନରୁ ବିଦାୟ ନେଇ ସାରିଲାଣି । ବହୁ ଶିକ୍ଷିତ ସବୁକଥାକୁ ପାର୍ଥିବ ପ୍ରୟୋଜନର ମାନଦଣ୍ଡରେ ମାପି ଉପଯୋଗିତା ଅନୁପଯୋଗିତା ନିର୍ଣ୍ଣୟ କରୁଅଛନ୍ତି । ଏ ଭୟାବହ ସ୍ଥିତିର ଅବସାନ ନ ଘଟାଇଲେ ଉତ୍କଳୀୟ ଲୋକଙ୍କ ମନରୁ ସତ୍ୟ ଶିବ ସୁନ୍ଦର ଆଦର୍ଶରୁ ଆସ୍ଥା ତୁଟିଯିବ ।

ଓଡ଼ିଆ ସାହିତ୍ୟରେ ଛନ୍ଦ ଓ ଓଡ଼ିଶୀ ରାଗରାଗିଣୀ ଇଂରେଜ ରାଜତ୍ୱ ପର୍ଯ୍ୟନ୍ତ ଉନ୍ନତ ଭାବପ୍ରକାଶର ସରଣୀ ଥିଲା । ଇଂରେଜ ତଥା ବଙ୍ଗଳା ପ୍ରଭାବରେ ଜର୍ଜ୍ଜରିତ ରାଧାନାଥ ରାୟ ଓଡ଼ିଆ ସାହିତ୍ୟର ସଙ୍ଗୀତ-ମୟତା ପ୍ରତି ଭ୍ରୂକ୍ଷେପ ନ କରି କୁଆଦର୍ଶ ଉପସ୍ଥାପିତ କଲେ । ଆଜି ବିଜାତୀୟତାରେ ତାଙ୍କୁ ଟପି ଯାଇଥିବା ଆଧୁନିକ ଓ ଅତ୍ୟାଧୁନିକ ମୋ ସମସାମୟିକ ବହୁ କବି ରାଧାନାଥଙ୍କଦ୍ୱାରା ପ୍ରବର୍ତ୍ତିତ ବିଭ୍ରାଟକୁ ଚରମ ସୀମାକୁ ନେଇଗଲେଣି । ଏମାନଙ୍କ ରଚନା ଦେଖି ଓଡ଼ିଆ ସାହିତ୍ୟ ସମ୍ବନ୍ଧରେ ଅତି କଦର୍ଯ୍ୟ ଧାରଣା କରିବାକୁ ହିଁ ପଡ଼ୁଅଛି । ବିଜାତୀୟ ରୀତିର ଅନୁକରଣ-ଦ୍ୱାରା ଏମାନେ ଦେଶର ରୁଚିକୁ କଳୁଷିତ କରି ତରୁଣ-ମାନଙ୍କୁ ବିପଥଗାମୀ କରୁଅଛନ୍ତି । ବିଶ୍ୱନାଥ କରଙ୍କ ପରେ ବହୁ ବ୍ୟକ୍ତି ଏମାନଙ୍କ ସାହିତ୍ୟଗତ ବିଜାତୀୟତାର ସମର୍ଥକ ହୋଇ ବାହାରିଅଛନ୍ତି । ଏମାନଙ୍କ ପତ୍ରିକାମାନ ବିଲୁପ୍ତ ଉତ୍କଳ ସାହିତ୍ୟ ପତ୍ରିକାର ସ୍ଥାନ ଅଧିକାର କରି ଦେଶର ସାହିତ୍ୟ କ୍ଷେତ୍ରରେ ବିଜାତୀୟ ପ୍ରଭାବକୁ ପରିବ୍ୟାପ୍ତ କରୁଅଛନ୍ତି; ଏମାନଙ୍କ ଗତିକୁ ଦୃଢ଼-ଭାବରେ ରୋକିବାକୁ ହେବ । ଉତ୍କଳ ଯୁବ ସାହିତ୍ୟ

ସମାଜର ଶ୍ରୀମାନ୍ ବୃନ୍ଦାବନ ରାୟ ପ୍ରଭୃତି ଯେଉଁ କବିମାନଙ୍କୁ ମୁଁ ତାଲିମ କରୁଅଛି ସେମାନେ ପାରିଗଲେ ଓଡ଼ିଆ ସାହିତ୍ୟର ଏ ଦୁର୍ଗତି ଦୂର ହେବ । ଓଡ଼ିଶାର ସଙ୍ଗୀତ କ୍ଷେତ୍ରରେ ମଧ୍ୟ ଅନୁରୂପ ବିଭ୍ରାଟ ଘଟିଅଛି । ବହୁ ଶିକ୍ଷିତ ଓଡ଼ିଆ ଲୋକଙ୍କର ମାନସିକ ଅଧୋଗତିର ମାତ୍ରା ଏତେ ଅଧିକ ହୋଇଅଛି ଯେ ସେମାନେ ଲଜ୍ଜା ତ୍ୟାଗ ପୂର୍ବକ ଜାତୀୟ ସଙ୍ଗୀତକୁ ଉପେକ୍ଷା କରି ବିଜାତୀୟ ସଙ୍ଗୀତ ଉପଭୋଗରେ ଲାଳସୀ ହୋଇଅଛନ୍ତି । କଳାକ୍ଷେତ୍ରରେ ମଧ୍ୟ କୋଣାର୍କ, ଭୁବନେଶ୍ୱର ବା ଖିଚିଙ୍ଗ ଆଦର୍ଶର ଆଶାନୁରୂପ ଅନୁଶୀଳନ ବା ଅନୁସରଣ ହେଉନାହିଁ । ସ୍ଥୂଳତଃ କହିଲେ ସମୀଚୀନ ହେବ ଯେ ଏବିର ଉଚ୍ଚ ଆସନ ଅଧିକାରୀ ବହୁ ଉତ୍କଳୀୟ କୃଷ୍ଟି କ୍ଷେତ୍ରରେ ଜାତୀୟତାକୁ ଜଳାଞ୍ଜଳି ଦେଇ ଉତ୍କଳୀୟ ଯାବତୀୟ ବୈଶିଷ୍ଟ୍ୟ ବିସ୍ମୃତ ହେବା ପଥରେ ପଥିକ ହୋଇଅଛନ୍ତି । ଏ ଅଧୋଗତିର ପ୍ରବାହକୁ ବାଧା ନ ଦେଲେ ଏ ଜାତିର ରକ୍ଷା ନାହିଁ । ମୋ ମନରେ ଆଜି ଦୃଢ଼ ବିଶ୍ୱାସ ଉଦ୍ଭବ ହୋଇଅଛି ଯେ ଲୋପୋନ୍ମୁଖ ଉତ୍କଳୀୟ କୃଷ୍ଟିକୁ ରକ୍ଷା କରିବା ନିମନ୍ତେ ମୋର ଜନ୍ମ ହୋଇଅଛି । ଗତ ଅଣଅଣ ବର୍ଷର ଘଟନାପ୍ରବାହ ମୋତେ ଯେଉଁଠି ଆଣି ଉପନୀତ କରିଅଛି ସେଠାରେ ଦଣ୍ଡାୟମାନ ହୋଇ ଭବିଷ୍ୟତ ଆଡ଼କୁ ମୁଁ ଦୃଷ୍ଟି ପକାଇ ଦେଖୁଅଛି ଯେ ମୋ ଦ୍ୱାରା ଓ ମୁଁ ଯେଉଁ ଯୁବକମାନଙ୍କୁ କଳିଙ୍ଗ ଭାରତୀ ଆଦର୍ଶରେ ଉଦ୍‌ବୁଦ୍ଧ କରି ଉତ୍କଳ ଛାତ୍ର ସାହିତ୍ୟସମାଜ ଜରିଆରେ ଉଠାଉଅଛି ସେମାନଙ୍କଦ୍ୱାରା ଉତ୍କଳର କୃଷ୍ଟିକ୍ଷେତ୍ରରୁ ସତ୍ୟ ଶିବ ସୁନ୍ଦର ଆଦର୍ଶର ପରିପନ୍ଥୀ ସକଳ ବିଜାତୀୟ ପ୍ରଭାବ ଦୂରୀକୃତ ହେବ ଏବଂ ସ୍ୱୟଂ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଲୀଳାଭୂମିର ଆଧ୍ୟାତ୍ମିକ ପ୍ରଭାବ ଜଡ଼ବାଦଗ୍ରସ୍ତ ଜଗତକୁ ଏହା ଫଳରେ ଆଲୋକୋଦ୍‌ଭାସିତ କରିବ । ଏତିକି ସିଦ୍ଧ କରିବା ନିମନ୍ତେ ଏ ଜନ୍ମରେ କଳିଙ୍ଗ ବା ଉତ୍କଳ-ଖଣ୍ଡରେ ମୋର ଆବିର୍ଭାବ ଘଟିଅଛି ବୋଲି ମୁଁ ଆଜି ଲିପିବଦ୍ଧ କରୁଅଛି । ମୋର ଏ ବିଶ୍ୱାସ ଭ୍ରାନ୍ତ ନୁହେ ବୋଲି ମୁଁ ଉପଲବ୍ଧି କରିଅଛି ।

ରାଜନୀତି ମୋହିନୀ ବେଶ ଧାରଣ କରି ଏ ଦେଶର ବହୁ ପଦସ୍ଥ ଲୋକଙ୍କୁ କବଳିତ କରୁଅଛି । ରାଜନୀତିକ ପ୍ରାଧାନ୍ୟ ଅର୍ଜନ ଇନ୍ଦ୍ରିୟ ତର୍ପଣର ପଥ ପରିଷ୍କାର କରି ଦେଉଅଛି । ଏ ଦେଶର ରାଜନୀତିକ ଜୀବନ ପାଶ୍ଚାତ୍ୟ ଛାଞ୍ଚରେ ଗଢ଼ାଯାଉଅଛି । ଖବରକାଗଜ ଅନୁଷ୍ଠାନ ଲୋକଙ୍କୁ ଆଧ୍ୟାତ୍ମ୍ୟ ଚିନ୍ତାରୁ ହଟାଇ ଆଣି ସେମାନଙ୍କ ମନରେ ଉତ୍କଟ ପାର୍ଥିବ ଅଧିକାର ଲାଳସା ଜାଗ୍ରତ କରିଦେବାରେ ଲାଗିଛି । ବ୍ରିଟିଶ ଛାଞ୍ଚରେ ଗଢ଼ା ସ୍କୁଲ କଲେଜରେ ଛାତ୍ରମାନେ ଶିକ୍ଷା ପାଇ ଈଶ୍ୱର ବିଶ୍ୱାସ ଓ ପରଲୋକବିଶ୍ୱାସ ହରାଉଅଛନ୍ତି । ରାଜନୀତିକ ଅଧିକାର ଲାଭ ଛଡ଼ା ଜୀବନର ଅନ୍ୟ କୌଣସି ଲକ୍ଷ୍ୟ ଅଛି ବୋଲି ସେମାନେ ଆଉ ଭାବୁନାହାନ୍ତି । ଶ୍ରୀରଘୁନାଥଙ୍କ ଅପାର କରୁଣାରୁ ରାଜନୀତିର ଆବର୍ତ୍ତରୁ ଅବସ୍ଥାର ଆନୁକୂଲ୍ୟରେ ମୁଁ ଓହରି ଆସି ଆଧ୍ୟାତ୍ମ୍ୟ ଆଲୋକର ସନ୍ଧାନ ଲାଭ କରିଅଛି । ମୋର ଧନହୀନତା ଓ ବିକଳାଙ୍ଗତାର ମୂଲ୍ୟ ମୁଁ ଆଜି ସମ୍ୟକ୍ ଉପଲବ୍ଧି କରିଅଛି । ଏ ଦୁଇ ପ୍ରବଳ ପ୍ରତିବନ୍ଧକ ନ ଥିଲେ ମୁଁ ଯେ ରାଜନୀତିରେ ମିଶିବାର ପ୍ରଲୋଭନ ତ୍ୟାଗ କରି ପାରିଥାନ୍ତି ମୁଁ ଏହା କହିପାରୁ ନାହିଁ, କାରଣ ଅସହଯୋଗ ଆନ୍ଦୋଳନର ପ୍ରବାହରେ ମୁଁ ମଧ୍ୟ କଲେଜ ଫାଷ୍ଟ ଇୟର କ୍ଲାସ (ପ୍ରଥମ ବାର୍ଷିକ ଶ୍ରେଣୀ) ରେ ପଢ଼ିଲାବେଳେ ନିଜକୁ ଭସାଇ ଦେଇଥିଲି । ବିଧାତାଙ୍କ ମଙ୍ଗଳବିଧାୟକ ହସ୍ତ ତହିଁରୁ ମୋତେ କିପରି ରକ୍ଷା କଲା ତାହା ପରେ ଏ ଗ୍ରନ୍ଥରେ ବର୍ଣ୍ଣନା କରିବି । ସୀତାରାମଙ୍କ ଇଚ୍ଛାରେ ଏ ବିରାଟ ବିଶ୍ୱରେ କିଏ କିପରି କେଉଁ ପଥରେ ପଥିକ ହୁଏ ତାହା ଭାବିଲେ ଅବାକ୍ ହେବାକୁ ପଡ଼େ । ମହାମାୟାଙ୍କ ଜାଲରେ ପଡ଼ି ପଡ଼ି ହଠାତ୍ ଦିବ୍ୟାଲୋକର ସନ୍ଧାନ ପାଇବା କମ୍ ଲୋକଙ୍କ ଭାଗ୍ୟରେ ଯୁଟେ । ସାଂସାରିକ ଦୃଷ୍ଟିରୁ

ବହୁମନ୍ତ୍ରେ ସ୍ଥାନମାନ ଏ ଜୀବନରେ ସେ ସୁଯୋଗ ଘଟିଥିବାର ଉପଲବ୍ଧି କରି ମୋ ବଞ୍ଚିତ ଦଶାରେ ମୁଁ ବ୍ୟଥିତ ହୋଇନାହିଁ । ଏତକ ଉପଲବ୍ଧି ହେବା ଆଗରୁ ସୀତାରାମଙ୍କ ଶ୍ରୀଚରଣତଳେ ମୁଁ ଯେ ଅଭିମାନ-ଭରି କେତେ ଅଭିଯୋଗ ଢାଳି ଦେଇଅଛି ତାହାର କଳନା କରାଯାଇ ନ ପାରେ । ମୁଁ ଅଜ୍ଞ, ସେ ଦୁହେଁ ବିଜ୍ଞ । ମୋ ଅଭିଯୋଗର ନିରର୍ଥକତା ବୁଝି ସେ ଦୁହେଁ ମୋ ଉପରେ କରୁଣା କରି ଆସିଅଛନ୍ତି । ମୋ ସ୍ଥୂଳ ଦୃଷ୍ଟିକୁ ସେ କରୁଣା ଅକରୁଣା ବୋଲି ବହୁକାଳ ଯାଏଁ ପ୍ରତୀତ ହୋଇ ଆସିଥିଲା । ଅଣାଅଶି ବର୍ଷ ଗତ ହେବା ପରେ ସେ ଅବସ୍ଥା ବଦଳିଅଛି ।

ଯେଉଁ କର୍ମକୁ ମୁଁ ମୋର ଜୀବନର ବ୍ରତ ବୋଲି ଗ୍ରହଣ କରିଅଛି ତାହା ମୋ ଦୃଷ୍ଟିରେ ସୀତାରାମଙ୍କର ସେବା । ମୋର ତହିଁରେ କୌଣସି ସ୍ୱାର୍ଥ ଯେପରି ନ ରହେ ଏବଂ କର୍ମବନ୍ଧନରେ ମୁଁ ବାନ୍ଧି ନ ହୁଏ ସେଥି ନିମନ୍ତେ ମୁଁ ଚେଷ୍ଟିତ । କିନ୍ତୁ ମୋ ଚେଷ୍ଟାର ସଫଳତା ବିଫଳତା ମୋ ଆୟତ୍ତର ବିଷୟ ନୁହେ । ସେ ଦୁହେଁ ସବୁର ନିୟନ୍ତା ।

ସେ ଦୁହିଁଙ୍କ ପଦ୍ମପାଦରେ ମୋର ଏ କଳୁଷିତ ମୁଣ୍ଡକୁ ଲୋଟାଇ ମୁଁ ମୋ ନଗଣ୍ୟ ଜୀବନକାହାଣୀ ଆରମ୍ଭ କରୁଅଛି । ସୀତାରାମଙ୍କର ପାର୍ଥିବ ପ୍ରତିନିଧି ସ୍ୱରୂପ ମୋ ପିତା ସ୍ୱର୍ଗତ ଗୋଲୋକକୃଷ୍ଣ ପଟ୍ଟନାୟକ ଓ ମାତା ରାଧାରାଣୀ ଦେବୀ ମୋତେ ଏ ଧରାଧାମକୁ ଆଣିଥିଲେ । ଆଜି ଏ ସ୍ଥୂଳେନ୍ଦ୍ରପୁର ଧାମରେ ରହି ସେ ଦୁହିଁଙ୍କ ଅପାର ସ୍ନେହକୁ ସ୍ମରଣପୂର୍ବକ ଭକ୍ତିତଦ୍‌ଗତ ଚିତ୍ତରେ ସେ ଦୁହିଁଙ୍କ ଶ୍ରୀଚରଣୋଦ୍ଦେଶ୍ୟରେ ମୁଁ ପ୍ରଣତ ହେଉଅଛି ।

ଅଥମାରମ୍ଭ ଶୁଭମସ୍ତୁ ଭବତୁ ।
ଜୟ ମା କଳିଙ୍ଗ ଭାରତୀ ।

## ଦ୍ୱିତୀୟ ଅଧ୍ୟାୟ

( ପୂର୍ବପୁରୁଷ ଓ ପରମ୍ପରା )

ସୀତାରାମଙ୍କ ନିର୍ଦ୍ଦେଶ ବଳରେ ମୁଁ ଯେଉଁ ବଂଶରେ ଜନ୍ମଗ୍ରହଣ କରିଅଛି ସେ ବଂଶରେ ବିଷ୍ଣୁଭକ୍ତିର ଅଖଣ୍ଡ ପରମ୍ପରା ରହିଅଛି । ମୋ ପ୍ରପିତାମହ କୃତ୍ତିବାସ ପଟ୍ଟନାୟକ ଶ୍ରୀବିଷ୍ଣୁଙ୍କ ନନ୍ଦନନ୍ଦନ ରୂପର ଏକାନ୍ତ ଲାଳସୀ ଥିଲେ । ଶ୍ରୀଗୋପାଳଙ୍କର କରୁଣା ଲାଭ କରିବା ନିମନ୍ତେ ସେ ବହୁ ସାଧନା କରିଥିବାର ପ୍ରବାଦ ରହିଅଛି । ଅପାର କାରୁଣିକ ମହାପ୍ରଭୁ ତାଙ୍କୁ ଅଦ୍ଭୁତ ଭାବରେ ଅନୁଗୃହୀତ କରିଥିଲେ । ଦିନେ ରାତ୍ରିରେ ତାଙ୍କୁ ସ୍ୱପ୍ନରେ ଦେଖାଦେଇ ମହାପ୍ରଭୁ କହିଲେ, "କୃତ୍ତିବାସ ! ମୁଁ ତୁମ୍ଭର ଭକ୍ତି ଅବଗତ ହୋଇଅଛି । ମୋର ପ୍ରତ୍ୟକ୍ଷ ସେବାର ସୁଯୋଗ ତୁମ୍ଭେ ଅବଶ୍ୟ କାଳ ପ୍ରାପ୍ତ ହେବ । ନିଶ୍ଚିନ୍ତ ରହ ।" ପରବର୍ତ୍ତୀ ଦିନ ପୋଖରୀରେ ସ୍ନାନ କରି ଫେରିବା ସମୟରେ ସେ ଦେଖିଲେ ଯେ ଗୋଟିଏ ଗୋଡ଼ି ତାଙ୍କ ଆଗରେ ସ୍ୱତଃ ଡେଇଁ ଡେଇଁ ଅଗ୍ରଗତି କରୁଅଛି । ତାଙ୍କ ବିସ୍ମୟର ଆଉ ସୀମା ରହିଲା ନାହିଁ । ଗତ ରାତ୍ରର ସ୍ୱପ୍ନ ତାଙ୍କ ମନରେ ଜାଗରୁକ ହେଲା । ସେ ହାତରେ ଥିବା ପାଣି ଢାଳକୁ ତଳେ ଥୋଇ ଦେଇ ଭୂଇଁରେ ଦଣ୍ଡବତ୍ ପଡିତ

ହୋଇ ଶ୍ରୀଗୋପାଳଙ୍କ ସ୍ତବ ଗାନ କଲେ । ଗୋଡ଼ ଅଗ୍ରଗତ ପରିବର୍ତ୍ତେ ପଶ୍ଚାଦ୍‌ଗତ କରି ତାଙ୍କ ମୁକ୍ତାଞ୍ଜଳିରେ ବିରାଜମାନ ହେଲେ । ଶ୍ରୀଗୋପାଳ ଲୀଳାମୟ । ଭକ୍ତକରରେ ଗୋଡ଼ ରୂପରେ ସେ ସ୍ୱଏଁ ଧରା ଦେଲେ । ଭକ୍ତବତ୍ସଳ କୃତ୍ତିବାସ ଜୀବନର ପରମଧନଙ୍କୁ କରଗତ କରି କୃତାର୍ଥ ହେଲେ ଏବଂ ଉପଳରୂପୀ ଶ୍ରୀଗୋପାଳଙ୍କ ସେବାପୂଜାରେ ଜୀବନ ବ୍ୟତୀତ କରି ନିତ୍ୟ ଧାମକୁ ପ୍ରୟାଣ କଲେ । ଭାଇଭାଗ ବଣ୍ଟୁଆରା ବେଳରେ ଶ୍ରୀଗୋପାଳ ପ୍ରପିତାମହଙ୍କ କନିଷ୍ଠ ପୁତ୍ର ଭଗବାନ ପଟ୍ଟନାୟକଙ୍କ ଭାଗରେ ପଡ଼ିଥିଲେ । ଏବେ ମଧ୍ୟ ସେ ମୋ ବଂଶର ଉକ୍ତ ଅଂଶୀୟ ଉତ୍ତର-ପୁରୁଷମାନଙ୍କ ମାର୍ଫତରେ ରହିଅଛନ୍ତି । ଶ୍ରୀଗୋପାଳ ମୋର କୁଳଦେବତା । ମୋ ପିତାମହ ସତ୍ୟବାଦୀ ପଟ୍ଟନାୟକଙ୍କଦ୍ୱାରା ପ୍ରବର୍ତ୍ତିତ ଦୋଳ ମେଳନରେ ଶ୍ରୀଗୋପାଳ ହିଁ ପୀଠାଧୀଶ ରୂପେ ଅଗ୍ରପୂଜାର୍ହ । ଶତାଧିକ ବର୍ଷ ହେଲା ପରିବାରର ଯାବତୀୟ ଅଭ୍ୟୁଦୟ ବିପର୍ଯ୍ୟୟର ସେ କର୍ତ୍ତା, ନିୟନ୍ତା ଓ ସାକ୍ଷୀ ।

ମୋ ପିତାମହ ସତ୍ୟବାଦୀ ପଟ୍ଟନାୟକ ଦୟା-ଦାକ୍ଷିଣ୍ୟ ଓ ବ୍ରାହ୍ମଣ ବୈଷ୍ଣବ ସେବା ଧେନ ଜଣେ ପୁଣ୍ୟ-ଶ୍ଳୋକ ବ୍ୟକ୍ତି ଥିଲେ । ବ୍ରାହ୍ମଣଭୋଜନ ଓ ବୈଷ୍ଣବ-ଭୋଜନ ଦିନମାନଙ୍କରେ ସସ୍ତ୍ରୀକ ସେ ବ୍ରାହ୍ମଣ ଓ ବୈଷ୍ଣବମାନଙ୍କ ଭୁକ୍ତାବଶେଷ ମାତ୍ର ଭକ୍ଷଣ କରୁଥିଲେ । ସେ ଜଣେ ଅତି ବିଚକ୍ଷଣ ପ୍ରଭାବଶାଳୀ ରାଜପୁରୁଷ ଥିଲେ ଓ ପୁରୀର ଗଜପତି ମହାରାଜା ଓ ଓଡ଼ିଶାର ନବପ୍ରତିଷ୍ଠିତ ଇଂରାଜ ସରକାରଙ୍କର ଜଣେ ଉଚ୍ଚପଦାରୂଢ଼ କାର୍ଯ୍ୟାଧ୍ୟକ୍ଷ ଥିଲେ । ଜୀବନର ଶେଷ ଭାଗରେ ସେ ରଣପୁର କରଦ ରାଜ୍ୟର ଦେଓ୍ୱାନ ହୋଇଥିଲେ । ସେ କବି ଥିଲେ ଓ ନିଜର ଯାତ୍ରାଦଳ ଓ ଗୋଟିପୁଅ ଦଳ ରଖିଥିଲେ । ତାଙ୍କ ହସ୍ତଲିଖିତ ଯାବତୀୟ କବିତା ଘରପୋଡ଼ିରେ ବିଲୁପ୍ତ ହୋଇଅଛି । ମୋ ବାଲ୍ୟକାଳରେ ତାଙ୍କ ଗୋଟିପୁଅ ଅନନ୍ତ ବାରିକ ମୋତେ କାଖ କରି ବୁଲାଇ-ଥିବା ମୋର ମନେଅଛି । ସେ ତେତେବେଳକୁ ବୃଦ୍ଧହୋଇ-ପଡ଼ିଥିଲା ଓ ତା ଗୋରା ତକତକ ଦେହର ଚମ ଶ୍ଳଥ ହୋଇ ଯାଇଥିଲା । ପିତାମହ ଗୋପୀନାଥ ଓ ବାଙ୍କବିହାରୀ ନାମକ ଦୁଇ ଠାକୁର ବିଗ୍ରହଙ୍କୁ ରାଧାରାଣୀ ମୂର୍ତ୍ତିଙ୍କ ସହ ପ୍ରତିଷ୍ଠାକରି ସେମାନଙ୍କ ପାଇଁ ସେବାପୂଜା ଖଞ୍ଜା କରି ଦେଇଥିଲେ । ତାଙ୍କ ଅମଳରେ ଆମ ଘର ଧନ ଜନ ଗୋପଲକ୍ଷ୍ମୀରେ ପରିପୂର୍ଣ୍ଣ ଥିଲା । ଯାଁଳା ଗ୍ରାମର ଉତ୍କଳ-ବ୍ୟାପୀ ପ୍ରସିଦ୍ଧି ଏକା ସତ୍ୟବାଦୀ ପଟ୍ଟନାୟକଙ୍କ ଯୋଗୁଁ ସମ୍ଭବ ହୋଇଥିଲା ।

କଟକ ଜିଲ୍ଲା ସତ୍ୟଭାମାପୁରରେ ତାଙ୍କର ପ୍ରଥମ ବିବାହ ହୋଇଥିଲା । ଉତ୍କଳଗୌରବ ମଧୁସୂଦନ ଦାସଙ୍କ ପିଉସୀ ତାଙ୍କର ପ୍ରଥମା ପତ୍ନୀ । ତାଙ୍କ ନାମ ଥିଲା ଶ୍ରୀମତୀ । ନିଃସନ୍ତାନ ଅବସ୍ଥାରେ ସେ ସ୍ୱର୍ଗ ପ୍ରାପ୍ତ ହେବାରୁ ପିତାମହ ପୁରୀ ଜିଲ୍ଲା ଭୁଷଣ୍ଡପୁର ଗ୍ରାମରେ ପୁନର୍ବିବାହ କରିଥିଲେ । ତାଙ୍କ ଦ୍ୱିତୀୟା ପତ୍ନୀଙ୍କ ନାମ ମଧ୍ୟ ଶ୍ରୀମତୀ ଥିଲା । ଏହାଙ୍କ ଗର୍ଭରେ ମୋ ଜନକଙ୍କର ଜନ୍ମ । ଜନକଙ୍କର ରାଧାକୃଷ୍ଣ ନାମକ ଅଗ୍ରଜ ବାଲ୍ୟ-କାଳରୁ ମୃତ୍ୟୁମୁଖରେ ପତିତ ହୋଇଥିବାରୁ ପିତାମହୀ ଅନେକ ସମୟରେ ଖେଦ କରୁଥିବାର ମୁଁ ଦେଖିଛି । ମୋ ଜନକ ଗୋଲୋକକୃଷ୍ଣ ପିତାମହଙ୍କର ଏକମାତ୍ର ପୁତ୍ର । ପିତାମହ ତାଙ୍କ ଅନୁଜ ଭଗବାନଙ୍କଠାରୁ ସୁଲକ୍ଷଣା ନାମ୍ନୀ କନ୍ୟାକୁ ପୋଷ୍ୟ ରୂପେ ଗ୍ରହଣ କରି ସୁପାତ୍ରଙ୍କ ସହିତ ବିବାହ କରାଇ ଦେଇଥିଲେ ।

ପିତାମହ ନିଜ ବିଚକ୍ଷଣତା ବଳରେ ବଡ଼ ବଡ଼ ହାକିମମାନଙ୍କୁ କାବୁ କରିଦେଇ ବହୁ କ୍ଷେତ୍ରରେ ଜନସ୍ୱାର୍ଥ ରକ୍ଷା କରିଥିବାରୁ ତାଙ୍କ ସ୍ମୃତି ଚିରସ୍ମରଣୀୟ ରହିଅଛି । ସତ୍ୟବାଦୀ ପଟ୍ଟନାୟକଙ୍କ ନାତି ବୋଲି ବାଲ୍ୟକାଳରେ ମୁଁ କମ୍ ଆଞ୍ଚଳିକ ଗୌରବ ଲାଭ କରିନାହିଁ । ଅଧ୍ୟୟନରେ ହେଉ ବା ଅନ୍ୟ ଯେ କୌଣସି ବିଷୟରେ ହେଉ, ଟିକିଏ ମାତ୍ର ବିଶେଷତ୍ୱ ଦେଖାଇଲେ "ସତ୍ୟବାଦୀ

ପଟ୍ଟନାୟକଙ୍କ ନାତି, ସେ ଶୁଝିଦେବ ?" କହି ଲୋକେ ଉଲ୍ଲସିତ ହେଉଥିବାର ମୁଁ ଦେଖିଅଛି ।

କଥିତ ଅଛି, ଓଡ଼ିଶାର ତତ୍କାଳୀନ କମିସନର ସାହେବଙ୍କ ଖୋର୍ଦ୍ଧା କଚେରି ପରିଦର୍ଶନ ସମୟରେ ସେ ପାଞ୍ଚଶହ ପୃଷ୍ଠାରେ ଲିପିବଦ୍ଧ ହୋଇଥିବା ଦୁର୍ଭିକ୍ଷକାଳୀନ ଆର୍ଥିକ ଦାନର ପରିମାଣକୁ ମାତ୍ର କେତୋଟି ମିନିଟ ମଧ୍ୟରେ ଭୁଣ୍ଡେ ଭୁଣ୍ଡେ ସାହେବଙ୍କ ଆଗରେ ଠିଆହୋଇ ଅଭ୍ରାନ୍ତ ଭାବରେ ହିସାବକରି ଦେଇଥିଲେ । କମିସନର ସାହେବ ଏଥିର ଅଭ୍ରାନ୍ତତାରେ ସନ୍ଦିହାନ ହୋଇ ପନ୍ଦର ଜଣ କିରାନିଙ୍କଦ୍ୱାରା ପୁଣି ଥରେ ହିସାବ କରାଇଥିଲେ ଓ ହିସାବ ପାହିପର୍ଯ୍ୟନ୍ତ ଠିକ୍ ଥିବା ଦେଖି ବିସ୍ମୟବିହ୍ୱଳ ହୋଇଥିଲେ । ସାମାନ୍ୟ ପେସ୍କାର ପଦରୁ ସେ ତାଙ୍କୁ ସଙ୍ଗେ ସଙ୍ଗେ ରଣପୁରର ଦେଓ୍ୟାନ ପଦକୁ ଉନ୍ନୀତ କରି ଦେଇଥିଲେ ।

ପିତାମହ ରଣପୁରଠାରେ ଦେହତ୍ୟାଗ କରିଥିଲେ । ମୋ ଜନକଙ୍କୁ ତେତେବେଳକୁ ବୟସ ସାତବର୍ଷ ମାତ୍ର । ଶିଶୁପୁତ୍ରର ଲାଳନ ପାଳନ ଓ ଶିକ୍ଷା ଭାର ଏବଂ ବିପୁଳ ସମ୍ପଦର ରକ୍ଷଣାବେକ୍ଷଣ ଭାର ପିତାମହୀଙ୍କ ଉପରେ ପଡ଼ିଲା ।

ଜନକ ଗୋଲୋକକୃଷ୍ଣ ଗ୍ରାମ ବିଦ୍ୟାଳୟରେ ମାତୃଭାଷା ଶିକ୍ଷା ସାରି ଅଳ୍ପକାଳ ମାତ୍ର ଖୋର୍ଦ୍ଧା ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପଢ଼ି ଅଧ୍ୟୟନ ସାଙ୍ଗ କରିଥିଲେ । ଆମ୍ଭ ଗ୍ରାମ ଯାଁଳା ପୁରୀ ଜିଲ୍ଲାର ଖୋର୍ଦ୍ଧା (ବର୍ତ୍ତମାନ ଭୁବନେଶ୍ୱର) ସବ୍‌ଡିଭିଜନରେ ଅବସ୍ଥିତ । କୁଳୀନ ସମ୍ଭ୍ରାନ୍ତ ପରିବାରର ଦାୟାଦ ରୂପେ ଏକା ଖୋର୍ଦ୍ଧା କାହିଁକି, ସମଗ୍ର ପୁରୀ ଜିଲ୍ଲାରେ ଆମ୍ଭ ବଂଶଜମାନଙ୍କର ଖ୍ୟାତି ରହିଥିଲା । କୃତ୍ତିବାସ ପଟ୍ଟନାୟକଙ୍କ ପୌତ୍ର ଓ ସତ୍ୟବାଦୀ ପଟ୍ଟନାୟକଙ୍କ ପୁତ୍ର ବୋଲି ଜନକଙ୍କୁ ଆମରଣ ବହୁତ ଲୋକ ସ୍ନେହ ଆଦର ଓ ଖାତିର କରୁଥିଲେ ।

ଜନକ ପ୍ରାପ୍ତବୟସ୍କ ହୋଇ ଗୃହର ପରିଚାଳନା ଭାର ଗ୍ରହଣ କଲେ । ସେ ପିତାମହୀଙ୍କର ନୟନପିତୁଳା ଥିବାରୁ ପିତାମହୀ ତାଙ୍କୁ ଅତି ଅଳିଅଳରେ ବଢ଼ାଇଥିଲେ । ଜନକଙ୍କର ଗୃହସ୍ଥସୁଲଭ ସଂସାରବୁଦ୍ଧି ଆଦୌ ବିକଶିତ ହୋଇ ପାରି ନ ଥିଲା । ଅପରନ୍ତୁ ସତ୍ୟବାଦୀ ଓ ଶ୍ରୀମତୀଙ୍କ ସ୍ୱାଭାବିକ ବଦାନ୍ୟତା ଉତ୍ତରାଧିକାର ସୂତ୍ରରେ ତାଙ୍କଠାରେ ଅମିତବ୍ୟୟିତାରୂପେ ଆତ୍ମପ୍ରକାଶ କଲା । ଆପଣାପାଇଁ ବା ପରପାଇଁ ସେ କରୁଥିବା ବ୍ୟୟର ଖାପମାପ ରହିଲା ନାହିଁ ।

ଏହି ସମୟରେ ଆମ୍ଭ ଗ୍ରାମ ପାଖରେ ଦୁଇଜଣ ବ୍ୟକ୍ତି ଅନାଚାରମୂଳକ ଶୁକରରୁ କିଛି ଧନ ପଇଠ କରି ମହାଜନ କାରବାର ଆରମ୍ଭ କରିଥିଲେ । ଜନକ ସେ ଦୁହିଁଙ୍କ ମହାଜନ ଜାଲରେ ପଡ଼ିଲେ । ଜନକଙ୍କର ଅମିତବ୍ୟୟିତା ସମ୍ପଦବୃଦ୍ଧି ନିମନ୍ତେ ସେ ଦୁହିଁଙ୍କୁ ଅପୂର୍ବ ସୁଯୋଗ ଯୁଟାଇ ଦେଲା । କୈତବରେ ବନ୍ଧୁ ଆଦର ସମ୍ବର୍ଦ୍ଧନା କରି ଜନକଙ୍କୁ ସେ ଦୁହେଁ ଟଙ୍କା ଧାର ଦେବାରେ ଲାଗିଲେ । ଜନକ ଖଣ୍ଡେ ଖଣ୍ଡେ କାଗଜରେ କରଜ ଦସ୍ତଖତ କରି ଦେଇ ଆସନ୍ତି । ଏହିପରି କେତେଟା ବର୍ଷ ମଧ୍ୟରେ ମହାଜନ ଭାଇ ଦୁହେଁ ଏପରି ଗୋଟାଏ ବିରାଟ ହିସାବ ଆଣି ଥୋଇଦେଲେ ଯେ ଭୂସମ୍ପତ୍ତିର ବାରଅଣା ଅଂଶ ସେମାନଙ୍କୁ ହସ୍ତାନ୍ତର କରିଦେବା ଛଡ଼ା ଜନକଙ୍କର ଗତ୍ୟନ୍ତର ନ ଥିଲା । ପିତାମହୀ ସହନଶୀଳତାରେ ବସୁଧା ସ୍ୱରୂପା ଥିଲେ । ସେ ଆମରଣ ପୁତ୍ରଙ୍କ ଉପରେ ଭ୍ରମରେ ସୁଦ୍ଧା ବିରକ୍ତ ହୋଇନାହାନ୍ତି ବା ପରିବାରର ଆସନ୍ନ ଦୁଃସ୍ଥତା ଘେନି କେବେ ସୋରିଷେ ହେଲେ ଦୁଃଖ ପ୍ରକାଶ କରିନାହାନ୍ତି । ଅଲୋକସାମାନ୍ୟ ସେ ସହିଷ୍ଣୁତା ଓ ଧୈର୍ଯ୍ୟ କେବଳ ତାଙ୍କ ପୁତ୍ର (ମୋ ଜନକ) ଙ୍କୁ ସେ ଦେଇ ଯାଇଥିଲେ । ପିତାମହୀ ଓ ଜନକଙ୍କ ଦେହାନ୍ତ ପରେ ଏ ଦୁଇଟି ଗୁଣ ଆମ୍ଭ ପରିବାରରୁ ଲୋପ ପାଇଥିଲା ବୋଲି ମୋର ବିଶ୍ୱାସ ହୋଇଥିଲା, କିନ୍ତୁ ମୋ ଜ୍ୟେଷ୍ଠା ତନୟା

ରାଜଲକ୍ଷ୍ମୀ ତା ପ୍ରପିତାମହୀ ଓ ପିତାମହଙ୍କର ଅତୁଲ୍ୟ ସଦ୍‌ଗୁଣଦ୍ୱୟର ଅଧିକାରିଣୀ ବୋଲି ମୁଁ ଅନୁଭବରୁ ବୁଝିଛି ।

ଜନକ ସତ୍ୟବାଦୀ (ସାକ୍ଷୀଗୋପାଳ)ର ପଟ୍ଟନାୟକ ସାହୀ ନିବାସୀ ସତ୍ୟବାଦୀ ଦାସଙ୍କ ଜ୍ୟେଷ୍ଠା କନ୍ୟାଙ୍କୁ ବିବାହ କରିଥିଲେ । ମୋ ଜନନୀଙ୍କ ନାମ ରାଧାରାଣୀ । ମହାଜନ ଭାଇ ଦୁହିଁଙ୍କ ଚକ୍ରାନ୍ତ ଫଳରୁ ଜନକଙ୍କ ବିବାହ ନାହିଁ ନ ଥିବା ସଙ୍କଟରେ ସମାହିତ ହୋଇଥିଲା । ଏ ପର୍ଯ୍ୟନ୍ତ ମଧ୍ୟ ସେ ବିବାହକୁ ଆମ ଅଞ୍ଚଳରେ ଅନ୍ୟ କାହାର ବିବାହ ଟପିନାହିଁ ବୋଲି ପ୍ରବାଦ ରହିଅଛି । ଏଥିରେ ବ୍ୟୟର ଭାର ସେ ଦୁଇ ଭାଇଙ୍କ ଉପରେ ନ୍ୟସ୍ତ ଥିଲା । ବିବାହ ସମ୍ପନ୍ନ ହେବାର ବର୍ଷକ ପରେ ସେମାନେ ବ୍ୟୟ ତାଲିକା ଉପସ୍ଥାପିତ କରି ଜନକଙ୍କ ଅବଶିଷ୍ଟ ଭୂସମ୍ପତ୍ତିର ଶତକଡ଼ା ଅଶୀ ଭାଗ କରଗତ କରିଥିଲେ ।

ଜୀବନଯାତ୍ରା ନିର୍ବାହ ନିମନ୍ତେ ଜନକଙ୍କର ଏହି ସ୍ୱଳ୍ପ ପୈତୃକ ସମ୍ପତ୍ତି ସଙ୍ଗକୁ କେତେଖଣ୍ଡି ସରବରାକାରି (ଅର୍ଥାତ୍ କେତେକଟି ମୌଜା ଯହିଁର ବାର୍ଷିକ ରାଜସ୍ୱ ଆଦାୟ କରିଦେଲେ ଜାଗିର ଜମିରୁ ଧାନ ଓ ଶତକଡ଼ା ଟ ୨୦ ଙ୍କା ମାଲିକାନା ମିଳେ) ରହିଲା । କିନ୍ତୁ ବର୍ଷକୁ ବର୍ଷ ସେ ସରକାରଙ୍କୁ ତାଙ୍କ ପ୍ରାପ୍ୟ ଦେୟ ଧନ ଖର୍ଚ୍ଚ କରି ଦେଉଥିଲେ ଓ ସରକାରି ଧନ ତୋଷରଫ ଦୋଷରୁ ନିଜକୁ ରକ୍ଷା କରିବା ନିମନ୍ତେ ଜମି ବିକ୍ରୟ କରୁଥିଲେ । ଏହିପରି ମୋ ଜନ୍ମବେଳକୁ (୧୯୦୧ ମସିହା ଜାନୁଆରୀ ମାସ ୨୧ ତାରିଖ) ତାଙ୍କର ପୈତୃକ ସମ୍ପତ୍ତି ପୂରାପୂରି ବିକ୍ରୀତ ହୋଇଯାଇଥିଲା । କେବଳ ସେହି ସରବରାକାରି ଯାହାକି ସରକାରି ତହବିଲ ତୋଷରଫ ଯୋଗୁଁ ବାର୍ଷିକ ବିପଦର କାରଣ ହେଉଥିଲା ବାକି ରହିଥିଲା । ମୋର ହେତୁ ହେବା ବେଳକୁ ମଧ୍ୟ ଏହି ବାର୍ଷିକ ବିପଦ ଲାଗି ରହିଥିବା ମୋର ମନେ ଅଛି । ମୋର ଜ୍ୟେଷ୍ଠ ସହୋଦର ପଦ୍ମଚରଣ ପଟ୍ଟନାୟକ ତେତେବେଳକୁ ଖୋର୍ଦ୍ଧା ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଏଣ୍ଟ୍ରାନସ ପଢ଼ୁଥିଲେ । ତାଙ୍କର ଏଣ୍ଟ୍ରାନସ୍ ପାସ୍ କରିବା ଘଟନା ମୋର ମନେ ପଡ଼ୁଅଛି । ସେ ବୁଦ୍ଧିମାନ ଓ ଅଧ୍ୟବସାୟୀ ଥିବାରୁ ପରିବାରର ଦୁଃସ୍ଥତା ଓ ଅଭାବ ତାଙ୍କ ବିଦ୍ୟାନୁଶୀଳନର ପ୍ରତ୍ୟବାୟ ହୋଇପାରି ନ ଥିଲା । ମୋ ବାଲ୍ୟକାଳରେ ସେ ଏଫ୍. ଏ. ପଢ଼ିବାକୁ କଲେଜ ଯାଇଥିଲେ ।

ଜନକଙ୍କ ଅପରିଣାମଦର୍ଶିତା ପରିବାର ଓ ପୋଷ୍ୟବର୍ଗଙ୍କ ପ୍ରତି ନିରବଚ୍ଛିନ୍ନ ଭାବରେ ବିପଦ ଆନୟନ କରୁଥିଲେ ସୁଦ୍ଧା ଦୈବପ୍ରେରିତ ଭଳି ସେ କିଛି ଚେତି ପାରୁ ନ ଥିଲେ । ପୂର୍ବଜମାନଙ୍କ ସୁକୃତ ଫଳରୁ ତଥା ଜଗଜ୍ଜନନୀ ଭବାନୀଙ୍କ ପ୍ରତି ତାଙ୍କର ଅଚଳା ଭକ୍ତି ଯୋଗୁଁ ସେ ବର୍ଷକୁ ବର୍ଷ ଘର କ୍ରୋକ ଓ ଆସନ୍ନ ଦେଓ୍ୟାନୀଫାଟକ ଦଣ୍ଡରୁ ରକ୍ଷା ପାଇ ଯାଉଥିଲେ । ଆମ୍ଭ ଗ୍ରାମ ନିକଟର ବିମ୍ବାଧର ଜେନା ନାମକ ଜଣେ ମହାଶୟ ବ୍ୟକ୍ତି ବର୍ଷକୁ ବର୍ଷ ବହୁବର୍ଷ କାଳ ନିଜର ଭୂସମ୍ପତ୍ତି ବନ୍ଧକ କରି ମଧ୍ୟ ତାଙ୍କୁ ଅକାତର ଭାବରେ ସାହାଯ୍ୟ କରୁଥିଲେ । ମୁଁ ଏ ପର୍ଯ୍ୟନ୍ତ ତାଙ୍କ ତୁଲ୍ୟ ଜଣେ ପରୋପକାରୀ ମହୋଦାର ବ୍ୟକ୍ତି ଦେଖିନାହିଁ । ତାଙ୍କ ମରଣଶୀଳ ଅମରୋଚିତ ଗୁଣମାନଙ୍କର ଆଧାର ଥିଲା । ଆମ୍ଭ ପରିବାରକୁ ବିପଦ ପରମ୍ପରାରୁ ପରିରକ୍ଷା କରି କରି ସେ ମଧ୍ୟ ନିଜେ ଶେଷକୁ ନିର୍ଦ୍ଧନ ହୋଇପଡ଼ିଥିବାର ସ୍ମୃତି ମୋ ମନରେ ରହିଅଛି । ଜନକ ଓ ଜ୍ୟେଷ୍ଠଭ୍ରାତା ତାଙ୍କ ପ୍ରଦତ୍ତ ଋଣର ଅତି ଅଳ୍ପ ଅଂଶ ମାତ୍ର ପରିଶୋଧ କରି ପାରିଥିଲେ । ବିମ୍ବାଧର ଜେନାଙ୍କ ହୃଦୟବତ୍ତାର ପରିଶୋଧ କେହିହେଲେ କସ୍ମିନ୍ କାଳରେ କରିପାରିବ ନାହିଁ । ପୃଥିବୀକୁ ଦେବତ୍ୱର ପ୍ରତ୍ୟକ୍ଷ ପରିଚୟ ଦେବାପାଇଁ ବିଧାତା ସେଭଳି ଲୋକଙ୍କୁ ସୃଷ୍ଟି କରିଥାନ୍ତି ।

ଅଭାବଜନିତ ବହୁ ପାରିବାରିକ କଷ୍ଟର ଅସ୍ପଷ୍ଟ ସ୍ମୃତି ଆଜି ହୃଦୟ ପଟରେ ଉଦିତ ହେଉଅଛି । ରାଣୀ-ସୁଲଭ ବୈଭବ ଭୋଗିଥିବା ପିତାମହୀ, ପ୍ରାଚୁର୍ଯ୍ୟର କୋଳରେ ଲାଳିତା ହୋଇଥିବା ଜନନୀ ଓ ପରିବାରର ଜଣେ ପୋଷ୍ୟା ଦୂରସମ୍ପର୍କିତା ପିଉସୀ ତିଳ (ତିଳୋତ୍ତମା) ଅପା ପ୍ରତ୍ୟହ କିଣା ହେଉଥିବା କିଛି କିଛି ଚାଉଳ ରାନ୍ଧି, ଯତ୍‌ସାମାନ୍ୟ ବ୍ୟଞ୍ଜନ ପ୍ରସ୍ତୁତ କରି ଆମ୍ଭ ଭାଇ ଭଉଣୀମାନଙ୍କ କ୍ଷୁଧା ଶାନ୍ତ କରୁଥିବା ଓ ଜନକଙ୍କୁ କିଛି ପରିବେଷଣ କରି ଅବଶେଷ ଅନ୍ନ ବ୍ୟଞ୍ଜନରେ ନିଜ ନିଜ କ୍ଷୁନ୍ନିବାରଣ କରୁଥିବା ମୋ ହେତୁ ପାଇବାର ବହୁ ବର୍ଷ ପର୍ଯ୍ୟନ୍ତ ଆମ୍ଭମାନଙ୍କ ପରିବାରର ଦୈନନ୍ଦିନ ଅନୁଭୂତ ହୋଇଥିଲା । ଦାରୁଣ ଅଭାବରୂପକ ଘନତମିସ୍ରାଚ୍ଛନ୍ନ ସେ ସବୁ ଦିବସମାନଙ୍କର ରୂପ ସ୍ମୃତିପଟରେ ଉଦିତ ହେଲେ ସେ ସବୁକୁ କି କୌଶଳରେ ଜଗନ୍ନିୟନ୍ତା ନିତ୍ୟଯୁଗଳ ସୀତାରାମ ଅତିକ୍ରମ କରାଇ ନେଇ ଆମ୍ଭମାନଙ୍କୁ ଜଗତ ଆଗରେ ଉନ୍ନତମସ୍ତକ ହୋଇ ଠିଆ ହେବାର କ୍ଷମ କଲେ ତାହା ଭାବିଲେ ଅବାକ୍ ହେବାକୁ ପଡ଼େ । ତାଙ୍କ ଅଘଟଘଟନପଟୀୟସୀ ମହିମା ଜଗତର ଅସଂଖ୍ୟ କ୍ଷେତ୍ରରେ ଏହିପରି ନିତ୍ୟ ବିଳସିତ ହେଉଅଛି ।

ଏସବୁ ସ୍ମୃତି ସହିତ ମନେପଡ଼ୁଛି ଜନକଙ୍କର ଅଲୌକସାମାନ୍ୟ ଧୈର୍ଯ୍ୟ ଓ ସ୍ଥୈର୍ଯ୍ୟ । ଆଯୌବନ ଅଭୁକ୍ତ ଓ ସଦ୍ୟଆଗତ ଅଭାବ ଓ ସଙ୍ଗତିହୀନତା ଯୋଗୁଁ ଦିନେ ହେଲେ ସେ ସ୍ୱଭାବସୁଲଭ ପ୍ରଫୁଲ୍ଲତା ହରାଇ ନ ଥିଲେ—ବିମର୍ଷତାର ଅନ୍ଧକାରରେ ଦୀପ୍ତ କପାଳକୁ କ୍ଷଣେକ ପାଇଁ ହେଲେ ସମାଚ୍ଛନ୍ନ କରି ନ ଥିଲେ । ମୁଁ ଯେପରି ଅଧୈର୍ଯ୍ୟଶୀଳ ମୋ ଜନନୀ ସେହିପରି ଅଧୈର୍ଯ୍ୟଶୀଳା ଥିଲେ । ଜନକଙ୍କର ଅସଂଶୋଧନୀୟ ଅପବ୍ୟୟ ଅଭ୍ୟାସ ଲାଗି ସେ ତାଙ୍କୁ ବହୁ କଟୂ ଭାଷା ପ୍ରୟୋଗ କରୁଥିଲେ । କିନ୍ତୁ ଉତ୍ତରାଧିକାର ସୂତ୍ରରେ ପିତାମହୀଙ୍କଠାରୁ ପ୍ରାପ୍ତ ଲୋକୋତ୍ତର ସହନଶୀଳତା ଗୁଣରେ ପ୍ରଫୁଲ୍ଲବଦନରେ ଜନକ ସେ ସବୁ କଥାକୁ ଶୁଣି ନ ଶୁଣିଲା ପରି ହେଉଥିଲେ । ତାଙ୍କ ସମଗ୍ର ଦାମ୍ପତ୍ୟ ଜୀବନରେ ସେ ସ୍ତ୍ରୀ (ମୋ ଜନନୀ) ଙ୍କ ପ୍ରତି ଭ୍ରମରେ ସୁଦ୍ଧା ଗୋଟିଏ ମାତ୍ର ହେଲେ ରୁକ୍ଷ ବଚନ ଉଚ୍ଚାରଣ କରିନାହାନ୍ତି । ଏ ବତ୍ସଳଭାବ ଆମ୍ଭ ପରିବାରରେ ଏବେ ଦୁର୍ଲ୍ଲଭ ହୋଇପଡ଼ିଅଛି । ସନ୍ତାନମାନଙ୍କଠାରୁ କେବେ ରୁକ୍ଷ ବଚନ ଶୁଣିଲେ ମୋ ଜନନୀ ଗର୍ବରେ କହୁଥିଲେ "ମୋ ମୁଣ୍ଡ ଉପରର ଲୋକ ତ ମୋତେ ପଦେ ହେଲେ ବାଧିଲା ଭଳି କଥା କହିନାହାନ୍ତି—ମୋ ଗୋଡ଼ତଳ ଲୋକଙ୍କଠାରୁ ମୋତେ ଏ କଟୂ ଶୁଣିବାର ଯୋଗ ଥିଲା ।" ମୋ ଜନକଙ୍କ ସମାନ ଗୃହିଣୀଙ୍କୁ ସମ୍ମାନ ଦେବାର ବ୍ୟକ୍ତି ଆଉ ଜଣେ କାହାକୁ ମୁଁ ଏ ଯାବତ୍ ଦେଖିନାହିଁ । ଜନକ ମୋର ସ୍ତ୍ରୈଣ ନ ଥିଲେ । ପତ୍ନୀଙ୍କ ପ୍ରତି ସେ ଥିଲେ ପରମ ବତ୍ସଳ । ଚିରକାଳ ପାରିବାରିକ ଦୁଃସ୍ଥିତି ସର୍ଜନା କରୁଥିବାରୁ ଜନନୀ ତାଙ୍କ ଉପରେ କଟୂ ବାକ୍ୟର ଆସାର ବର୍ଷା କରିଦେଲେ ସୁଦ୍ଧା ଜନକ ଭ୍ରମରେ ମଧ୍ୟ ଦିନେ ହେଲେ ବିରକ୍ତିସୂଚକ ଗୋଟିଏ ହେଲେ ପ୍ରତିବାକ୍ୟ ଉଚ୍ଚାରଣ କରିନାହାନ୍ତି । ତାଙ୍କ ଔଦାର୍ଯ୍ୟମିଶ୍ରିତ ନୀରବତାହିଁ ଜନନୀଙ୍କ ମୁଖର ରସନାକୁ ମୂକ କରିଦେଉଥିଲା ।

ଜନକ ଜଗଜ୍ଜନନୀ ଭବାନୀଙ୍କ ପରମ ଭକ୍ତ ଥିଲେ । ଶ୍ରୀଦୁର୍ଗାଙ୍କ ଉପରେ ତାଙ୍କର ଅଖଣ୍ଡ ନିର୍ଭର ଥିବାରୁ ସେ ଦୁର୍ଗତିକୁ ଦୁର୍ଗତି ବୋଲି ଜ୍ଞାନ କରୁ ନଥିଲେ । ଗୃହସ୍ଥ-ସୁଲଭ ଅବହିତ ବୃତ୍ତି ତାଙ୍କର ନ ଥିଲେ ସୁଦ୍ଧା ସେ ଭାବୁଥିଲେ ଯେ ଶ୍ରୀଦୁର୍ଗାଙ୍କ ଦିବ୍ୟ ବିଧାନରେ ଦୁଃଖ ଚଳା ବଉଦପରି ଅସ୍ଥିର । ଶ୍ରୀଦୁର୍ଗାଙ୍କ କରୁଣା ଉପରେ ଅଖଣ୍ଡ ନିର୍ଭର ରଖି ସେ ଯେଉଁ ଆଶାବାଦିତା ପ୍ରାପ୍ତ ହୋଇଥିଲେ ତାହା ଜୀବନର ବର୍ଦ୍ଧିଷ୍ୟମାନ ଦୈନ୍ୟରେ ତାଙ୍କ ମନର ଅଭେଦ୍ୟ ଅଭୟକବଚ ହୋଇଥିଲା । ସେ ତାଙ୍କ ନିଜ ଜୀବନକୁ ନିଜଠାରେ ସୀମାବଦ୍ଧ ବୋଲି ଭାବୁ

ନ ଥିଲେ—ତନୁଜମାନଙ୍କଠାରେ ତାହା ସଂପ୍ରସାରିତ ରହିଛି ବୋଲି ତାଙ୍କର ଦୃଢ ପ୍ରତୀତି ଥିଲା । ଶ୍ରୀଦୁର୍ଗାଙ୍କ କରୁଣା ବୈଷୟିକ ବିଭବରୂପେ ତନୁଜମାନେ ଅବଶ୍ୟ ପ୍ରାପ୍ତ ହେବେ ବୋଲି ସେ ଭାବୁଥିଲେ । ତାଙ୍କ ଆଶା ଫଳବତୀ ହୋଇଥିଲା । ଦାରୁଣ ବୈଷୟିକ ଦୁର୍ଗତି ମଧ୍ୟରୁ ଆତ୍ମ ଉନ୍ନୟନ ଯୋଗ ଭାଇ ନିଜ ନିଜକୁ ସମୁଦ୍ଧାର କରି ଯଥାସମୟରେ ସଂସାରରେ ନିଜ ନିଜକୁ ଯେ ପ୍ରତିଷ୍ଠିତ କରିପାରିଲେ ତାହା ଜନକଙ୍କର ଜଗଜ୍ଜନନୀ ଶ୍ରୀଦୁର୍ଗାଙ୍କ ଉପରେ ଥିବା ଅଖଣ୍ଡ ନିର୍ଭରର ଫଳ ଛଡ଼ା ଅନ୍ୟ କିଛି ନୁହେଁ । ଜଣେ ନଷ୍ଟସର୍ବସ୍ୱ ଦୈନ୍ୟ-ପ୍ରପୀଡ଼ିତ ବ୍ୟକ୍ତିର ଦୁଇଜଣ ପୁତ୍ର ଉଚ୍ଚ ଉପାଧିଧାରୀ ଗେଜେଟେଡ୍ ଅଫିସର ଓ ଅନ୍ୟ ଜଣେ ପୁତ୍ର ସବ୍‌ରେଜେଷ୍ଟ୍ରାର ହୋଇ ପାରିବା ସାଧାରଣ ବସ୍ତୁର-ଦୃଷ୍ଟିରୁ ଅସମ୍ଭବ । ତଥାପି ଜଗଜ୍ଜନନୀଙ୍କ କରୁଣା ଅସମ୍ଭବକୁ ସମ୍ଭବ କରିପାରିଥିଲା ।

ଜନକ ହିନ୍ଦୁଙ୍କ ପଞ୍ଚଦେବତାଙ୍କ ଉପାସକ ଥିଲେ ସୁଦ୍ଧା ଶକ୍ତି ତାଙ୍କର ଇଷ୍ଟ ଥିଲେ । ଆମ୍ଭ ଗ୍ରାମ ଧୀଁଲାର ଗୋଟିଏ ପ୍ରାନ୍ତରେ ଦାରିଣୀ (ମହିଷାସୁରବଧାରିଣୀ) ଦୁର୍ଗା ମୂର୍ତ୍ତି ପୁରାଣୋକ୍ତ କାଳରୁ ବିରାଜିତା ରହିଅଛନ୍ତି । ଜୀବନର ପ୍ରତ୍ୟହ ତାଙ୍କ ନିକଟରେ ଗୋଟିଏ ଲେଖାଏଁ ନଡ଼ିଆ ଭାଙ୍ଗିବା ଓ ବଗଳାସ୍ତୋତ୍ର ଗୁଣିବା ଜନକଙ୍କର ବ୍ରତ ଥିଲା । ସେ ଯେତେ ଦିନ କାର୍ଯ୍ୟୋପଲକ୍ଷରେ ବିଦେଶରେ ରହୁଥିଲେ ଗ୍ରାମକୁ ପ୍ରତ୍ୟାବର୍ତ୍ତନ ମାତ୍ରେ ତେତୋଟି ନଡ଼ିଆ ସେ ସେହିଦିନ ଜଗଜ୍ଜନନୀଙ୍କ ନିକଟରେ ଭାଙ୍ଗି ତାଙ୍କଠାରେ କ୍ଷମାପ୍ରାର୍ଥୀ ହେଉଥିଲେ । ଆମରଣ ଏ ବ୍ରତରୁ ସେ ସ୍ଖଳିତ ହୋଇ ନଥିଲେ । ମା ଦାରିଣୀ ସକଳ କାର୍ଯ୍ୟରେ ସକଳ ମୁହୂର୍ତ୍ତରେ ତାଙ୍କର ଧ୍ୟେୟା ଥିଲେ ।

ଜନକ ଅତ୍ୟନ୍ତ ଉଦାରଚେତା, ବଦାନ୍ୟ, ମିଷ୍ଟବାକ୍ ଓ ଅକପଟ ବ୍ୟକ୍ତି ଥିଲେ । ପିରସ୍ତାବିଷୟକ ଜ୍ଞାନରେ ସେ ଥିଲେ ଅପ୍ରତିଦ୍ୱନ୍ଦ୍ୱୀ । ଲୋଭନୀୟ ଯାବତ-ପ୍ରକାର ସୁମିଷ୍ଟ ସାମଗ୍ରୀ ନିଜେ ତ ସେ ଭୋଜନ କରୁଥିଲେ କିନ୍ତୁ ଭୋଜନ କରିବା ଅପେକ୍ଷା ଅନ୍ୟାନ୍ୟଙ୍କୁ ଭୋଜନ କରାଇବାରେ ସେ ସମଧିକ ପ୍ରୀତିଲାଭ କରୁଥିଲେ । ଜନପ୍ରିୟତାରେ ତାଙ୍କୁ କେହି ଟପି ପାରୁନଥିଲେ । ସେ ସହଜାତ ନେତୃଗୁଣରେ ବିଭୂଷିତ ଥିଲେ । ତାଙ୍କ ଅପତ୍ୟବାତ୍ସଲ୍ୟ ଅତୁଳନୀୟ ଥିଲା । ଅପତ୍ୟମାନଙ୍କ-ଠାରେ ଚିପ ଲଗାଇବା ତ ଦୂରର କଥା, ସେମାନଙ୍କୁ ଡ଼ାକିବାରେ ମଧ୍ୟ ସେ ପଦେହେଲେ ଟାଣ କଥା ଉଚ୍ଚାରଣ କରି ନ ଥିଲେ । ସ୍ନେହ ସତେ ଯେପରି ତାଙ୍କଠାରେ ସାକ୍ଷାତ ମୂର୍ତ୍ତି ପରିଗ୍ରହ କରିଥିଲା ।

ଜନକଙ୍କର କଣ୍ଠ ଅତୀବ ସୁମିଷ୍ଟ ଥିଲା ଏବଂ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ, ଧନକୃଷ୍ଣ ଦାସ ଓ ଅଭିମନ୍ୟୁ ସାମନ୍ତସିଂହାରଙ୍କ ଛାନ୍ଦମାନ ଗାନ କଲା-ବେଳେ ସେ ଚତୁର୍ଦ୍ଦିଗକୁ ଦିବ୍ୟ ମୂର୍ଚ୍ଛନାରେ ପରିପ୍ଳାବିତ କରି ଦେଉଥିଲେ । ସେ ଖୋର୍ଦ୍ଧାରୁ ରାତିରେ ଫେରିଲା-ବେଳେ ବାଟରେ ଛାନ୍ଦ ଗାନ କଲେ ତାହା ଦୁଇ ମାଇଲ ଦୂରରୁ ଆମ୍ଭ ଗ୍ରାମକୁ ଶୁଣାଯାଉଥିଲା ଓ ମୋ ଜନନୀ ପାକଶାଳାରେ ଚୁଲୀ ଲଗାଇ ତାଙ୍କ ପାଇଁ ଭୋଜ୍ୟ ପ୍ରସ୍ତୁତ କରିବାରେ ବ୍ୟାପୃତ ହେଉଥିଲେ । ବହୁ ବର୍ଷ ପର୍ଯ୍ୟନ୍ତ ପିଣ୍ଡିକ ଶ୍ରୀଚନ୍ଦନଙ୍କ କୃତ ବସନ୍ତରାସ ଆମ୍ଭ ଗ୍ରାମରେ ଅଭିନୀତ ହେଉଥିଲା । ଜନକଙ୍କ ଅତୁଳ୍ୟ ସ୍ୱରବିଭବ ଏ ଅଭିନୟକୁ ଦିବ୍ୟଶ୍ରୀବିମଣ୍ଡିତ କରୁଥିଲା । ହଜାର ଗାୟକଙ୍କ ଗାନ ମଧ୍ୟରୁ ଚିହ୍ନି ବାହାରି ପଡ଼ିବାର ସ୍ୱର ବିଧାତା ତାଙ୍କୁ ପ୍ରଦାନ କରିଥିଲେ ।

ତାଙ୍କର ଅତୁଳ୍ୟ ରୂପ ଓ ଅଟୁଟ ସ୍ୱାସ୍ଥ୍ୟ ଥିଲା । ରୂପଶ୍ରୀ ସେ ତାଙ୍କ ଜନନୀ ଶ୍ରୀମତୀ ଦେବୀଙ୍କଠାରୁ ପ୍ରାପ୍ତ ହୋଇଥିଲେ । ତାଙ୍କ ଶାଲପ୍ରାଂଶୁ ବପୁ ଦିବ୍ୟ ଗୌରବର୍ଣ୍ଣ-ମଣ୍ଡିତ ଥିଲା । ତାଙ୍କ ସମସାମୟିକମାନଙ୍କ ମଧ୍ୟରେ ଖୁବ୍ କମ୍ ଲୋକ ତାଙ୍କ ଭଳି ସୁଦର୍ଶନ ପୁରୁଷ ଥିଲେ ।

ଜନନୀ ରାଧାରାଣୀ ସ୍ୱାମୀଙ୍କର ଉପଯୁକ୍ତ ଜୀବନ-ସଙ୍ଗିନୀ ଥିଲେ । ପ୍ରତ୍ୟହ ପ୍ରାତଃକାଳରେ ଶୌଚକାର୍ଯ୍ୟ ସାରି ସେ ଜନକଙ୍କ ପଦାଙ୍ଗୁଷ୍ଠଧୌତ ଜଳ ପାନକରି ଜନକଙ୍କୁ ପ୍ରଣିପାତ କରୁଥିଲେ । ଜନକ ପ୍ରବାସକୁ ପ୍ରସ୍ଥାଣ କଲାବେଳେ ସେ ତାଙ୍କ ପଦାଙ୍ଗୁଷ୍ଠଧୌତ-ଜଳ ଏ ଉଦ୍ଦେଶ୍ୟରେ ଶିଶିରେ ସାଇତି ରଖୁଥିଲେ । ପିତାମହୀ ଜୀବିତ ଥିଲାତକ ସେ ତାଙ୍କର ନିୟମିତ ପଦସେବା କରୁଥିଲେ । ସେ ଅତ୍ୟନ୍ତ ନିଷ୍ଠାପରାୟଣୀ, ପରମ ଭକ୍ତିମତୀ ବିଷ୍ଣୁସେବିକା ଥିଲେ । ପ୍ରତ୍ୟହ ବ୍ରାହ୍ମମୁହୂର୍ତ୍ତରୁ ଶଯ୍ୟାତ୍ୟାଗ ପୂର୍ବକ ସେ ବାଲୁକେଶ୍ୱର ମହାଦେବଙ୍କ ବେଢ଼ାକୁ ଯାଇ ବଡ଼ପୋଖରୀ ନାମକ ପୁଷ୍କରିଣୀରେ ସ୍ନାନକରି ବେଢ଼ା ଓଲାଉଥିଲେ ଏବଂ ହରପାର୍ବତୀଙ୍କ ସେବା କରୁଥିଲେ । ସେଠାରୁ ଫେରି ସେ କୁଳଦେବତା ଶ୍ରୀଗୋପାଳଙ୍କ ମନ୍ଦିରରେ ଉପସ୍ଥିତ ହୋଇ ପୂଜକଦ୍ୱାରା ମଙ୍ଗଳାଳତି ଓ ବାଲଭୋଗ କରାଉଥିଲେ । ଗୃହକୁ ପ୍ରତ୍ୟାବୃତ୍ତ ହୋଇ ସେ ସନ୍ତାନସନ୍ତତିଙ୍କୁ ଶଯ୍ୟା-ତ୍ୟାଗ କରାଉଥିଲେ ଏବଂ ସମସ୍ତଙ୍କ ଶୌଚଶୁଦ୍ଧିପରେ ପ୍ରସାଦ ଓ ପାଦୋଦକ ବିତରଣ କରୁଥିଲେ ।

ତାହାପରେ ସେ ପାକଶାଳାରେ ପ୍ରବେଶ କରି ନିଜ ହସ୍ତରେ ପାକକାର୍ଯ୍ୟ ସମାଧାନ କରୁଥିଲେ । କାହାରି ସହଯୋଗ ପାଇଁ ସେ ଅପେକ୍ଷା କରୁ ନ ଥିଲେ । ସେ ଥିଲେ ମୂର୍ତ୍ତିମତୀ ଶୁଦ୍ଧି ଓ ବିଗ୍ରହବତୀ ଶୁଚି । ଶୁଦ୍ଧି ଓ ଶୁଚିର ବ୍ୟତିକ୍ରମ ସେ ଆଦୌ ସହ୍ୟ କରୁ ନ ଥିଲେ ।

ପାକକାର୍ଯ୍ୟ ସମାପନାନ୍ତେ ସେ ସ୍ୱହସ୍ତରେ ପରିବେଷଣ କରି ସମସ୍ତଙ୍କୁ ଭୋଜନ କରାଇ ସାରିଲା-ପରେ ଆପେ ଭୋଜନ କରୁଥିଲେ । ସ୍ୱଳ୍ପ ବିଶ୍ରାମ ପରେ ସେ ଆସନ୍ଧ୍ୟା ଶାସ୍ତ୍ରପାଠରେ ବ୍ୟାପୃତ ରହୁ-ଥିଲେ । ଠିକ୍ ସନ୍ଧ୍ୟାରେ ସେ ଶ୍ରୀଗୋପାଳଙ୍କ ମନ୍ଦିରକୁ ଯାଇ ପ୍ରଭୁଙ୍କର ସେବାପୂଜା କରୁଥିଲେ । ନାନା ସ୍ତୋତ୍ର ତାଙ୍କର କଣ୍ଠସ୍ଥ ଥିଲା । ସେ ସେସକଳକୁ ମନେ ମନେ ଆବୃତ୍ତି କରି ଶ୍ରୀଗୋପାଳଙ୍କ ଶରଣାପନ୍ନ ହେଉଥିଲେ ।

ଏହାପରେ ସେ ପାକକାର୍ଯ୍ୟରେ ବିନିଯୁକ୍ତ ରହି ପରିବାରର ରାତ୍ରିଭୋଜନ ନିମନ୍ତେ ବ୍ୟବସ୍ଥା କରୁଥିଲେ । ନିଦ୍ରାପରେ ବ୍ରାହ୍ମମୁହୂର୍ତ୍ତରୁ ଶଯ୍ୟାତ୍ୟାଗ ଓ ସ୍ନାନ ଓ ବେଢ଼ାଓଲା ନିମନ୍ତେ ବାଲୁକେଶ୍ୱର ଦେବଙ୍କ ପୁଷ୍କରିଣୀ ଓ ମନ୍ଦିରାୟତନକୁ ଯିବା ତାଙ୍କର ଚିରନ୍ତନ ଅଭ୍ୟାସରେ ପରିଣତ ହୋଇ ଯାଇଥିଲା । ଦେହପୀଡ଼ା ସମୟରେ ଏଥିର କାଁ ଭାଁ ବ୍ୟତିକ୍ରମ ହେଉଥିଲା । ଶ୍ରୀକ୍ଷେତ୍ରରେ ବାସ କଲା ସମୟରେ ମଧ୍ୟ ଶ୍ରୀଲୋକନାଥ-ଙ୍କର ଓ ଶ୍ରୀଜଗନ୍ନାଥଙ୍କର ସେ ଅନୁରୂପ ସେବା କରୁଥିଲେ ।

ହିନ୍ଦୁ ରମଣୀର ଯାବତୀୟ ସୁଗୁଣ ତାଙ୍କଠାରେ ରୂପପରିଗ୍ରହ କରିଥିଲା ।

ବିଧାନ ଓ ଶୃଙ୍ଖଳାର ସେ ଅତ୍ୟନ୍ତ ସମ୍ମାନ କରୁଥିଲେ । ଏଥି ନିମନ୍ତେ ସେ ଯତ୍ପରୋନାସ୍ତି କଠୋର ହୋଇପାରୁଥିଲେ । ମୋର ମନେପଡ଼ୁଛି ମୋ ପିଲା-ଦିନର ଜଣେ ଅବଧାନ ଜଣେ ଧନିକ ପୁତ୍ର ପ୍ରତି ପକ୍ଷପାତୀ ହୋଇ ମୋ ପ୍ରତି ହତାଦର ଭାବ ପ୍ରକାଶ କରିବାରୁ ମୁଁ କ୍ରୁଦ୍ଧ ହୋଇ ଏଥିର ପ୍ରକାଶ୍ୟ ପ୍ରତିବାଦ କରିଥିଲି । ଏହା ଜନନୀଙ୍କର କର୍ଣ୍ଣଗୋଚର ହେବାରୁ ସେ ଗୁରୁଦ୍ରୋହ ଦୋଷରେ ଦୋଷୀ ବୋଲି ଘୋଷଣା କରି ମୋତେ ଘରେ ପ୍ରବେଶ କରାଇ ଦେଇ ନ ଥିଲେ ଏବଂ ପୂରା ଦୁଇଘଣ୍ଟା କାଳ ଦାଣ୍ଡରେ ଖରାରେ ଠିଆ ... 

ଦେହୁଡ଼ାଇ ଦେଇଥିଲେ । ସେ ଅବଧାନ ଆସି ମୋତେ କ୍ଷମା ପ୍ରଦାନ କରିବାରୁ ମୋତେ ଘରେ ପ୍ରବେଶ କରିବାର ଅଧିକାର ଦେଇଥିଲେ ଓ ପାଞ୍ଚଘଣ୍ଟାର ଅନଶନ ପରେ ମୋତେ ଖାଦ୍ୟ ପ୍ରଦାନ କରିଥିଲେ । ମୁଁ ଆଜନ୍ମ ବିକଳାଙ୍ଗ ଥିବାରୁ ମୋ ପ୍ରତି ତାଙ୍କର ଅଧିକ ଦୟା ଥିଲା ସତ୍ୟ, ତଥାପି ଅବଧାନଙ୍କ ଦୋଷ--

ପ୍ରଦର୍ଶନ କରିଥିବାର ଧୃଷ୍ଟତାକୁ ଦଣ୍ଡିତ କରିବାରେ ସେ ଦୟା ପ୍ରତିବନ୍ଧକ ହୋଇପାରି ନ ଥିଲା ।

ଜନମଙ୍କ ନ୍ୟାୟାନ୍ୟାୟ ବିବେକ ଅତୀବ ବଳିଷ୍ଠ ଥିଲା ଓ ନିଜର କ୍ଷୁରଧାରୋପମା ବୁଦ୍ଧି ବଳରେ ସେ ଯାବତୀୟ ବ୍ୟାପାର ବିଶ୍ଳେଷଣ କରି ବିନା ବିଳମ୍ବରେ ସିଦ୍ଧାନ୍ତରେ ଉପନୀତ ହୋଇପାରୁଥିଲେ । କୌଣସି ପ୍ରତିପକ୍ଷ ବ୍ୟକ୍ତିର ଅନ୍ୟାୟ ଦମନ କରିବାକୁ ହେଲେ ସେ ଅତ୍ୟନ୍ତ କୋପନା ହେଉଥିଲେ । ଆମ୍ଭ ଅନ୍ୟାୟୀ ଜ୍ଞାତିମାନେ ତାଙ୍କୁ ଅତୀବ ଭୟ କରୁଥିଲେ । ଅକୁତୋ-ଭୟ ସ୍ପଷ୍ଟବାଦ ତାଙ୍କର ପରମ ଭୂଷଣ ଥିଲା । ଆମରଣ ଥରେ ମାତ୍ର ହେଲେ ସୁଦ୍ଧା ସେ କେବେ ଅନ୍ୟାୟ ସହିତ ସାଲିସ୍ କରିନାହାନ୍ତି । ଧର୍ମାଚରଣ ଅବକାଶରେ ଭୟକୁ ସେ କଦାଚ ଖାତିର କରିନାହାନ୍ତି, ବରଂ ଭୟ ତାଙ୍କଠାରୁ ଖିତପ୍ରାପ୍ତ ହୋଇ ପୃଷ୍ଠଭଙ୍ଗ ଦେଇଅଛି । ଅଧର୍ମର ପ୍ରତିରୋଧ ପାଇଁ ସେ କୌଣସି କ୍ଷଣରେ ଉତ୍ସର୍ଗ କରିଦେବାକୁ ସେ ନିଜ ଜୀବନକୁ ନିଜ ମୁଷ୍ଟିଗତକରି ସଂସାର ପଥରେ ଅଗ୍ରସର ହେଉଥିଲେ । ଅଧର୍ମର ପ୍ରତିରୋଧ ପାଇଁ ପ୍ରୟୋଜନ ହେଲେ ଅବଲୀଳାକ୍ରମେ ଜୀବନକୁ ତୁଚ୍ଛ କରି ଫିଙ୍ଗିଦେବା ତାଙ୍କ ଲକ୍ଷ୍ୟ ଥିଲା ।

ଓଡ଼ିଆ ପୁରାଣ ଓ ଛାନ୍ଦ ସାହିତ୍ୟରେ ସେ ସୁପଣ୍ଡିତା ଥିଲେ । ବାଲ୍ୟକାଳରେ ଦାଣ୍ଡି ରାମାୟଣରୁ ନାନା ଉପାଖ୍ୟାନ ରାତିକାଳରେ ତାଙ୍କ କୋଳରେ ଶୋଇ ଶୁଣିବା ଦ୍ୱାରା ଭବିଷ୍ୟଦ୍ ଜୀବନର ରାମାୟଣ ପ୍ରୀତିର ଅଙ୍କୁର ମୋ ହୃଦୟରେ ସେହି ସୁକୁମାର ବୟସରୁ ପ୍ରୋଥିତ ହୋଇଥିଲା । ମହାଭାରତାଦି ଅନ୍ୟାନ୍ୟ ଧର୍ମଗ୍ରନ୍ଥ ଯେ କି ଅମୂଲ୍ୟ ଭଣ୍ଡାର ହୋଇଥିବ ତେତିକ-ବେଳେ ମୁଁ କଳ୍ପନା କରି ବିହ୍ୱଳ ହୋଇଥିଲି । ପୁରାଣ-ବର୍ଣ୍ଣିତ ସମୁନ୍ନତ ଆଦର୍ଶମାନ ଜନମଙ୍କଠାରୁ କ୍ରମାଗତ ଭାବରେ ଶୁଣି ମୁଁ ମୋ ଚରିତ୍ରର ଆଦର୍ଶବାଦର ପୃଷ୍ଠଭୂମି ଗଢ଼ିଥିଲି । ଜନମଙ୍କର ଭାଷାର ପ୍ରକାଶଭଙ୍ଗୀ କବିତାନୁସାରୀ ଥିଲା । ସେ ତାଙ୍କର ବକ୍ତବ୍ୟମାନଙ୍କୁ କାବ୍ୟପୁରାଣାଦିରୁ ଗୃହୀତ ଉଦ୍ଧୃତିମାନ ଖଞ୍ଜି ଅତ୍ୟନ୍ତ ହୃଦ୍ୟ କରିପାରୁଥିଲେ । ମୁଁ ମନେକରୁଛି ମୋ କବିତା-ଶକ୍ତି ତାଙ୍କର ରକ୍ତରୁ ନିଃସୃତ ହୋଇ ମୋଠାରେ ସଞ୍ଚାରିତ ହୋଇଅଛି । "ଡେଣାଭଙ୍ଗା ପକ୍ଷୀ ପରାୟେ ହୋଇ । ଡାଳ ବିନୁ ଆନ ଭରସା ନାହିଁ ।" ଆଣିକା-ଟାକର ମୁହଁକୁ ସୋରିଷଟାକର ଲାଜ ନାହିଁ ଆଦି ଶତ ଶତ ମନୋହର ଉକ୍ତି ଦ୍ୱାରା ସେ ତାଙ୍କ କଥନ-ମାନଙ୍କୁ ମନୋହାରୀ କରିପାରୁଥିଲେ ।

ଏହିପରି ମୋ ପାଇଁ ଆଦର୍ଶ ଓ ପରମ୍ପରା ଗଢ଼ିଯାଇ-ଅଛନ୍ତି ମୋ ପ୍ରପିତାମହ କୃତ୍ତିବାସ, ପିତାମହ ସତ୍ୟବାଦୀ, ପିତାମହୀ ଶ୍ରୀମତୀ, ପିତା ଗୋଲୋକକୃଷ୍ଣ ଓ ମାତା ରାଧାରାଣୀ । ଏ ସମସ୍ତେ ପୁଣ୍ୟଶ୍ଳୋକ । ମୋ ଧମନୀରେ ଏମାନଙ୍କ ପାବନ ଶୋଣିତ ଯେ ପ୍ରବାହିତ ହେଉଅଛି ଏହା ମୁଁ କ୍ଷଣେ ମାତ୍ର ହେଲେ ବିସ୍ମୃତ ହେଉନାହିଁ । ମୋ ଶାରୀରିକ, ମାନସିକ ଓ ଆଧ୍ୟାତ୍ମିକ ଜୀବନର ମୂଳଉତ୍ସ ହିଁ ଏହିମାନେ । ସୀତାରାମଙ୍କ କରୁଣାର୍ଜ୍ଜନର ପ୍ରେରଣା ମୋତେ ପ୍ରତ୍ୟକ୍ଷଭାବରେ ଦେଇଅଛନ୍ତି ଓ ଆଜି ମଧ୍ୟ ପରୋକ୍ଷ ଭାବରେ ଦେଉଅଛନ୍ତି ଏହିମାନେ । ଏହିମାନଙ୍କ ପୁଣ୍ୟାଶିଷ ମୋର ଏ ଜୀବନରେ ସାର୍ଥକ ହେଉ ।

କୃପାପରବଶ ହୋଇ ଏମାନେ ଏ ଅଧମ ଦାୟାଦର ସାଷ୍ଟାଙ୍ଗ ପ୍ରଣିପାତ ସେ ଦିବ୍ୟଧାମରୁ ଗ୍ରହଣ କରନ୍ତୁ । ଜୟ ମା କଳିଙ୍ଗଭାରତୀ ।

# ତୃତୀୟ ଅଧ୍ୟାୟ

ପୂର୍ବବର୍ତ୍ତୀ ଅଧ୍ୟାୟରେ ପ୍ରଦତ୍ତ ପୃଷ୍ଠ ଭୂମିକାରେ ଇଂରାଜି ସନ ୧୯୦୧ ମସିହା ଜାନୁଆରୀ ମାସ ୨୦ ତାରିଖ ରାତ୍ରି ୧୨ ଘଣ୍ଟା ପରେ ମୁଁ ଜନ୍ମଗ୍ରହଣ କରିଥିଲି । ତେଣୁ କେତେକ ଜ୍ୟୋତିଷୀ ମୋ ଜନ୍ମ ଦିବସ ୨୦ ତାରିଖ ବୋଲି ନ ଧରି ୨୧ ତାରିଖ ବୋଲି ଧରିଥାନ୍ତି । ନିଜର ପୂର୍ବ କର୍ମଫଳରୁ ଏବଂ ଏ ଜନ୍ମରେ ମୋ ଦ୍ୱାରା ସମ୍ପାଦିତ ହେବାକୁ ଥିବା କାର୍ଯ୍ୟଦୃଷ୍ଟିରୁ ବିଧାତା ବିରାଟ ବିଶ୍ୱ ମଧ୍ୟରେ ଯାଁଳା ଗ୍ରାମର ଏହି ପଟ୍ଟନାୟକ ପରିବାରରେ ମୋର ଉଦ୍‌ଭବ ବିଧାନ କରିଥିଲେ । ମୋ ଜନ୍ମବେଳକୁ ପରିବାରର ଦୁଃସ୍ଥତା ବଢ଼ିଯାଇଥିଲେ ସୁଦ୍ଧା ମୋର ପ୍ରତୀତ ହେଉଛି ଯେ ମୁକ୍ତହସ୍ତ ଜନକ ଏ ଘଟଣାରେ ବହୁଅର୍ଥ ବ୍ୟୟକରି ନିଶ୍ଚୟ ଉତ୍ସବ କରାଇଥିବେ । ଫଳିତ ଜ୍ୟୋତିଷ ବଳରେ ମୁଁ ଜୀବନର ବହୁ ଆଗାମୀ ଘଟଣାର ଆଗତୁରା ସନ୍ଧାନ ପାଇଅଛି—ଏ ବିଦ୍ୟା ଅପଣ୍ଡିତ ମାନଙ୍କ ହସ୍ତରେ ପଡ଼ିଥିବାରୁ ଏହାର ସମ୍ଭ୍ରମ ହାନି ଘଟିଅଛି—କିନ୍ତୁ ପଣ୍ଡିତମାନଙ୍କ ଗଣନାରୁ ମୋ ଭଳି ଅସଂଖ୍ୟ ଲୋକ ଏଥିରୁ ଆଜି ମଧ୍ୟ ଆକୁଳ ହୃଦୟ ନିମନ୍ତେ ଆଶ୍ୱାସନା ଓ ଶାନ୍ତିର ପ୍ରଲେପ ଲାଭ କରୁଅଛନ୍ତି । ନିମ୍ନରେ ନିରବଚ୍ଛିନ୍ନ ଭାବରେ ଆଶାର ଉତ୍ସ ସ୍ୱରୂପ କାର୍ଯ୍ୟ କରିଥିବା ମୋ ଜନ୍ମପତ୍ରିକାକୁ ମୁଁ ଉଦ୍ଧାର କରି ଦେଉଅଛି ।




ଜନ୍ମ ସମୟକୁ ମଙ୍ଗଳରୁ ବାକୀ ବ ୫।୨।୫
ଜନ୍ମଦିବସ ୨୧।୧।୦୧ ଜନ୍ମବେଳା ରାତ୍ର ଘ ୫।୫ମିନଟ୍

ସୁଦୂର ଶୈଶବର ଅଧିକାଂଶ ସ୍ମୃତି ପ୍ରାତଃକାଳୀନ ଆକାଶରୁ ତାରକା ଅନ୍ତର୍ହିତ ହୋଇଗଲା ପରି ଆଜି କୁଆଡ଼େ ହଜିଗଲାଣି । ତଥାପି ବଡ଼ବାପା ଝିଅ ଭଉଣୀ କୁନ୍ଦ ଅପା, ଚମ୍ପା ଅପା, ଦାଦି ଝିଅ ଭଉଣୀ କଇଁ (କୁମୁଦ) ଅପା ଓ ନିଜ ଭଉଣୀ ଇନ୍ଦ (ଇନ୍ଦୁମତୀ) ଅପାଙ୍କ ସ୍ନେହାଦର ହୃଦୟକୁ ଉଦ୍‌ବେଳିତ କରି ସ୍ମରଣପଥରେ ଉଦିତ ହେଉଅଛି । ମୋତେ କୋଳରେ ଧରି ରାତ୍ରିକାଳରେ ଚନ୍ଦ୍ରକୁ ଅନାଇଁ ଏମାନେ ବହୁବାର ଗାଇଅଛନ୍ତି "ବିଚ୍ଛନ୍ଦ ଡାକ ତାକୁ—ଟକା ଦରପଣି ମୁହଁ ଦେଲୁ ଯାହାକୁ ।" ଅର୍ଥାତ୍ ଚନ୍ଦ୍ର ମୋର ଟକା ଦର୍ପଣ ମୁହଁକୁ ଯେନି କୁଆଡ଼େ ଆକାଶକୁ ପଳାଇ ଯାଇଅଛି—ତାକୁ ମୁଁ ଡାକିଲେ ସେ ଆସି ମୋତେ ତାହା ଫେରାଇ ଦେଇଯିବ । କେବଳ ଚମ୍ପା ଅପାକୁ ଛାଡ଼ିଦେଲେ ଅନ୍ୟାନ୍ୟ ଭଉଣୀଗୁଡ଼ିକ ଆଜି ସ୍ୱର୍ଗତା । ଇନ୍ଦ (ଇନ୍ଦୁମତୀ) ଅପା ରୂପ ଗୁଣ ଉଭୟରେ ଅତୁଳ୍ୟା ଥିଲେ । ଅନୂଢ଼ା ଅବସ୍ଥାରେ ସେ ପ୍ରେତାବେଶରେ ଅକାଳ ମୃତ୍ୟୁ ବରଣ କରିଥିଲେ । ଜନକ ଜନନୀଙ୍କ ତଳକୁ ଆତ୍ମୀୟମାନଙ୍କ ମଧ୍ୟରେ ମୋତେ ତାଙ୍କ ଭଳି ଆଉ କେହି ଏତେ ସ୍ନେହ, ଏତେ ଦୟା କରିନାହିଁ । ମୁଁ ଏବେ ମଧ୍ୟ ତାଙ୍କ ସଦ୍‌ଗୁଣାବଳୀକୁ ଝୁରି ହେଉଅଛି । ତାଙ୍କ ପଛକୁ ପିତାମହୀ ଲୋକାନ୍ତରିତା ହେବାପରେ ଆମ୍ଭ ପରିବାରରୁ ରୂପର ଚନ୍ଦ୍ରିକା ଅନ୍ତର୍ହିତ ହୋଇ ଯାଇଅଛି । ସେ ସ୍ୱର୍ଗାରୋହଣ କଲାବେଳକୁ ମୋତେ ବୋଧହୁଏ ଦୁଇ କି ତିନି ବର୍ଷ ମାତ୍ର ବୟସ ହୋଇଥିଲା ।

ସୁରୂପ ଶିଶୁ ହୋଇଥିଲେ ସୁଦ୍ଧା ମୁଁ ଯଥା ସମୟରେ ଠିଆ ହେଲି ନାହିଁ ବା ଚାଲିଲି ନାହିଁ । କେବଳ ଗୁରୁଣ୍ଡିବାରେ ଲାଗିଲି । ପିତାମହୀ ଜନକ

ଓ ଜନନୀ ଅନ୍ୟାନ୍ୟ ସମସ୍ତ ଜ୍ଞାତିଙ୍କ ସହିତ ଏଥିପାଇଁ ଘୋର ଚିନ୍ତାରେ ନିମଗ୍ନ ହୋଇଗଲେ । ଜନ୍ମ ପତ୍ରିକାରୁ ବାହାରିଲା ଯେ ଗ୍ରହପୀଡ଼ା ଯୋଗୁଁ ମୋର ଅଣ୍ଟା ଉଠୁନାହିଁ । ଗ୍ରହ ଶାନ୍ତିପାଇଁ ବହୁ ଅନୁଷ୍ଠାନ କରାଗଲା । କିନ୍ତୁ କୌଣସିଥିରେ ଫଳ ହେଲାନାହିଁ । ବୈଦ୍ୟମାନେ ମଧ୍ୟ ବହୁପ୍ରକାର ତୈଳ ମାଲିସ କରାଇଲେ—ତହିଁରେ ମଧ୍ୟ ଅବସ୍ଥାର ଉନ୍ନତି ହେଲା-ନାହିଁ । କ୍ରମେ ମୋର ପଞ୍ଚମ ବା ଷଷ୍ଠ ବର୍ଷ ଗତ ହୋଇଗଲା । ମୋ ଦୁର୍ଦ୍ଦଶାଯୋଗୁଁ ଜନନୀଙ୍କ ଅଜସ୍ର ଅଶ୍ରୁବର୍ଷୀ ନୟନର ଦୃଶ୍ୟ ଆଜି ମୋ ହୃଦୟକୁ ମଥିତ କରୁଅଛି । ମୋତେ ଠିଆ କରାଇ ଚଲାଇବା ନିମନ୍ତେ ଘରେ ଅହୋରାତ୍ର ବର୍ଷ ବର୍ଷ ଭରି ପରାମର୍ଶ ଲାଗିରହୁଥାଏ । ଏ ଦୁରବସ୍ଥା ମଧ୍ୟରେ ସୁଦ୍ଧା ମୋ ପ୍ରତିଭାର ସ୍ଫୁରଣ ବ୍ୟାହତ ହୋଇ ନ ଥିଲା । ମୋତେ କେହି କିଛି ପଢ଼ାଉ ନ ଥିଲେ ସୁଦ୍ଧା ମୁଁ ବହିମାନଙ୍କରୁ ଦେଖି ଦେଖି ଓଡ଼ିଆ ତ ଓଡ଼ିଆ, ଇଂରାଜୀ ବର୍ଣ୍ଣାବଳୀ ମଧ୍ୟ ଆବୃତ୍ତି କରିଦେଇ ପାରୁଥିଲି ଓ ଶୁଣି ଶୁଣି ଅନେକଗୁଡ଼ିଏ ଜଣାଣ ଭଜନ କଣ୍ଠସ୍ଥ କରିଦେଇ ପାରୁ-ଥିଲି । 'ଖଣ୍ଡ ଯେଉଁଠି ଗୁଣ୍ଡ ସେହିଠି' ବୋଲି ପ୍ରବାଦକୁ ମୋ ସମ୍ପର୍କରେ ସମସ୍ତେ ଉଚ୍ଚାରଣ କରିବାରେ ଲାଗିଲେ । ଥରେ ଜଣେ କାଚରାଣୀ ଦୈବପ୍ରେରିତା ପରି ଆସି ମା ଗଙ୍ଗାଙ୍କ ପାଇଁ କିଛି ଭୋଗ ନେଇ ଜନକ ଜନନୀଙ୍କୁ ବତାଇ ଦେଇଗଲା ଯେ ମୋ ଅଣ୍ଟା ପର୍ଯ୍ୟନ୍ତ ଗମ୍ଭୀର କରି ଗୋଟିଏ ଗାତ ଖୋଳାଯାଉ ଏବଂ ପ୍ରତିଦିନ ଖୁବ୍ ସକାଳୁ ଆରମ୍ଭକରି ଦିନ ନଅଘଣ୍ଟା ପର୍ଯ୍ୟନ୍ତ ମୋତେ ତନ୍ମଧ୍ୟରେ ଠିଆ କରାଯାଇ ଫାଙ୍କ ଜାଗାମାନଙ୍କରେ ବାଲି ଖୁନ୍ଦି ଦିଆଯାଉ । ତାହାହିଁ ଦୁଇ ତିନିମାସ ପର୍ଯ୍ୟନ୍ତ କରାଯାଇଥିଲା । ଜନନୀ ମୋତେ ସ୍ୱହସ୍ତରେ ଅଣ୍ଟାଯାଏଁ ଉଲ୍ଲିଖିତମତେ ପ୍ରୋଥିତ କରି ଠିଆ କରିଦେଲାପରେ ମୋ ନିକଟରେ ବସି ଶ୍ରୀଗୋପାଳଙ୍କୁ ଡାକନ୍ତି ଓ ମୋ ନାଁ ଧରି ବାହୁନିକରି କାନ୍ଦନ୍ତି । ମୁଁ ଯେଉଁ ଘରେ ଏପରି ପ୍ରୋଥିତ ହେଉଥିଲି ସେ ଘର ଆଜି ଆଉ ନାହିଁ, କିନ୍ତୁ ସେ ସ୍ଥାନ ରହିଅଛି । ଏପରି ପ୍ରୋଥିତ ହୋଇ ଠିଆ ହେବାରେ ମୁଁ ଆମୋଦ ଲାଭ କରୁଥିଲି—କେବେହେଲେ ଅବୁଝା ହୋଇ କାନ୍ଦିଥିବାର ମୋର ମନେ ପଡ଼ୁନାହିଁ । ମୋତେ ଗାତରୁ ଯଥାସମୟରେ ବାହାର କରିନେଇ ମୋର ଗାଧୁଆ ଓ ଖିଆପିଆ କରାଯାଉଥିଲା ଓ ଜନନୀ ନାନା କଥା କହି ମୋତେ ଆଶ୍ୱାସନା ଦେଉଥିଲେ । ତିନି ମାସ ପରେ ଶ୍ରୀଗୋପାଳ ତାଙ୍କ ଆକୁଳ ଗୁହାରି ଶୁଣିଲେ । ମୁଁ ଠିଆ ହେଲି ଓ ପାଦ ଘୋଷାରି ଘୋଷାରି ଏବେ ଚାଲିଲାପରି ଚାଲିବାକୁ ଆରମ୍ଭ କଲି । ଗୋକୁଳାନନ୍ଦ ପଟ୍ଟନାୟକ ବୋଲି ଜଣେ ଯୁବକ ଆମ୍ଭର ଦୂର-ସମ୍ପର୍କିତ ବନ୍ଧୁ—ସେ ଆମ ଘରେ ରହି ଭର୍ଣ୍ଣାକ୍ୟୁଲାର ପଢ଼ୁଥିଲେ । ମୁଁ ଚାଲିପାରୁଥିଲେ ସୁଦ୍ଧା ସେ ପ୍ରତ୍ୟହ ମୋତେ ଭର୍ଣ୍ଣାକ୍ୟୁଲାର ସ୍କୁଲକୁ ପାଠପଢ଼ାର ରୀତି ଦେଖାଇବାକୁ କାଖକରି ନେଉଥିଲେ ।

ମୋ ଅବସ୍ଥା ପରିବର୍ତ୍ତନରେ ଉଲ୍ଲସିତ ହୋଇ ବଡ଼ବାପପୁଅ ଭାଇ ସ୍ୱର୍ଗତ ନିମାଇଁଚରଣ ଓ ଶ୍ରୀ ରାଜୀବଚରଣ ସେ ସମୟରେ ମୋତେ ବହୁତ ଉତ୍ସାହିତ କରିଥିଲେ ଓ ସେମାନଙ୍କ ପରି ମୁଁ ଯେ ଦିନେ ଭର୍ଣ୍ଣାକ୍ୟୁଲାର ପଢ଼ି ଉତ୍ତୀର୍ଣ୍ଣ ହୋଇପାରିବ ଏ କଥା ମଧ୍ୟ କହୁଥିଲେ । ନିମାଇଁ ଚରଣ ଭାଇ ସ୍ୱର୍ଗଗାମୀ ହୋଇଅଛନ୍ତି । ରାଜୀବଚରଣ ଭାଇ ଏବେ ମଧ୍ୟ ଆଗ କାଳର ସେହି ସ୍ନେହ ରଖିଅଛନ୍ତି ଓ ଜୀବନର ସୁଖୋଦୟ ସମୟରେ ଅଭିନନ୍ଦନ କରିବାର ଅଭ୍ୟାସରେ ବ୍ୟତ୍ୟୟ ଘଟାଇନାହାନ୍ତି ।

ଆମ୍ଭ ଗ୍ରାମର ଯାଁଲା ସାହିରେ ଶ୍ୟାମବନ୍ଧୁ ପାଠଶାଣୀ ନାମରେ ଜଣେ ବ୍ୟକ୍ତି ଚାହାଳୀ କରିଥିଲେ । ପ୍ରଥମେ ମୁଁ ଚାଲି ଚାଲି ଯାଇ ତାଙ୍କ ନିକଟରେ ବିଦ୍ୟାରମ୍ଭ କରିଥିଲି । ମୁଖ୍ୟତଃ ଚାଷୀଘର ପିଲାଙ୍କ ଲାଗି ସେ ଚାଟଶାଳୀ ହୋଇଥିଲା । ସେଦିନର ମୋର

ଅନେକ ସହପାଠୀ ଆଜ କୃତବିଦ୍ୟସମ୍ପନ୍ନ ଗୃହୀ । ପରେ ଗାଁର ପାଠଶାଳାସାହିରେ ଜଣେ ମାଟିବଂଶ ଅବଧାନଙ୍କ ଗୃହାଳୀରେ ମୋତେ ଅଧ୍ୟୟନ କରିବାକୁ ହୋଇଥିଲା । ନିକଟରେ ଥିବା ଗଉଡ଼ ବା ଖଣ୍ଡାୟତ ଘରର ଯୁବତୀ କନ୍ୟାମାନେ ବେଳେବେଳେ ଆମ୍ଭମାନଙ୍କୁ ବିଦ୍ୟାରେ ନ୍ୟୁନ ମନେକରି ତାଳପତ୍ର ପୋଥିରୁ ଛାନ୍ଦ ଶୁଣାଇ ଜ୍ୟେଷ୍ଠାଭଗ୍ନୀସୁଲଭ ଆଦରରେ ଆମ୍ଭମାନଙ୍କୁ ଆପ୍ୟାୟିତ କରୁଥିଲେ । ସେସବୁ ଦୃଶ୍ୟ ଆଜ ସ୍ୱପ୍ନପରି —ପ୍ରଭାତର କୁଜ୍‌ଝଟିକା ପରି—ଅନ୍ତର୍ହିତ ।

ମୋର ଶେଷ ଗୃହାଳୀପାଠ ହୋଇଥିଲା ସେହି କରଣ ଅବଧାନଙ୍କ ନିକଟରେ ଯାହାଙ୍କ ପ୍ରତି ବିଦ୍ରୋହୀ ହୋଇ ଜନନୀଙ୍କଦ୍ୱାରା ଦଣ୍ଡିତ ହେବା ବିଷୟ ମୁଁ ପୂର୍ବରୁ ଉଲ୍ଲେଖ କରିଅଛି ।

ମୁଁ ଖଞ୍ଜରୂପେ ଚାଲିପାରିବା ସଙ୍ଗେ ସଙ୍ଗେ ମୋର ପ୍ରତିଭାର ସମ୍ୟକ ସ୍ଫୁରଣ ହେଲା । ଚାଟଶାଳୀ ବିଦ୍ୟା ମୁଁ କୃତିତ୍ୱର ସହିତ ଶେଷ କଲି । ଜନକଜନନୀ କ୍ରମଶଃ ଆଶ୍ୱସ୍ତ ହେବାକୁ ଲାଗିଲେ ଯେ ସେମାନଙ୍କ ନିର୍ଦ୍ଧନ ଅବସ୍ଥା ଯୋଗୁଁ ମୋତେ କାହାରି ଗଳଗ୍ରହ ହେବାକୁ ପଡ଼ିବ ନାହିଁ—ମୁଁ ଜୀବିକା ନିର୍ବାହ କରିପାରିବି ।

ମୁଁ ଯାଁଳା ଭର୍ଣ୍ଣାକ୍ୟୁଲାର ସ୍କୁଲରେ ଦ୍ୱିତୀୟ ଶ୍ରେଣୀରେ ଭର୍ତ୍ତି ହୋଇ ଯଥାସମୟରେ ତୃତୀୟ ଶ୍ରେଣୀକୁ ଉନ୍ନୀତ ହେଲି । ତୃତୀୟ ଶ୍ରେଣୀରୁ ସାହିତ୍ୟ ଓ ବ୍ୟାକରଣ ଅଧ୍ୟାପନା ଆରମ୍ଭ ହେବାରେ ମୁଁ ଏ ଦୁଇ ବିଷୟରେ ଅସାଧାରଣ ବ୍ୟୁତ୍ପତ୍ତି ପ୍ରଦର୍ଶନ କଲି । ଅନ୍ୟାନ୍ୟ ବିଷୟମାନଙ୍କରେ ପ୍ରଥମ ସ୍ଥାନ ଅଧିକାର କରିବା ମଧ୍ୟ ମୋ ପକ୍ଷରେ ଅକଷ୍ଟକର ହେଲା । ସ୍କୁଲର ଦ୍ୱିତୀୟ ଶିକ୍ଷକ ସ୍ୱର୍ଗତ ରାମଚନ୍ଦ୍ର ମହାପାତ୍ର ମୋର ଉଜ୍ଜ୍ୱଳ ଭବିଷ୍ୟତ ବିଷୟରେ ଭବିଷ୍ୟଦ୍‌ବାଣୀ ଉଚ୍ଚାରଣ କରିବାକୁ ଲାଗିଲେ ଓ ମୁଁ ସ୍କୁଲର ସର୍ବୋତ୍ତମ ଛାତ୍ରମାନଙ୍କ ମଧ୍ୟରେ ପରିଗଣିତ ହେଲି ।

ଏହି ଅଳ୍ପ ବୟସରେ ମଧ୍ୟ ମୁଁ ରାମାୟଣ ମହାଭାରତାଦି ପୁରାଣମାନଙ୍କରେ ଥିବା ଚରିତମାନଙ୍କ ବିଷୟରେ ସମ୍ୟକ୍ ଜ୍ଞାନ ଅର୍ଜନ କରିଥିଲି । ଜଣେ ସଦାଶୟା ବୃଦ୍ଧା ମୋର ଏ ଆଗ୍ରହ ଦେଖି ମୋତେ ତାଙ୍କ ହାତଲେଖା ମହାଭାରତ ପୋଥି ପାଠ କରିବାକୁ ଦେଇଥିଲେ । ରାମାୟଣ ମୋର ବିଶେଷ ପ୍ରିୟ ଥିଲା ଏବଂ ମୁଁ ବହୁ ସମୟ ସ୍କୁଲକୁ ଯାଉଛି ବୋଲି ଛଳନା କରି ସାଧୁଚରଣ ଦାସ ନାମରେ ଆମ୍ଭମାନଙ୍କର ଜଣେ ସଂପର୍କିତ ବ୍ୟକ୍ତି ଘରେ ଲୁଚି କରି ରହୁଥିଲି । ସେ ବିଚରା ପକ୍ଷାଘାତ ବ୍ୟାଧିରେ ପୀଡ଼ିତ ହୋଇ ବଡ଼ ଦୁଃସ୍ଥ ଅବସ୍ଥାରେ ଘରେ ବସି ରହୁଥାନ୍ତି । ତାଙ୍କୁ ଦୁଇ ଅଣା ବା ଚାରି ଅଣା ପଇସା ଦେଇଦେଲେ ତହିଁରେ ତାଙ୍କ ଘରର ଦିନକର ଖର୍ଚ୍ଚ ଚଳିଯାଏ, କାରଣ ଜିନିଷ-ପତ୍ର ଏବେପରି ଏତେ ଦୁର୍ମୂଲ୍ୟ ହୋଇ ନ ଥାଏ । ସେ ବଳରାମ ଦାସଙ୍କ ଦାଣ୍ଡି ରାମାୟଣ ପୋଥି ପଢ଼ି ମୋତେ ଶୁଣାନ୍ତି ଓ ମୁଁ ତହିଁରେ ଆତ୍ମହରା ହୋଇଯାଏ । ସୁନ୍ଦରା-କାଣ୍ଡର ମାଧୁରୀ ଯୋଗୁଁ ମୁଁ ବହୁବାର ତାହା ଶୁଣିଅଛି । ସାରଳା ମହାଭାରତ ମଧ୍ୟ ମୁଁ ତାଙ୍କଠାରୁ ଏହି କୌଶଳରେ ଶୁଣିଥିଲି । ଜନକଜନନୀ ବା ଶିକ୍ଷକ କେହି ଏଥିର ଟେର୍ ପାଉ ନଥିଲେ । ଶିକ୍ଷକ ଭାବୁଥିଲେ କୌଣସି ପାରିବାରିକ ଅସୁବିଧାରୁ ମୁଁ ବିଦ୍ୟାଳୟକୁ ଯାଇପାରୁ ନାହିଁ । ମୁଁ ଭଲ ପଢ଼ୁଥିବାରୁ ମଧ୍ୟ ମୋତେ ସେ ସନ୍ଦେହ କରୁ ନଥିଲେ ବା ମୋ କଥା ଘରକୁ ପଚାରି ପଠାଉ ନଥିଲେ । ରାମାୟଣ ବା ମହାଭାରତ ଶୁଣିଲା ବେଳେ ମୁଁ କ୍ରୋରତଃ ତ୍ରେତା ବା ଦ୍ୱାପର ଯୁଗରେ ଅଛି ବୋଲି ଭାବୁଥିଲି ।

ଚତୁର୍ଥ ଶ୍ରେଣୀକୁ ଉନ୍ନୀତ ହେବାପରେ ଅପର-ପ୍ରାଇମେରୀ ବୃତ୍ତିପରୀକ୍ଷାକୁ ମୁଁ ପ୍ରେରିତ ହେବି ବୋଲି ସ୍ଥିର ହେଲା । ସମସ୍ତଙ୍କ ଆଶାକୁ ଫଳବତୀ କରି ମୁଁ ଯଥାସମୟରେ ବୃତ୍ତିପ୍ରାପ୍ତ ହେଲି । ମୋ ଦେହର ଖୁଣ ଏଣିକି ମୋ ଅନ୍ତରର ଗୁଣର ପ୍ରଚ୍ଛାଦକ ହେଲା ବୋଲି ଆଉ ବିଶେଷ ଘୃଣିତ ହେଲି ନାହିଁ । ପଞ୍ଚମ ଓ ଷଷ୍ଠ ଶ୍ରେଣୀରେ ସାହିତ୍ୟରେ ମୁଁ ଏପରି ବ୍ୟୁତ୍ପତ୍ତି ଦେଖାଇଲି ଯେ ପ୍ରଧାନ ଶିକ୍ଷକ ସ୍ୱର୍ଗତ ନାରାୟଣ ତ୍ରିପାଠୀ ମୁକ୍ତକଣ୍ଠରେ ଘୋଷଣାକଲେ

ସେ ତାଙ୍କ ୩୦ ବର୍ଷର ଶିକ୍ଷକତା ମଧ୍ୟରେ କୌଣସି ଛାତ୍ରଠାରେ ଏତାଦୃଶ ସାହିତ୍ୟଜ୍ଞାନ ଦର୍ଶନ କରି-ନାହାନ୍ତି । ତ୍ରିପାଠୀ ମହୋଦୟ କେତେକ ବୟସ୍କ ବ୍ୟକ୍ତିଙ୍କୁ ନିମନ୍ତ୍ରଣ କରି ଥରେ ଗୋଟିଏ ସାହିତ୍ୟସଭା କରାଇଥିଲେ । ତହିଁରେ କେତେକ ବ୍ୟକ୍ତି ସ୍ୱରଚିତ କବିତାମାନ ପାଠ କରିବାର ବ୍ୟବସ୍ଥା କରାଯାଇଥିଲା । ଆଜି ମୋର ଠିକ୍ ମନେପଡୁନାହିଁ ମୁଁ କୌଣସି ଦୁଇଟି ବିଷୟରେ ଦୁଇଟି କବିତା ଲେଖି ପାଠ କରିଥିଲି । ମୋତେ ତେତେବେଳକୁ ୧୦ ବା ୧୧ ବର୍ଷ ବୟସ । ସଭାସଦମାନେ ଏକସ୍ୱରରେ କହିଥିଲେ ଯେ କି ସମସାମୟିକ କି ବୟସ୍କ ସମସ୍ତଙ୍କ ରଚନାକୁ ମୋ ରଚନା ନିଷ୍ପ୍ରଭ କରିଦେଲା । ସ୍ୱର୍ଗତ ତ୍ରିପାଠୀ ଘୋଷଣା କରିଥିଲେ ଯେ ମୋହର ସମୁଜ୍ଜ୍ୱଳ ସାହିତ୍ୟିକ ଭବିଷ୍ୟତ ରହିଅଛି । ସେହିଦିନଠାରୁ ମୋର ସମ୍ମାନ ଓ ସ୍ନେହ ସର୍ବତ୍ର ବଢ଼ିଗଲା ଓ ମୁଁ ଜଣେ ଅସାଧାରଣ ବାଳକ ବୋଲି ସର୍ବମୁଖରେ ଘୋଷିତ ହେଲି ।

ଏହି ସମୟରେ ଘଟିଥିବା ଗୋଟିଏ ଘଟଣାର ସ୍ମୃତି ହୃଦୟରେ ଚିର ଜାଗରୂକ ରହିଅଛି—ତା ହେଉଛି ପୁଣ୍ୟବତୀ ପିତାମହୀଙ୍କ ସ୍ୱର୍ଗାରୋହଣ । ତାଙ୍କ ଶେଷ ନିଃଶ୍ୱାସ ତ୍ୟାଗର ପ୍ରାୟ ୬ ଘଣ୍ଟା ପୂର୍ବରୁ ମୁଁ ତାଙ୍କ ଶ୍ରବଣ ନିମନ୍ତେ ଭାଗବତ ପାଠ କରୁଥିଲି—ଶାରୀରିକ ସକଳ କଷ୍ଟ ବିସ୍ମୃତ ହୋଇ ସେ ଶେଷ ନିଦ୍ରାରେ ଚକ୍ଷୁ ମୁଦ୍ରିତ କରିଥିଲେ । ଜନକ-ଜନନୀ ତାଙ୍କ ଶେଷ-ପ୍ରୟାଣରେ ଅଧୀର ହୋଇ ପଡ଼ିଥିଲେ । ଏକାଧାରରେ ବହୁ ବିଭବ ଓ ବହୁ ଅଭାବ ଭୋଗ କରିଥିବା ଏ ଜୀବନର ବିଲୟ ମୋତେ ମଧ୍ୟ ଅଭିଭୂତ କରି ମୋ ଅନ୍ତରରେ ଗୋଟାଏ ବିରାଟ ରିକ୍ତତା ସୃଷ୍ଟି କରିଥିଲା । ନିଜର ଦୟାଦାକ୍ଷିଣ୍ୟାଦି ଗୁଣରେ ସେ ଆଖପାଖ ଗ୍ରାମମାନଙ୍କର ଏତେ ଲୋକଙ୍କ ମନକୁ କିଣି ନେଇଥିଲେ ଯେ ତାଙ୍କ ମୃତ୍ୟୁରେ ଗଛପତ୍ର ମଧ୍ୟ କାନ୍ଦିଥିଲେ ।

ମୁଁ ଭର୍ଣ୍ଣାକ୍ୟୁଲାର ବୃତ୍ତିପରୀକ୍ଷା ଦେବାପାଇଁ ମଧ୍ୟ ନିର୍ବାଚିତ ହୋଇଥିଲି । ତହିଁରେ ମଧ୍ୟ ମୁଁ ଜିଲ୍ଲାରେ ଉଚ୍ଚ ସ୍ଥାନ ଲାଭକରି ବୃତ୍ତିପ୍ରାପ୍ତ ହେଲି । ଗ୍ରାମର ବହୁ ଲୋକଙ୍କଠାରୁ ବିଦ୍ୟାରେ ମୁଁ ସ୍ୱତନ୍ତ୍ର ବିଶିଷ୍ଟତାର ଅଧିକାରୀ ବୋଲି ଲୋକେ କହିବାକୁ ଲାଗିଲେ । ମୋର ଏଣିକି ମାଟ୍ରିକ୍ୟୁଲେସନ ପାଠ ପଢ଼ିବାର ପଥ ଉନ୍ମୁକ୍ତ ହୋଇଗଲା । ବୃତ୍ତି ପାଉଥିବା ବାଳକମାନେ ବୃତ୍ତି ଟଙ୍କା ପାଇବା ସଙ୍ଗେ ସଙ୍ଗେ ସ୍କୁଲରେ ଦରମା ଦେବାରୁ ମଧ୍ୟ ଅବ୍ୟାହତି ପାଉଥିଲେ । ଜନକ ଓ ଜ୍ୟେଷ୍ଠଭ୍ରାତା (ତେତେବେଳକୁ ସେ ଖୋର୍ଦ୍ଧା ଉଚ୍ଚ ଇଂରାଜୀ ବିଦ୍ୟାଳୟର ସହକାରୀ ଶିକ୍ଷକ) ମୋ ପାଇଁ ଦରମା ଗଣିବା ଦାୟିତ୍ୱରୁ ମୁକ୍ତି ଲାଭକଲେ । ଜନକ ଓ ଜନନୀ ଏଣିକି ମୋ ପକ୍ଷରେ ଜୀବିକାର୍ଜନ କରି ଚଳିପାରିବାର ସମ୍ଭାବନାକୁ ଅଧିକ ସ୍ପଷ୍ଟକରି ଦେଖିପାରିବାକୁ ଲାଗିଲେ । ଜନକ ଭଗବତୀ ଦାରୁଣୀଙ୍କ ନିକଟରେ ଓ ଜନନୀ ଭଗବାନ ଶ୍ରୀଗୋପାଳଙ୍କଠାରେ ଭକ୍ତିତଦ୍‌ଗତ ହୋଇ ମୋ ପାଇଁ ବହୁ ନିବେଦନ କରିଥିଲେ । ସର୍ବସାଧାରଣରେ ମୋର କବିଯଶ ଓ ବିଦ୍ୟାଖ୍ୟାତି ମୋତେ ଆଶାତୀତ ସମ୍ମାନ ଆଣି ଦେଇଥିଲା । ତଥାପି ଖଞ୍ଜ ହେବାର ଅଗୌରବ ମୋ ଯୁବହୃଦୟକୁ ସମୟେ ସମୟେ ଅସହନୀୟ ଦାରୁଣ ବ୍ୟଥା ଦେଉଥିଲା । ସ୍ଫୂର୍ତ୍ତିମାନ ସଚଳ ତରୁଣମାନଙ୍କ ସହିତ ନିଜକୁ ତୁଳନା କରି ମୁଁ ମୋର ଖ୍ୟାତି ସତ୍ତ୍ୱେ ଅତୀବ ବିଷଣ୍ଣ ହୋଇପଡ଼ୁଥିଲି । ଖ୍ୟାତି ମୋ କାନରେ ଆଶ୍ୱାସନାର ନାନା ସୁମିଷ୍ଟ ବାଣୀ ନିରବଚ୍ଛିନ୍ନ ଭାବରେ ଶୁଣାଉଥିଲେ ମଧ୍ୟ ମୁଁ ଯେ ମୋ ଶରୀର ଯେନ ତାରୁଣ୍ୟ-ଦ୍ୱାରା ଉପେକ୍ଷିତ ଓ ଅସମ୍ମାନିତ ଏହା ସମସ୍ତଙ୍କ ଅଲକ୍ଷ୍ୟରେ ମୋ ହୃଦୟକୁ ନିକୃନ୍ତିତ କରୁଥିଲା । ବିଧାତା ଚନ୍ଦ୍ରକୁ କଳଙ୍କୀ, କୋକିଳକୁ କୃଷ୍ଣ, କିଂଶୁକକୁ ନିର୍ଗନ୍ଧ କେତକୀ ଓ ଗୋଲାପକୁ କଣ୍ଟକୀ କଲାପରି ମୋ ପ୍ରତିଭାକୁ ଯାହା କଷ୍ଟାଶ୍ରୟୀ କଲା ତାହା ଏକା ତେତେବେଳେ କାହିଁକି, ଆଗକୁ ଆହୁରି ବହୁ ବର୍ଷ ଯାଏଁ ମୋ ପ୍ରାଣକୁ ଅସ୍ଥିର କରିଥିଲା । ପରେ ଯଥାସମୟରେ ସୀତାରାମଙ୍କର ଏତତ୍‌ସଂପର୍କିତ ମଙ୍ଗଳବିଧାନର ସଙ୍କେତ ଲାଭ-କଲା ଉତ୍ତରୁ ମୋ ଅଭିଯୋଗଘଣ୍ଟାରେ ଭଟା ପଡ଼ିଥିଲା । ଯୌବନ ଅଜ୍ଞାନ—ବୟସ ଜ୍ଞାନୀ ।

ଜୟ ମା କଳିଙ୍ଗ ଭାରତୀ ।

# ଚତୁର୍ଥ ଅଧ୍ୟାୟ

ଭର୍ଣ୍ଣାକ୍ୟୁଲାର ପାଠ ଇତିଶ୍ରୀ ହେଲାପରେ ମୋର ଇଂରାଜି ପଢ଼ିବାର କଥା—ତେଣୁ ଖୋର୍ଦ୍ଧା ଉଚ୍ଚ ଇଂରାଜି ସ୍କୁଲରେ ମୋର ପଢ଼ିବାର ସ୍ଥିର ହେଲା । ତେତେବେଳକୁ ମୋର ଜ୍ୟେଷ୍ଠ ସହୋଦର ପଦ୍ମଚରଣ ପଟ୍ଟନାୟକ ଖୋର୍ଦ୍ଧା ଉଚ୍ଚ ଇଂରାଜି ସ୍କୁଲରେ ସହକାରୀ ଶିକ୍ଷକ ଓ ହଷ୍ଟେଲ(ଛାତ୍ରାବାସ)ର ଅଧ୍ୟକ୍ଷ ଥାଆନ୍ତି । ମୁଁ ହଷ୍ଟେଲରେ ରହିଲି । ହଷ୍ଟେଲଠାରୁ ସ୍କୁଲ ଗୁଡ଼ାଏ ବାଟ । ମୁଁ ସ୍କୁଲକୁ ଚାଲିକରି ଯିବା ଓ ହଷ୍ଟେଲକୁ ଫେରିବା ପ୍ରଭୃତି କରୁଣାରୁ ଦୁଷ୍କର ହେଲାନାହିଁ । ତଥାପି ଗୁଡ଼ାଏ ଶାରୀରିକ କ୍ଲେଶକୁ ଦୁର୍ଦ୍ଦୈବପ୍ରେରିତ ଦଣ୍ଡରୂପେ ମୁଣ୍ଡପାତି ଗ୍ରହଣ କରିବାକୁ ପଡ଼ିଲା । ମୋତେ ମାଇନର ପ୍ରଥମ ଶ୍ରେଣୀ (ଉଚ୍ଚ ଇଂରାଜି ସ୍କୁଲର ୫ମ ଶ୍ରେଣୀ)ରେ ନାମ ଲେଖାଇବାକୁ ହେଲା ।

ଭର୍ଣ୍ଣାକ୍ୟୁଲର ବୃତ୍ତିପରୀକ୍ଷା ଦେବା ପରେ ପରେ ମୁଁ ଘରେ ଦୁଇ ଚାରିଖଣ୍ଡ ଇଂରାଜିଶିକ୍ଷା ପ୍ରାଥମିକ ପୁସ୍ତକ ପଢ଼ି ଆୟତ୍ତ କରିଦେଇଥିଲି । ଏ ସବୁର ମାନେ (ଅର୍ଥ) ବହି ବଙ୍ଗଳାରେ ପ୍ରଣୀତ ହୋଇଥିଲା । ମୁଁ ମନକୁ ମନ ବଙ୍ଗଳା ଭାଷା ପଢ଼ି ଯାଇଥିଲି । ଜଣେ ପଡ଼ୋଶୀଙ୍କ ଘରେ ବଙ୍ଗଳା ଆରବ୍ୟ ଉପନ୍ୟାସ, ପାରସ୍ୟ ଉପନ୍ୟାସ ଓ ତୁରସ୍କ ଉପନ୍ୟାସ ଆଦି ନାନା ବଙ୍ଗଳା ବହି ଗଚ୍ଛିତ ଥିଲା ଓ ମୁଁ ସେ ସବୁକୁ ପଢ଼ିଥିଲି । ତେଣୁ ବଙ୍ଗଳା ମାନେବହି ଧରି କାହାରି ବିନା ସାହାଯ୍ୟରେ ଇଂରାଜି ଶିକ୍ଷା କରିବା ମୋ ପକ୍ଷରେ ଆଦୌ କଠିନ ହୋଇ ନ ଥିଲା । ବୃତ୍ତିଧାରୀ ଓ କବିତାକୁଶଳ ଥିବାରୁ ସହପାଠୀ ଓ ସମସାମୟିକମାନେ ମୋତେ ବହୁତ ସମ୍ମାନ କରୁଥିଲେ । ଶ୍ରେଣୀରେ ମଧ୍ୟ ଅଧ୍ୟୟନରେ ମୁଁ ବିଶିଷ୍ଟ ନୈପୁଣ୍ୟ ଦେଖାଇବାରୁ ବିଭିନ୍ନ ବିଷୟର ଶିକ୍ଷକମାନେ ମୋ ବିଷୟରେ ଉଚ୍ଚ ଧାରଣା ପୋଷଣ କରିବାରେ ଲାଗିଲେ । ମୋ ଦେହରେ ଖୁଣ ଥିବାରୁ ମୋ ଗୁଣଗୁଡ଼ିକ ସମସ୍ତଙ୍କ ଆଖିକି ବଡ଼ ଦିଶିଲି । ମହେନ୍ଦ୍ରନାଥ ମଜୁମଦାର ବୋଲି ଜଣେ ବୟସ୍କ ବଙ୍ଗୀୟ ବିଦ୍ୱାନ୍ ଆମ୍ଭମାନଙ୍କର ହେଡ଼ମାଷ୍ଟର (ପ୍ରଧାନ ଶିକ୍ଷକ) ଥିଲେ । ତାଙ୍କ ଦୃଷ୍ଟି ଆକର୍ଷଣ କରିବା ମୋ ପକ୍ଷରେ କଷ୍ଟକର ହେଲାନାହିଁ ।

ମୁଁ ଆଗରୁ ଉଲ୍ଲେଖ କରିଅଛି ଯେ ଖୁବ୍ ଅଳ୍ପ ବୟସରୁ ମୁଁ କବିତା ରଚନା କରିବାର ଶକ୍ତି ଲାଭ କରିଥିଲି । ମୁଁ ଉଚ୍ଚ ଇଂରାଜି ସ୍କୁଲକୁ ଆସିବାର ତିନି ଚାରିବର୍ଷ ପୂର୍ବରୁ ମୋର ଜ୍ୟେଷ୍ଠାଭଗିନୀ ଇଚ୍ଛାବତୀ ଅପା ସାକ୍ଷୀଗୋପାଳର ପଟ୍ଟନାୟକ ସାହିରେ ଅବସ୍ଥିତ ଆମ୍ଭ ମାତୁଳାଳୟକୁ ଯାଇଥିଲେ । ଫେରିଲାବେଳକୁ ସେ ଗୀତମାନ ଉତାରିକରି ରଖିବାକୁ ତାଙ୍କ ବୟସ୍ୟା ବାଳିକାମାନଙ୍କଠାରୁ ଗୁଡ଼ିଏ ଗୀତଖାତା ମାଗିଆଣିଥିଲେ । ମୋର ହସ୍ତାକ୍ଷର ଭଲ ଥିବାରୁ ସେ ସବୁ ଗୀତକୁ ଉତାରି ଦେବାକୁ ସେ ମୋତେ ଅନୁରୋଧ କରିଥିଲେ । ସେ ସବୁ ଖାତାରେ ଓଡ଼ିଶାର ନାନା ଜନପ୍ରିୟ ଗୀତ ସହିତ ରାମଙ୍କ ବନବାସରେ କୌଶଲ୍ୟାଙ୍କ ରୋଦନ ଓ ସୀତାଙ୍କ ହରଣ ପରେ ରାମଙ୍କ ବିଳାପ ପ୍ରସଙ୍ଗରେ ବହୁ କବିଙ୍କର ବହୁସଂଖ୍ୟକ ଗୀତ ଥିଲା । ସେସବୁ ଭିନ୍ନ ଭିନ୍ନ ବୃତ୍ତରେ ମଧ୍ୟ ଲିଖିତ ହୋଇଥିଲା । ସେ ସମୟର ବାଳିକାମାନେ ଏହିସବୁ ଗୀତ କଣ୍ଠସ୍ଥ କରି କୁମାର ଉତ୍ସବ ଉପଲକ୍ଷେ ଆଶ୍ୱିନ ମାସ ରାତିରେ ଗାନ କରୁଥିଲେ । ମୁଁ ଏ ସବୁ ଗୀତକୁ ଉତାରି ଦେଲି ଏବଂ ନିଜେ ଏହି ଗୀତପରି ସାତ ଆଠ ଗୀତ ରଚନା କରି ଉକ୍ତ ଖାତାର ଅନ୍ତର୍ଭୁକ୍ତ କରିଦେଲି । ଇଚ୍ଛାବତୀ ଅପା ତାଙ୍କ ଖାତାସବୁକୁ ମୂଳ ଖାତାମାନଙ୍କ ସହିତ ମିଳେଇଲା ବେଳକୁ ଏ ଗୀତସବୁ ଧରାପଡ଼ିଲା ଓ ଏ ସବୁର ରଚକ କିଏ ବୋଲି ଅନୁସନ୍ଧାନ କରାଗଲା । ଶେଷକୁ ମୋ କରଣି ଧରାପଡ଼ିଲା । ଘରେ ଜନକ ଜନନୀ

ଓ ଜ୍ୟେଷ୍ଠଭ୍ରାତାଦି ଗୁରୁଜନ ଏ ଗୀତସବୁ ପଢ଼ି ମୋ ସ୍ୱତଃସ୍ଫୂର୍ତ୍ତ କବିଶକ୍ତିରେ ବିମୋହିତ ଓ ଚକିତ ହୋଇଗଲେ । ଭର୍ଣ୍ଣାକ୍ୟୁଲାର ସ୍କୁଲ ପ୍ରଧାନଶିକ୍ଷକଙ୍କ ପୂର୍ବରୁ ଉଲ୍ଲିଖିତ ଆହୂତ ସଭାରେ ମୁଁ ଯେଉଁ ଦୁଇଟି କବିତା ଲେଖି ପଢ଼ିଥିଲି ଏ ସବୁ କବିତାର ରଚନା ତାର ପୂର୍ବ ଘଟନା ।

ଖୋର୍ଦ୍ଧା ଉଚ୍ଚ ଇଂରାଜି ବିଦ୍ୟାଳୟର ବାର୍ଷିକ ପୁରସ୍କାର ବିତରଣ ସଭାପାଇଁ ଅଭିନୟ ଓ ଆବୃତ୍ତି ଆଦିର ଆୟୋଜନ ହେଉଥାଏ । ଆମ୍ଭ ଶ୍ରେଣୀର ଆବୃତ୍ତି ପାଇଁ ବଙ୍ଗୀୟ କବି ଯୋଗୀନ୍ଦ୍ରନାଥ ବସୁଙ୍କ ରଚିତ "ଭାରତର ମାନଚିତ୍ର" କବିତା ନିର୍ବାଚିତ ହୋଇଥିଲା । ମୋଦ୍ୱାରା ଶିକ୍ଷକମାନେ ତହିଁର ଓଡ଼ିଆ ଅନୁବାଦ କରାଇନେଲେ । ସେ କବିତାରେ ଓଡ଼ିଶା-ବିଷୟକ କୌଣସି କଥା କବି ଲେଖି ନ ଥିଲେ । ଅମିତ୍ରାକ୍ଷର ବୃତ୍ତରେ ଓଡ଼ିଶାର ଗୌରବବିଷୟକ ପଂକ୍ତିମାନ ରଚନାକରି ମୁଁ ତହିଁର ସାମିଲ୍ କରିଦେଲି । ଏ ଅଂଶ ସମଗ୍ର କବିତା ସହିତ ଏପରି ଅବିକଳ ମିଶିଗଲା ଯେ ପ୍ରଧାନ ଶିକ୍ଷକ ସମଗ୍ର କବିତାର ଆବୃତ୍ତି ଶୁଣି ଓଡ଼ିଶାର ଗୌରବବିଷୟକ ପଂକ୍ତି-ମାନଙ୍କର ରଚନା କାହାର ବୋଲି ସହକାରୀ ଶିକ୍ଷକ-ମାନଙ୍କୁ ପ୍ରଶ୍ନ କଲେ । ରଚକ ପଞ୍ଚମ ଶ୍ରେଣୀର ଛାତ୍ର ବିଚ୍ଛନ୍ଦ ବୋଲି ସେ ଯେତେବେଳେ ଶୁଣିଲେ ତାଙ୍କ ବିସ୍ମୟର ଆଉ ସୀମା ରହିଲା ନାହିଁ । "ଏ ବାଳକ ଏ ବୟସରୁ ବଙ୍ଗର ଯଶସ୍ୱୀ କବି ଯୋଗୀନ୍ଦ୍ର ନାଥ ବସୁଙ୍କ କବିତା ପରି କବିତା ଲେଖିପାରୁଛି—ଭବିଷ୍ୟତରେ ସାହିତ୍ୟ କ୍ଷେତ୍ରରେ ଏ ନିଶ୍ଚୟ ଅତି ମହତ୍ତ୍ୱ କୃତିତ୍ୱ ପ୍ରଦର୍ଶନ କରିବ ଏଥିରେ ସନ୍ଦେହ ନାହିଁ" ବୋଲି କହି ସେ ମୋତେ ଉଚ୍ଛ୍ୱସିତ କଣ୍ଠରେ ଅଭିନନ୍ଦନ କରି-ଥିଲେ । ଏବର ଭୂଦାନନେତା କୃପାସିନ୍ଧୁ ହୋତା ସେ ସମୟରେ ଖୋର୍ଦ୍ଧା ଉଚ୍ଚ ଇଂରାଜୀ ସ୍କୁଲର ଓଡ଼ିଆ ଶିକ୍ଷକ ଥିଲେ । ସେ ଛାତ୍ରମାନଙ୍କ ମଧ୍ୟରେ ସାହିତ୍ୟ-ସାଧନା ପ୍ରବର୍ତ୍ତିତ କରିବାରେ ଅତ୍ୟନ୍ତ ତତ୍ପର ଥିଲେ । ତାଙ୍କ ପ୍ରବର୍ତ୍ତିତ ସାମୟିକ ପତ୍ରିକାରେ ମୁଁ କବିତା ଓ ପ୍ରବନ୍ଧ ଲେଖୁଥିଲି । ସେ ଉଚ୍ଚ ମହଲରେ ମୋର ଯଶ ପ୍ରଚାର କରିବାରେ ମୁଖର ହୋଇପଡ଼ିଥିଲେ । ପଦ୍ମ-ପାଖୁଡ଼ା ଆଦି ପୁସ୍ତକର ଯଶସ୍ୱୀ କବି ପଦ୍ମଚରଣ ପଟ୍ଟନାୟକ (ମୋ ଜ୍ୟେଷ୍ଠଭ୍ରାତା ଆଉ ଜଣେ ପଦ୍ମଚରଣ ପଟ୍ଟନାୟକ) ମୋ କବିତାଶକ୍ତିକୁ ପ୍ରଶଂସା କରି ମୋ ଭର୍ଣ୍ଣାକ୍ୟୁଲାର ପାଠ ଅବସ୍ଥାରେ ମୋ ପାଖକୁ ଉତ୍ସାହପତ୍ର ପ୍ରେରଣ କରିଥିଲେ—ସେ ଖୋର୍ଦ୍ଧା ଉଚ୍ଚ ଇଂରାଜୀ ସ୍କୁଲ ପରିଚାଳନା ସଭାର ସଭ୍ୟ ଭାବରେ ଖୋର୍ଦ୍ଧା ଆସି ପରୀକ୍ଷାରେ ଶିକ୍ଷକଙ୍କଠାରେ ଥିବା ମୋର ଇଂରାଜୀ ଉତ୍ତର ଖାତା ଦେଖିବାର ସୁଯୋଗ ପାଇଥିଲେ । ମୋର ତେତେବେଳକୁ ମାଟ୍ରିକ୍ୟୁଲେସନ ଚତୁର୍ଥ (ବର୍ତ୍ତମାନର ଅଷ୍ଟମ) ଶ୍ରେଣୀ । ସେ କହିଲେ, "ଆଗରୁ ତୁମ୍ଭର ଓଡ଼ିଆ କବିତା ଦେଖି ମୁଗ୍ଧ ହୋଇଥିଲି । ଏବେ ତୁମ୍ଭ ଇଂରାଜୀ ରଚନାଶୈଳୀ ଦେଖି ମୁଁ ଭବିଷ୍ୟତ-ବାଣୀ କରୁଛି ଯେ ଇଂରାଜରେ ଭବିଷ୍ୟତରେ ତୁମ୍ଭ ଭଳି ଆଉ କେହି ଲେଖମା ତୁଳନା କରିପାରିବେ ନାହିଁ । ତୁମ୍ଭେ ଅଦ୍ୱିତୀୟ ଯଶସ୍ୱୀ ହେବ ।"

ମୋ ବୟସର ପିଲାକୁ ଏ ଉତ୍ସାହ ଯଥେଷ୍ଟରୁ ମଧ୍ୟ ଅଧିକ ଥିଲା ।

ମୁଁ ଇଂରାଜି ଭାଷାକୁ ଆୟତ୍ତ କରିବାକୁ ପ୍ରାଣପଣେ ଚେଷ୍ଟିତ ହୋଇଥିଲି । ଆମ ବେଳକୁ ଓଡ଼ିଆ ଲେଖକ-ମାନେ ଅନୁବାଦ ଶିକ୍ଷା ବହି ଲେଖି ନ ଥିଲେ । ବେଣୀ-ମାଧବ ଗାଙ୍ଗୁଲି, ରସମୟ ମିତ୍ର, ଗଙ୍ଗାଧର ବାନର୍ଜ୍ଜୀ ପ୍ରଭୃତି ବଙ୍ଗୀୟ ଲେଖକମାନେ ଅନୁବାଦ ଶିକ୍ଷାର ସାନ ବଡ଼ କରି ଦୁଇ ଦୁଇଖଣ୍ଡ ପୁସ୍ତକ ଲେଖିଥିଲେ । ମୋର ମନେଅଛି ମାଟ୍ରିକ୍ୟୁଲେସନ ପଢ଼ାବେଳେ ଅନୁବାଦ ଶିକ୍ଷା ନିମନ୍ତେ ବଜାର ବା ଗ୍ରନ୍ଥାଗାରମାନଙ୍କରେ ମିଳୁଥିବା ଯାବତୀୟ ଅନୁବାଦ ଶିକ୍ଷା ବହି ମୁଁ ପଂକ୍ତି ପଂକ୍ତି କରି

ଆୟତ୍ତ କରିଥିଲି । ଅନ୍ୟ ଭାଷା ଶିକ୍ଷା କରିବାର ଗୋଟିଏ ପ୍ରକୃଷ୍ଟ ଉପାୟ ହେଉଛି ମାତୃଭାଷାକୁ ସେ ଭାଷାରେ ଅନୁବାଦ କରିବା । ଏହି ଉପାୟରେ ମୁଁ ଆବାଲ୍ୟରୁ ଇଂରାଜି ଭାଷା ଆୟତ୍ତ କରିଥିବାରୁ କବିସମ୍ରାଟ ଉପେନ୍ଦ୍ରଭଞ୍ଜ, ଦୀନକୃଷ୍ଣ ଦାସ, ଅଭିମନ୍ୟୁ ସାମନ୍ତସିଂହାର ଓ କବିସୂର୍ଯ୍ୟାଦି ମହାରଥୀମାନଙ୍କ କବିତାକୁ ଇଂରାଜୀ କରିଦେବାକୁ ମୋତେ ଆଦୌ ଆୟାସ କରିବାକୁ ପଡ଼ୁନାହିଁ ।

ମାଟ୍ରିକୁଲେସନ ୪ର୍ଥ ଶ୍ରେଣୀରୁ ଆରମ୍ଭ କରି ୩ୟ ଓ ୨ୟ ଶ୍ରେଣୀର ପ୍ରାୟ ଶେଷ ପର୍ଯ୍ୟନ୍ତ ମୁଁ ଖୋର୍ଦ୍ଧା ଉଚ୍ଚ ଇଂରାଜୀ ସ୍କୁଲରେ ଅଧ୍ୟୟନ କରିଥିଲି । ଖୋର୍ଦ୍ଧା ଉଚ୍ଚ ଇଂରାଜୀ ସ୍କୁଲର ସର୍ବୋତ୍ତମ ଛାତ୍ରମାନଙ୍କ ମଧ୍ୟରେ ମୁଁ ଗଣିତ ହେଉଥିଲି । ମାଟ୍ରିକୁଲେସନ ତୃତୀୟ ଶ୍ରେଣୀରେ ପଢ଼ିଲାବେଳେ ବଙ୍ଗୀୟ ମନୀଷୀ ଲାଲବିହାରୀ ଦେଙ୍କ ଫୋକ୍ ଟେଲ୍‌ସ ଅଫ୍ ବେଙ୍ଗଲ (ବଙ୍ଗୀୟ ଲୋକକାହାଣୀ) ଆମ୍ଭମାନଙ୍କର ପାଠ୍ୟପୁସ୍ତକ ଥିଲା । କୌଣସି ପରୀକ୍ଷାରେ ମୋର ଉତ୍ତରପତ୍ର ଦେଖି ଖୋର୍ଦ୍ଧା ସ୍କୁଲର ଜଣେ ସହକାରୀ ଶିକ୍ଷକ ଶ୍ରୀ ଆଶୁତୋଷ ବାଟେଟୀ ସମସ୍ତଙ୍କ ସମକ୍ଷରେ ପ୍ରକାଶ କରିଥିଲେ ଯେ ମୋ ଲେଖା ଲାଲବିହାରୀ ଦେଙ୍କ ଲେଖାର ସମକକ୍ଷ ହୋଇପାରିଅଛି । ଶିକ୍ଷକମାନେ ତହିଁର ପରୀକ୍ଷା କରିବା ବିଡ଼ମ୍ବନା ମାତ୍ର । ମୁଁ ଯେ କେବଳ ପରିଶ୍ରମ କରି ଇଂରାଜୀ ଭାଷା ଉପରେ ଏପରି ଦଖଲ ହାସଲ କରିପାରିଥିଲି ଏହା ସତ୍ୟ ବୋଲି ମୁଁ ବିଶ୍ୱାସ କରୁ-ନାହିଁ । ମୋର ପୂର୍ବଜନ୍ମରେ ବୋଧହୁଏ ବିଶେଷ କରି ଏ ଭାଷା ସହିତ ଦୃଢ଼ ଆତ୍ମୀୟତା ରହିଥିଲା— ଏ ଜନ୍ମରେ ତେଣୁ ଏଥିରେ ବ୍ୟୁତ୍ପତ୍ତି ସ୍ୱତଃସ୍ଫୂର୍ତ୍ତ ହୋଇ ବାହାରିପଡ଼ିଲା । ଅଥବା ନିଖିଳ ବିଧାତା ସୀତାରାମ ମୋ-ଦ୍ୱାରା କଳିଙ୍ଗଭାରତୀଙ୍କ ସେବା କରାଇବା ନିମନ୍ତେ ଏହି ଜନ୍ମରେ ମଧ୍ୟ ମୋତେ ଏ ବିଦେଶୀ ଭାଷାରେ ପୂରା ବ୍ୟୁତ୍ପନ୍ନ କରିଦେଲେ । ଅତି କମ୍ ବୟସରେ ଅଭାବନୀୟ ଭାବରେ ଲୋକୋତ୍ତର ପ୍ରତିଭାର ବିକାଶ ହେଲେ ତାକୁ ପୂର୍ବଜନ୍ମର ପ୍ରଭାବ ବୋଲି କୁହାଯାଏ । ଏହାଛଡ଼ା ସୀତାରାମଙ୍କ ଅଘଟଣଘଟନପଟୀୟସୀ ମହିମା ମଧ୍ୟ ରହିଅଛି । ତାଙ୍କ ଇଚ୍ଛାରେ ଏକ ଜନ୍ମରେ ମଧ୍ୟ ଅସାଧ୍ୟ-ସଂସିଦ୍ଧି ଘଟିପାରେ । ଅଜ୍ଞ ମାନବ ଖୁବ୍ ଅଳ୍ପ ବିଷୟରେ ମାତ୍ର ଅଭ୍ରାନ୍ତ ସିଦ୍ଧାନ୍ତ କରିପାରେ— ତାଙ୍କ ବିଧାନ ପଶ୍ଚାଦ୍ଦେଶରେ ଥିବା ରହସ୍ୟ ସେ ଭେଦ କରିବ କାହୁଁ ?

ପ୍ରାୟ ଏହି ସମୟ (୧୯୧୬—୧୭) ରେ ମୋ ଜ୍ୟେଷ୍ଠଭ୍ରାତାଙ୍କ ସହଧର୍ମିଣୀ ଲାବଣ୍ୟବତୀ ଦେବୀ ଅକାଳରେ ପରଲୋକଗମନ କଲେ । ସେ ଆଦର୍ଶ-ସ୍ଥାନୀୟା କୁଳବଧୂ ଥିଲେ । ଜନକ ଜନନୀ ତାଙ୍କ ମୃତ୍ୟୁରେ ଅତ୍ୟନ୍ତ ବ୍ୟଥିତ ହୋଇଥିଲେ । ମୁଁ ମୋର ଦ୍ୱିତୀୟ ଜନନୀ ହରାଇଥିଲି । ଭ୍ରାତୃଜାୟାଙ୍କର ଶିଶୁ ସନ୍ତାନ ଆୟୁଷ୍ମାନ୍ ପ୍ରଫୁଲ୍ଲ ଚନ୍ଦ୍ର ତା ପିତାମହୀ ମୋ ଜନନୀଙ୍କ କୋଳ ଆଶ୍ରୟ କଲା । ଭବିଷ୍ୟତରେ ଆମ୍ଭ ଏକାନ୍ନବର୍ତ୍ତୀ ପରିବାରର ମୂଳ ଖୁଣ୍ଟ ଭାଜିପଡ଼ିଲା ।

ପରିବାରର ପ୍ରତିପୋଷଣ ଭାର ଜ୍ୟେଷ୍ଠଭ୍ରାତାଙ୍କ ଉପରେ ପଡ଼ିଥିଲା । ତାଙ୍କ ସ୍ୱଳ୍ପ ଆୟରେ ସେ ତାହା ଅମ୍ଳାନ ବଦନରେ ତୁଲାଉଥିଲେ । ତାଙ୍କ ପ୍ରତି ଅଦମ୍ୟ ପ୍ରେରଣାର ଉତ୍ସ ଥିଲେ ଦେବୀରୂପିଣୀ ଏହି ଲାବଣ୍ୟବତୀ । ବିଧାତା ତାଙ୍କ ବିଧାନର ବୈଚିତ୍ର୍ୟ ସଂଘଟନ କରିବାକୁ ତାଙ୍କୁ ନେଇଗଲେ । ଏକା ମରଣକାଳରେ ନୁହେଁ, ତା ପୂର୍ବରୁ ମଧ୍ୟ ସେ ରୋଗଜନିତ ବହୁ ଶାରୀରିକ କ୍ଳେଶ ଅଙ୍ଗରେ ନିଭାଉଥିଲେ । ମୁଁ ତାଙ୍କ ପ୍ରତି ଅତ୍ୟନ୍ତ ବଶମ୍ବଦ ଥିଲି । ତାଙ୍କ ରୋଗଶଯ୍ୟା ନିକଟରେ ବସି ସାଧ୍ୟାନୁଯାୟୀ ତାଙ୍କର ସେବା କରିବା ମୋ ଭାଗ୍ୟରେ ଯୁଟିଥିଲା । ସେ ପୁଣ୍ୟବତୀ ନିଶ୍ଚୟ ଦିବ୍ୟଗତି ଲାଭ କରିଥିବେ ।

ଚତୁର୍ଥ ଶ୍ରେଣୀ (ବର୍ତ୍ତମାନ ୮ମ)ର ପାଠ ଶେଷ ପରେ ତୃତୀୟ ଶ୍ରେଣୀ (ବର୍ତ୍ତମାନ ୯ମ)କୁ ଉନ୍ନୀତ ହୋଇ ମୁଁ ବାରମ୍ବାର ପୀଡ଼ିତ ହୋଇପଡ଼ି ଆରୋଗ୍ୟ ନିମନ୍ତେ ଗ୍ରାମକୁ ବାହାରି ଆସୁଥିଲି । ଏତଦ୍ଦ୍ୱାରା ମୋ ପାଠରେ ଖିଲାପ ରହୁଥିଲା । ଅନ୍ୟାନ୍ୟ ସବୁ ବିଷୟରେ ଘଟୁଥିବା କ୍ଷତିକୁ ପୂରଣ କରିନେଇ ପାରୁଥିଲି, କିନ୍ତୁ ଗଣିତ, ବୀଜଗଣିତ ଓ ଜ୍ୟାମିତି ଏ ତିନି ବିଷୟରେ ଘଟିଥିବା କ୍ଷତି ପୂରଣ କରିବା ମୋ ପକ୍ଷରେ ଦୁଷ୍କର ହୋଇଥିଲା । ମାଟ୍ରିକ୍ୟୁଲେସନ ପରୀକ୍ଷା ପର୍ଯ୍ୟନ୍ତ ଅଙ୍କରେ ଘଟି ଯାଇଥିବା ଖିଲାପ ମୋତେ ଗୋଡ଼ାଇଥିଲା । ତୃତୀୟ ଶ୍ରେଣୀଠାରୁ ଆରମ୍ଭ ହୋଇଥିବା ଶରୀରପୀଡ଼ା ମାଟ୍ରିକ୍ୟୁଲେସନ ପରୀକ୍ଷାର ପ୍ରାକ୍‌କାଳ ପର୍ଯ୍ୟନ୍ତ ମୋର ସହଚର ହୋଇଥିଲା । ଭବିଷ୍ୟତ ଛାତ୍ରଜୀବନରେ ମୋତେ କଣ୍ଟକିତ ସରଣୀରେ ଚାଲି କରାଇବାକୁ ବିଧାତାଙ୍କର ଇଚ୍ଛା ଥିଲା । ମୁଁ ମାଟ୍ରିକ୍ୟୁଲେସନରେ ବୃତ୍ତି ପାଇଥିଲେ ବିଧାତାଙ୍କ ବିଧାନର ବୈଚିତ୍ର୍ୟ ସେ ମୋଠାରେ ବୋଧହୁଏ ଫୁଟାଇ ପାରି ନ ଥାନ୍ତେ ।

ମୁଁ ମାଟ୍ରିକ୍ୟୁଲେସନ ପଢ଼ୁଥିବା ସମୟରେ ବିଶ୍ୱନାଥ କର ଓ ତାଙ୍କ ପତ୍ରିକା 'ଉତ୍କଳ ସାହିତ୍ୟ' ଅତ୍ୟନ୍ତ ପ୍ରସିଦ୍ଧ ଥିଲେ । ତରୁଣମାନେ ଉତ୍କଳସାହିତ୍ୟ ପତ୍ରିକାକୁ ନୂତନ ଯୁଗର ସାହିତ୍ୟର ଏକମାତ୍ର ନିୟନ୍ତା ବୋଲି ଭାବୁଥିଲେ । ମୁକୁର ପତ୍ରିକା ଲୋପ ପାଇଯାଇଥାଏ । ଏହି ଅବକାଶରେ ବିଶ୍ୱନାଥ କର ବଙ୍ଗାନୁକରଣର ସ୍ରୋତ ଆଣି ଓଡ଼ିଶାକୁ ପ୍ଲାବିତ କରିଦେଲେ । ମୁଁ ମାଟ୍ରିକ୍ୟୁଲେସନ ପାଠ ଶେଷକରି କଲେଜକୁ ଗଲାବେଳକୁ ବିଶ୍ୱନାଥ କରଙ୍କ ଜାତୀୟତା ଉଚ୍ଛେଦ ଓ ପରମ୍ପରାଦ୍ରୋହ ସାହିତ୍ୟ କ୍ଷେତ୍ରରେ ପୂର୍ଣ୍ଣାଙ୍ଗ ହୋଇଥିଲା । କଳାପାହାଡ଼ ପରି ସେ ଗର୍ବରେ ଇନ୍ଦ୍ର ଚନ୍ଦ୍ର ମାନୁ ନ ଥିଲେ । ଗୁଡ଼ିଏ ସମଧର୍ମା ସାହିତ୍ୟିକଙ୍କ ଗୁଟୁକାରିତାରେ ତାଙ୍କ ଅହମିକା ପରିପୁଷ୍ଟ ହୋଇ ଆକାଶଚୁମ୍ବୀ ହୋଇପଡ଼ିଥିଲା । ବିଶ୍ୱନାଥ କର ବଙ୍ଗର ପ୍ରବାସୀ ଓ ମଡର୍ଣ୍ଣ ରିଭ୍ୟୁ ପତ୍ରିକାର ସମ୍ପାଦକ ରାମାନନ୍ଦ ଚଟର୍ଜୀଙ୍କ ଅନ୍ଧାନୁକରଣ କରି ତତ୍କାଳୀନ ବହୁ ସ୍ୱଳ୍ପଧୀ ଓଡ଼ିଆ ସାହିତ୍ୟିକଙ୍କୁ ବିଭ୍ରାନ୍ତ କରିଥିଲେ—ଯଦି ରାମାନନ୍ଦ ଚଟର୍ଜୀଙ୍କ ସଦ୍‌ବୁଦ୍ଧି ତାଙ୍କଠାରେ ଥାଆନ୍ତା ତାହାହେଲେ ଓଡ଼ିଆ ସାହିତ୍ୟକୁ ସେ ପୂରାପୂରି ସାରିଦେଇ ଯାଇଥାନ୍ତେ । ସେ ବୟସରୁ ମଧ୍ୟ ମୁଁ ବିଶ୍ୱନାଥ କରଙ୍କୁ ଓ ଉତ୍କଳ ସାହିତ୍ୟକୁ ସୁଖ ପାଇବା ତ ଦୂରର କଥା, ପ୍ରକାଶ୍ୟରେ ଘୃଣା କରୁଥିଲି । ଏହି ବିଶ୍ୱନାଥ କରହିଁ ବ୍ୟକ୍ତି ଯେ ଓଡ଼ିଶାର ଶିକ୍ଷିତ କବିମାନଙ୍କୁ ଛାନ୍ଦ ଓ ଓଡ଼ିଶୀ ରାଗରାଗିଣୀ ଛଡ଼ାଇ ବିଜାତୀୟ ଢଙ୍ଗରେ କବିତା ଲେଖିବାର ଗାତରେ ଅଭ୍ୟସ୍ତ କରାଇଲେ । କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ବିରୁଦ୍ଧରେ ଜନମତ ସୃଷ୍ଟି କରିବାକୁ ଅଗ୍ରସର ହେଲେ ଏବଂ ଓଡ଼ିଆ କବିତାକୁ ବଙ୍ଗୀୟ କବିତାର ଗାତରେ ସଜାଇ ବଙ୍ଗର ବ୍ରହ୍ମ ସାହିତ୍ୟ ଗୋଷ୍ଠୀର ସାବାସ ପଦ ଅର୍ଜନ କରିବାର ଗୌରବ ଅଧିକାର ନେଇ ବସିଲେ । ସେ ଯେଉଁ କଳଙ୍କମୟ ଐତିହ୍ୟ ସୃଷ୍ଟି କରି ଯାଇଅଛନ୍ତି, ଜାତୀୟବାଦୀ ପ୍ରତ୍ୟେକ ବାଣୀସେବକ ତାହାଁ ନିମନ୍ତେ କବର ପ୍ରସ୍ତୁତ କରିବାକୁ ବଦ୍ଧପରିକର ହେବା ଉଚିତ । ଆମ ଧର୍ମରାଜ୍ୟରେ କଳାପାହାଡ଼ ଯାହା କରିଥିଲା ଆମ ସାହିତ୍ୟରାଜ୍ୟରେ ବିଶ୍ୱନାଥ କର ତାହାଠାରୁ କମ୍ କରିନାହାନ୍ତି । କେଉଁଠି ତାଙ୍କ ପ୍ରତିକୃତି ଦେଖିଲେ ମୋ ମୁଖରୁ ଦୁଇଟି ପରିଚିତ ପଂକ୍ତି ସ୍ୱତଃ ବାହାରି ପଡ଼ିଥାଏ —

"ଭଲକରି ଦେଖ ମୋର ଭ୍ରାତାଙ୍କ ବଦନ
ଉପକାରୀ ପୁରୁଷ ଗୋ ଅଟନ୍ତି ଏ ଜନ ।"

ଉତ୍କଳଗୌରବ ମଧୁସୂଦନ ଦାସଙ୍କ ସମ୍ପାଦକତ୍ୱରେ "ଦି ଓଡ଼ିଆ" ବୋଲି ଖଣ୍ଡିଏ ଇଂରାଜି ସାପ୍ତାହିକ ପତ୍ରିକା ଏହି ସମୟରେ ପ୍ରକାଶିତ ହେଉଥିଲା ।

ଏଥିର ସମ୍ପାଦକଙ୍କ ଲେଖା ସବୁ ଉଚ୍ଚକୋଟୀର ଥିଲା । କଲିକତାର ବିଖ୍ୟାତ ଷ୍ଟେଟ୍ସମ୍ୟାନ ପତ୍ରିକା ଏ ପତ୍ରିକାକୁ ଲକ୍ଷ୍ୟକରି ସମ୍ପାଦକୀୟ ସ୍ତମ୍ଭରେ ଲେଖିଥିଲେ "କଟକରୁ ବି ଓଡ଼ିଆ ପତ୍ରିକା ଦୁଇଟି ମାତ୍ର ସପ୍ତାହ ଅତିକ୍ରମ କରୁ କରୁ ତାହାର ଜ୍ଞାନଦନ୍ତ ଉଠିବାର ଦେଖାଗଲାଣି ।" ଏ ପତ୍ରିକାର ଇଂରାଜି ଲେଖାର ପ୍ରଶଂସା ଶୁଣି ମନେ ମୁଁ ମଧ୍ୟ ଏପରି ଲେଖା ଲେଖି ଯଶସ୍ୱୀ ହୋଇପାରିବି ବୋଲି କଳ୍ପନା କରିଥିଲି । ୧୬ । ୧୭ ବର୍ଷ ପରେ ୧୯୩୨ ମସିହାରେ ମୁଁ ଯେତେବେଳେ ଇଂରାଜି ପ୍ରାଚୀ ପତ୍ରିକାର ସମ୍ପାଦକୀୟ ଲେଖିଲି ମୋର ଏ କଳ୍ପନା ଚରିତାର୍ଥ ହୋଇଥିଲା । ପ୍ରାଚୀ ପତ୍ରିକାର ପ୍ରଥମ ସଂଖ୍ୟା ପ୍ରାପ୍ତ ହୋଇ ନିଜେ ଉତ୍କଳଗୌରବ ମଧୁସୂଦନ ଦାସ କଟକ ଗଣେଶ ଘାଟରେ ଅବସ୍ଥିତ ପ୍ରାଚୀ ପ୍ରେସକୁ ଆସିଥିଲେ ଓ ମୋତେ ଉଚ୍ଛ୍ୱସିତ ଅଭିନନ୍ଦନ କରି କହିଥିଲେ, "ମଧୁସୂଦନ ଦାସ ମନେ କରିଥିଲା ତାପରେ ତା ଭଳି ଇଂରାଜି ଲେଖିବା ବ୍ୟକ୍ତି ଓଡ଼ିଶାରେ ଆଉ ଜଣେ କେହି ରହିବେ ନାହିଁ । କିନ୍ତୁ ଏବେ ବୁଝିଲି ତୁମ୍ଭେହିଁ ମୋ ସ୍ଥାନ ପୂରଣ କଲ । ମଧୁସୂଦନ ଦାସ ପାଖକୁ ସମସ୍ତେ ଯାଆନ୍ତି । ମଧୁସୂଦନ ଦାସ କାହା ପାଖକୁ ଯାଏ ନାହିଁ । ତୁମ୍ଭ ଅପୂର୍ବ ପ୍ରତିଭାକୁ ସମ୍ମାନ ଦେବାକୁ ମୁଁ ଆଜି ଏ ନିୟମର ବ୍ୟତିକ୍ରମ କଲି—ଅର୍ଥାତ୍ ଅନ୍ୟ ଜଣେ ବ୍ୟକ୍ତିର ଦ୍ୱାରରେ ଅଯାଚିତ ଭାବରେ ସ୍ୱତଃ ଆସି ଉପସ୍ଥିତ ହେଲି । ତୁମ୍ଭେ ଯଦି ଶିଶୁ ହୋଇଥାନ୍ତ, ତୁମ୍ଭ ହାଡ଼ ପାକଳ ହୋଇଯାଇ ନ ଥାନ୍ତା, ତାହାହେଲେ ମୁଁ ତୁମ୍ଭକୁ ଡାକ୍ତରଙ୍କଦ୍ୱାରା ଖଞ୍ଜିଭିରୁ ମୁକ୍ତ କରିବାକୁ ଯତ୍ନ କରିଥାନ୍ତି ।"

ଏହି ମାଟ୍ରିକ୍ୟୁଲେସନ ପଢ଼ା ସମୟରେ ମୁଁ ବଙ୍ଗୀୟ କବିବର ମାଇକେଲ ମଧୁସୂଦନଙ୍କ ମେଘନାଦବଧ ଓ ବୀରାଙ୍ଗନାବ୍ଦ କାବ୍ୟ ତନ୍ନ ତନ୍ନ କରି ପାଠ କରିଥିଲି । ତାଙ୍କ ଜୀବନ କାହାଣୀ ମୋତେ ଅଭିଭୂତ କରିଥିଲା । ମୁଁ ତହିଁରୁ ବୁଝିଥିଲି ଯେ ହୃଦୟ ପର୍ଯ୍ୟାପ୍ତ ପରିମାଣରେ ବିଚ୍ଛେଦ ବିରହାଦି କ୍ଳେଶରେ ମଥିତ ନ ହେଲେ କବିତାରୂପକ ଦ୍ରବ୍ୟ ନବନୀତର ଉଦ୍‌ଭବ ହୁଏ ନାହିଁ ।

ମୁଁ ରାଧାନାଥ, ଫକୀରମୋହନ, ମଧୁସୂଦନ, ନନ୍ଦକିଶୋର, ଚିନ୍ତାମଣି ଓ ଗଙ୍ଗାଧର ପ୍ରଭୃତିଙ୍କ କବିତା ମଧ୍ୟ ମନୋନିବେଶ ସହ ଅଧ୍ୟୟନ କରିଥିଲି । ବହୁ ଓଡ଼ିଆ ଉପନ୍ୟାସ ମଧ୍ୟ ମୋ ଅଧ୍ୟୟନର ଅନ୍ତର୍ଭୁକ୍ତ ଥିଲା । କିନ୍ତୁ ସେ ବୟସରୁ ସୁଦ୍ଧା ଉପେନ୍ଦ୍ର-ଭଞ୍ଜଙ୍କର କୌଣସି ଗ୍ରନ୍ଥ ଶୁଣିଲା ମାତ୍ରେ ଏ କବି ଓ ଲେଖକମାନଙ୍କ ମଧୁରତମ ସୃଷ୍ଟିମାନ ମଧ୍ୟ ମୋ ପାଖରେ ନିଃସ୍ୱାଦ ହୋଇଯାଉଥିଲା ।

ମୋର ଜ୍ୟେଷ୍ଠଭ୍ରାତା ପଦ୍ମଚରଣ ପଟ୍ଟନାୟକ ଜଣେ ମେଧାବୀ ଓ ଅଧ୍ୟବସାୟୀ ବ୍ୟକ୍ତି ଥିଲେ । ପୈତୃକ ବିଭବର ପୂର୍ଣ୍ଣ ଅଭାବ ସତ୍ତ୍ୱେ ସେ ଏଫ. ଏ. ପାସ୍ କରି ଖୋର୍ଦ୍ଧା ସ୍କୁଲରେ ସହକାରୀ ଶିକ୍ଷକ ଥାଇଁ ଥାଇଁ ଘରୋଇ ଭାବରେ ବି. ଏ. ଓ ଇଂରେଜିରେ ଏମ୍. ଏ. ପାସ୍ କରିଥିଲେ । ସେ ମୋତେ ବଙ୍ଗଳା ଓ ଇଂରାଜି ଭାଷାର ସମୃଦ୍ଧି ସହିତ ପରିଚିତ କରିବାକୁ ଯତ୍ନଶୀଳ ହୋଇଥିଲେ । ମୁଁ ସେ ଅଳ୍ପ ବୟସରେ ସୁଦ୍ଧା ସ୍ପେନ୍‌ସର, ସେକସପିୟର, ବାଇରନ, ଶେଲି, ବ୍ରାଉନିଙ୍ଗ, ସ୍ୱିନବର୍ଣ୍ଣ, ଓ୍ୱାର୍ଡ଼ସଓ୍ୱାର୍ଥ ପ୍ରଭୃତି ବଡ଼ ବଡ଼ ଇଂରାଜି କବିଙ୍କ କବିତାର ମର୍ମ ବୁଝିପାରୁଥିଲି ଓ ଜ୍ୟେଷ୍ଠ ଭ୍ରାତାଙ୍କ ନିର୍ଦ୍ଦେଶରେ ଅନେକ ଇଂରାଜି କବିତାର ଓଡ଼ିଆ ପଦ୍ୟାନୁବାଦ କରୁଥିଲି । ଅନ୍ୟାନ୍ୟ ଶିକ୍ଷକ-ମାନେ ମୋ ଅନୁବାଦ ଦେଖି ବିସ୍ମୟରେ ଆଖି ବୁଜି ଦେଉଥିଲେ । ଜ୍ୟେଷ୍ଠଭ୍ରାତା ଘରୋଇ ଭାବରେ ଇଂରେଜିରେ ଏମ୍. ଏ. ପରୀକ୍ଷା ଦେବାକୁ ପ୍ରସ୍ତୁତ ହେଉ-ଥିଲା ବେଳେ ତାଙ୍କ ପାଇଁ ମୁଁ ତାଙ୍କ ପାଠ୍ୟ ସ୍ପେନସର୍‌ଙ୍କ ଫେଆରି କ୍ୱିନ କାବ୍ୟର ବିଭିନ୍ନ

ସର୍ଗମାନଙ୍କ ସାରାଂଶ ଇଂରେଜୀରେ ଲେଖି ଦେଇଥିଲେ । ଏମ୍. ଏ. ପାସ୍ କରିବାରେ ଏ ସାରାଂଶରେ ଏକା ତାଙ୍କର ନୁହେଁ, କଲିକତାରେ ଥିବା ତାଙ୍କର ଅନେକ ସହପାଠୀଶିକ୍ଷାର୍ଥୀ ବନ୍ଧୁଙ୍କର ମଧ୍ୟ ବହୁତ ଉପକାର ହୋଇଥିଲା ।

ଜ୍ୟେଷ୍ଠ ଭ୍ରାତାଙ୍କର ପରବର୍ତ୍ତୀ ଜୀବନରେ ଯେପରି ସଂସାର-ବୁଦ୍ଧି ଆସିଲା, ୨୫।୨୬ ବର୍ଷ ବେଳେ ସେପରି ଆସି ନ ଥିଲା । ଖୋର୍ଦ୍ଧା ସ୍କୁଲରେ ସେ ସମୟରେ ଅନେକ ଧନିକ ସନ୍ତାନ ଅଧ୍ୟୟନ କରୁଥିଲେ । ଶୃଙ୍ଖଳା ଓ ନୀତି ମାନିବାକୁ ସେମାନଙ୍କ ମଧ୍ୟରୁ ଅନେକେ ପ୍ରସ୍ତୁତ ନ ଥିଲେ । ଯଥେଚ୍ଛ ବିଳାସ ସେମାନଙ୍କର କାମ୍ୟ ଥିଲା । ପବନ ଯେଉଁ ଆଡ଼କୁ ବୋହୁଛି ସେହି ଆଡ଼କୁ ଛତା ଧରିବା ନୀତିବିଶିଷ୍ଟ ଅନେକଗୁଡ଼ିଏ ଶିକ୍ଷକ ଥିଲେ । ଭଲରେ ମନ୍ଦରେ ଧନିକ ପିଲାମାନଙ୍କୁ କିଛି ନ କହି ବରଂ ସେମାନଙ୍କ ସ୍ୱେଚ୍ଛାଚାରିତାକୁ ପ୍ରଶ୍ରୟ ଦେବାକୁ ସେମାନେ ନିଜ ଶ୍ରେୟ ଦୃଷ୍ଟିରୁ କାମ୍ୟ ମନେ-କରୁଥିଲେ । ସ୍କୁଲ ପରିଚାଳନା କମିଟିର ଧନିକ ସଭ୍ୟମାନଙ୍କ ପ୍ରତି ସେମାନଙ୍କର ପ୍ରାଣର ଭୟ ଥିଲା । କିନ୍ତୁ ଜ୍ୟେଷ୍ଠଭ୍ରାତା ସ୍ରୋତରେ ଉଜାଣି ଉଠିବାକୁ ଇଚ୍ଛା କଲେ । ସ୍ୱେଚ୍ଛାଚାର ସହିତ ଆଦୌ ସନ୍ଧି କରିପାରିଲେ ନାହିଁ । ଉପର୍ଯ୍ୟୁପରି ଘରୋଇ ଭାବରେ ବି. ଏ. ଓ ଏମ୍. ଏ. ପାସ୍ କରିଥିବାରୁ ସେ ଈର୍ଷାକୁଳମନସ୍କ ବ୍ୟକ୍ତି-ମାନଙ୍କର ଚକ୍ଷୁଶୂଳ ହୋଇପଡ଼ିଥିଲେ । ଧନିକ ପିଲା-ମାନଙ୍କର ଅସନ୍ତୋଷ ସେ ଈର୍ଷାର ଇନ୍ଧନ ହେଲା । ନାନା ପ୍ରକାରରେ ମିଥ୍ୟା ଅଭିଯୋଗମାନଙ୍କଦ୍ୱାରା ତାଙ୍କୁ ବିବ୍ରତ କରି ତାଙ୍କ ସମ୍ଭ୍ରମ ଉପରେ ଆଞ୍ଚ ଆଣିବାର ଆୟୋଜନ ହେବାକୁ ଆଉ ବାକି ରହିଲା ନାହିଁ । ବେସରକାରୀ ସ୍କୁଲମାନଙ୍କ ଶିକ୍ଷକ ଯେ କୌଣସି ସମୟରେ ଧନିକମାନଙ୍କ ଚକ୍ରାନ୍ତର ଆବର୍ତ୍ତରେ ବୁଡ଼ିଯାଏ । ଯେଉଁମାନେ ସେ ଶିକ୍ଷକତାଦ୍ୱାରା ଜୀବିକାର୍ଜନ କରନ୍ତି ସେମାନେ ଭଲ ଅଧିକେ ଏହା ଅଙ୍ଗରେ ନିଭାଇ-ଥିବେ । ମୁଁ ଜ୍ୟେଷ୍ଠଭ୍ରାତାଙ୍କ ଉଦାହରଣରୁ ଶିଖିଛି— ମୋ ନିଜ ଜୀବନର ଅନୁଭବରୁ ମଧ୍ୟ ଦେଖିଛି ।

ଏମ୍. ଏ. ପାସ୍ କଲାପରେ ଜ୍ୟେଷ୍ଠ ଭ୍ରାତା ସ୍କୁଲ ବିଭାଗର ସବ୍‌ଇନସ୍‌ପେକ୍ଟର ହୋଇ ସରକାରି ଚାକିରିରେ ନିଯୁକ୍ତ ହୋଇଗଲେ । ହୀନଲୋକଙ୍କ ଚକ୍ରାନ୍ତରେ ବିପନ୍ନ ହେବାର ଦୁର୍ଭାଗ୍ୟରୁ ତାଙ୍କୁ ସଦ୍ୟ-ମୁକ୍ତି ମିଳିଲା । ସେ ଖୋର୍ଦ୍ଧା ସ୍କୁଲ ଶିକ୍ଷକତାକୁ ଇସ୍ତଫା ଦେଇ ପରିତ୍ୟାଗ କଲେ । ମାଟ୍ରିକୁଲେସନ ପରୀକ୍ଷାରେ ମୁଁ ବୃତ୍ତିଲାଭ କରି ସ୍କୁଲର ସୁନାମ କରିବି ବୋଲି ମୋତେ ସେ ସ୍କୁଲରୁ ଛାଡ଼ିଦେବାକୁ ମୋର ଶିକ୍ଷକଗଣ ଓ ସହାଧ୍ୟାୟୀଗଣ ଆଦୌ ସମ୍ମତ ନ ଥିଲେ । ବହୁ ମଧୁରସ୍ମୃତିବିଜଡ଼ିତ ସ୍କୁଲ ଆୟତନକୁ ତ୍ୟାଗ କରି ଯିବାକୁ ମୋର ଅନ୍ତରାତ୍ମା ମଧ୍ୟ ପୂରାପୂରି ରାଜି ନ ଥାଏ । ତଥାପି ମୋ ଶାରୀରିକ ଅସୁବିଧାର ସୁଯୋଗରେ ଈର୍ଷାଳୁ ଧନିକ ଗୁଣ୍ଡାମାନେ କାଳେ ଅନିଷ୍ଟ ଘଟାଇବେ ଏଥିଯୋଗୁଁ ମୋତେ ଖୋର୍ଦ୍ଧା ଉଚ୍ଚ ଇଂରାଜୀ ସ୍କୁଲରୁ ୨ୟ ଶ୍ରେଣୀର ବାର୍ଷିକ ପରୀକ୍ଷା ପୂର୍ବରୁ ବିଦାୟ ନେବାକୁ ହେଲା । ମୋର ଅନେକ ଶିକ୍ଷକ ଓ ସହାଧ୍ୟାୟୀ ଏ ଘଟଣାରେ ଅତ୍ୟନ୍ତ ମର୍ମାହତ ହୋଇଥିଲେ ।

# ପଞ୍ଚମ ଅଧ୍ୟାୟ

ଅର୍ଥରେ ବଳ ନ ଥାଉ ପଛକେ, ପୈତୃକ ସମ୍ପତ୍ତି ବିଶ୍ୱାଏ ନ ଥାଉ ପଛକେ, ଜୀବନରେ ଖୁବ୍ ବଡ଼ ହେବାର ଅଭିଳାଷ ମୋ ମନରେ ମୋ ହେତୁ ହେଲାଦିନଠୁ ଜାଗରୁକ ରହିଅଛି । ହେଲେହେଁ ଅକିଞ୍ଚନ ଅଭି, ମନୋରଥେ ମୁଁ ମହାପଣ୍ଡ । ମୋ ପିଲାଦିନେ ସ୍ୱର୍ଗତ ଉତ୍କଳମଣି ଗୋପବନ୍ଧୁଙ୍କ ନେତୃତ୍ୱ ଓ ପ୍ରେରଣାରେ ଉତ୍କଳର ପଣ୍ଡିତ ନୀଳକଣ୍ଠ ଦାସ, ସ୍ୱର୍ଗତ ଉତ୍କଳର ପଣ୍ଡିତ ଗୋଦାବରୀଶ ମିଶ୍ର, ସ୍ୱର୍ଗତ ପଣ୍ଡିତ କୃପାସିନ୍ଧୁ ମିଶ୍ର ଓ ପୂଜ୍ୟ ଆଚାର୍ଯ୍ୟ ହରିହର ଦାଶ ସତ୍ୟବାଦୀ ସ୍କୁଲ ପ୍ରତିଷ୍ଠା କରି ଇଂରାଜରେ କହିଲେ ଭଲ ଓଡ଼ିଶାରେ ନୂଆ ଇତିହାସ ସୃଷ୍ଟି କରିଥିଲେ । ତେତେବେଳେ ସତ୍ୟବାଦୀ ସ୍କୁଲର ଯଶ ଓଡ଼ିଶାରେ ସବୁଜ ଗଗନ ପବନରେ ଖେଳି ବୁଲୁଥିଲା । ମହାରାଷ୍ଟ୍ରର ଫର୍ଗୁସନ କଲେଜ ଭଳି ଏ ଅନୁଷ୍ଠାନ ତ୍ୟାଗୀ ମନୀଷୀମାନଙ୍କ ତ୍ୟାଗ ଓ ବିଦ୍ୱତ୍ତା ଘେନି ଦେଶବିଦେଶରେ ବିଶ୍ରୁତ ହୋଇ ଓଡ଼ିଶାର ଅଶେଷ ହିତ ସାଧନ କରିବ ଏହାହିଁ ସମସ୍ତଙ୍କର ପ୍ରତୀତି ହୋଇଥିଲା । ଓଡ଼ିଶାରେ ପର୍ଯ୍ୟାପ୍ତସଂଖ୍ୟକ ଯୋଗ୍ୟ ବ୍ୟକ୍ତି ସ୍ୱାଧୀନତା ସଂଗ୍ରାମ ଚଳାଇବାକୁ ଥିଲେ ବୋଧହୁଏ ଉତ୍କଳମଣି ତାଙ୍କ ଅନୁଷ୍ଠାନର କଳ୍ପିତ ସମ୍ଭାବନାକୁ ଅସାର୍ଥକ କରାଇ ବିଦ୍ୱାନ ଶିକ୍ଷକମାନଙ୍କୁ ରାଜନୀତିକୁ ଟାଣି ନେଇ ନ ଥାନ୍ତେ । ସେ ଯାହାହେଉ, ୧୯୧୮ ମସିହାବେଳକୁ ସତ୍ୟବାଦୀ ସ୍କୁଲ ଅଧ୍ୟାପନାର ଶ୍ରେଷ୍ଠ ପୀଠ ଥିଲା ବୋଲି ସେଠାକୁ ଗଲେ ମୁଁ ଜାତୀୟତାର ବାତାବରଣରେ ବଡ଼ ହୋଇପାରିବି ଏହି ଆଶା ମୋତେ ସତ୍ୟବାଦୀ ସ୍କୁଲକୁ ଟାଣିନେଲା । ମୁଁ ମଧ୍ୟ ଜ୍ୟେଷ୍ଠଭ୍ରାତାଙ୍କୁ ଗୋଚର କରାଇ ଦେଇଥିଲି ଯେ ମୁଁ ଏମ୍. ଏ. ପାସ୍ କରିସାରିଲାପରେ ସତ୍ୟବାଦୀ ସ୍କୁଲରେ ଆଜୀବନ ଅଧ୍ୟାପକ ହେବାକୁ ଉତ୍କଳମଣିଙ୍କ ନିକଟରେ ପ୍ରାର୍ଥୀ ହେବି । ୧୯୧୮ ମସିହାର ବାର୍ଷିକ ପରୀକ୍ଷା ଅଳ୍ପଦିନ ବାକି ଥାଏ, ମୁଁ ସତ୍ୟବାଦୀ ସ୍କୁଲରେ ନାମ ଲେଖାଇଲି । ବାର୍ଷିକ ପରୀକ୍ଷାର ଫଳ ପ୍ରକାଶ ପର୍ଯ୍ୟନ୍ତ ମୋତେ ସାକ୍ଷୀଗୋପାଳ ପଞ୍ଚନାୟକ ସାହିସ୍ଥ ଆମ୍ଭ ମାତୁଳାଳୟରେ ରହିବାକୁ ହେଲା । ମୁଁ ଗେଡ଼ିରେ ବସି ସ୍କୁଲକୁ ଯାଏଁ, ପରୀକ୍ଷା ଦେବାକୁ ଯାଏଁ ଓ ପରୀକ୍ଷା ଦେଇସାରି ଗେଡ଼ିରେ ପୁଣି ଫେରିଆସେ । ମୋର ସ୍ନେହୀ ମାମୁଁ ସ୍ୱର୍ଗତ ଗୋପୀନାଥ ଦାସ, ପ୍ରାଣନାଥ ଦାସ ଓ ଶ୍ରୀନାଥ ଦାସ ମୋର ଚଳାଚଳ ପାଇଁ ଉପଯୁକ୍ତ ବ୍ୟବସ୍ଥା କରିଦେଇଥିଲେ । ମୋର ବିଧବା ମାଉସୀ କଣୋଈ ଅପା, ମୋର ଦୁଇ ମାଇଁ ଓ ମାତୁଳଜା ଭଗିନୀ ପ୍ରମଦା ସେ ସମୟରେ ମୋ ଉପରେ ଯେଉଁ ସ୍ନେହାଦର ଢାଳି ଦେଇଥିଲେ ତାହା ଜୀବନର ସ୍ମୃତିକୋଷରେ ଚିରକାଳକୁ ସାଇତା ହୋଇ ରହିଅଛି । ପରୀକ୍ଷାଫଳ ପ୍ରକାଶ ପରେ ମୁଁ ମାଟ୍ରିକୁ୍ୟଲେସନ ପ୍ରଥମ ଶ୍ରେଣୀ (ବର୍ତ୍ତମାନ ୧୧ଶ ଶ୍ରେଣୀ)କୁ ଉନ୍ନୀତ ହୋଇ ସତ୍ୟବାଦୀ ସ୍କୁଲର ହଷ୍ଟେଲରେ ରହିଲି । ମୋ ପାଖକୁ ଜ୍ୟେଷ୍ଠଭ୍ରାତା ମାସିକ ୧୦ ଟଙ୍କା ଖର୍ଚ୍ଚ ପଠାଉଥିବା ମୋର ମନେ ପଡ଼ୁଅଛି । ଅନେକ ଛୁଟିରେ ମୁଁ ମାତୁଳାଳୟରେ ଅବସ୍ଥାନ କରୁଥିଲି । ସେଠାରେ ଉପରୋକ୍ତ ଆତ୍ମୀୟମାନେ ମୋର ଯାବତୀୟ ସୁବିଧା ପ୍ରତି ପୂର୍ଣ୍ଣ ଅବହିତ ଥିଲେ । ସେଠାରେ ରହି ସର୍ବକନିଷ୍ଠ ମାତୁଳ ସୋମନାଥ ଦାସଙ୍କ ବିବାହ ମୁଁ ଦେଖିଥିଲି । ଏବେ ସେ ମାଇଁ ସେତେବେଳେ ସେ କପରି ମୋତେ ଲୁଚୁଥିଲେ ମୋ ଆଗେ କହି ହସନ୍ତି । ମାତୁଳାଳୟ ଭଗିନେୟ ଓ ଭଗିନେୟୀମାନଙ୍କ ଆକର୍ଷଣର ଗୋଟିଏ ପ୍ରଧାନ କେନ୍ଦ୍ର । ତହିଁରେ ସ୍ନେହାଦର ଭରି ରହିଥାଏ । ମୁଁ ଏହା ଅଙ୍ଗରେ ନିଭାଇଅଛି । ଚାଳିଶ ବର୍ଷର ବ୍ୟବଧାନ ପରେ ଆଜି ମାତୁଳାଳୟର ବହୁତ ଦୃଶ୍ୟ ବଦଳିଗଲାଣି—ତହିଁରୁ କେତେକ ଆତ୍ମୀୟ ସ୍ୱର୍ଗଗାମୀ ହୋଇଗଲେଣି—ତଥାପି

ଏ ବୟସରେ ମଧ୍ୟ ସେଠାରେ ପହଞ୍ଚିଲେ ନୂତନ ଅଧିକାଂଶ ଓ ସେଠାର ସଂସାରକୁ ନବାଗନ୍ତୁକମାନଙ୍କ-ଠାରୁ ସେ ସ୍ନେହାଦର କିଞ୍ଚିତ୍ ପରିମାଣରେ ମଧ୍ୟ ମିଳିବ ବୋଲି ଭରସା ରହିଛି । ଚକା ଚକା ଭଉଁରି— ମାମୁଁ ଘର ଚଉଁରି—ଏ ଜାତୀୟ ଗୀତରୁ ମାମୁଁଘର ସମ୍ପର୍କ ଓ ଆନନ୍ଦର ପ୍ରାଚୁର୍ଯ୍ୟହିଁ ବ୍ୟଞ୍ଜିତ ହୁଏ । ମାତୁଳାଳୟସ୍ଥ ଗୁରୁଜନମାନଙ୍କ ପଦଧୂଳି ଚିରଦିନକୁ ମୋ ମୁଣ୍ଡରେ ବିରାଜୁଥାଉ ।

ସତ୍ୟବାଦୀ ସ୍କୁଲର ଶ୍ରେଣୀମାନ ବକୁଳ ଓ ଝୁଣ୍ଟିଅନା କୁଞ୍ଜରେ ବସୁଥିଲା । କେବଳ ବର୍ଷାକାଳରେ ପକ୍କା ଘରେ ଅଧ୍ୟାପନା କରାଯାଉଥିଲା । ପାଠସବୁ ବିଶ୍ୱବିଦ୍ୟାଳୟଦ୍ୱାରା ନିର୍ଦ୍ଧାରିତ ନିର୍ଘଣ୍ଟାନୁଯାୟୀ ଅଧୀତ ହେଉଥିଲେ ହେଁ ବନବିଦ୍ୟାଳୟ ପରିବେଶ ପ୍ରାଚୀନ ଆର୍ଯ୍ୟଗୁରୁକୁଳର ରୀତି ଧାରଣ କରିଥିଲା । ଗୌରବା-ବହ ଆର୍ଯ୍ୟପରମ୍ପରାର ଏହା ଥିଲା ସ୍ମାରକ । ଶିକ୍ଷକ-ମାନେ ଖୁବ୍ ବିଦ୍ୱାନ୍ ହେଲେ ମଧ୍ୟ ସାରଲ୍ୟର ଅବତାର ଥିଲେ । ଅଧ୍ୟାୟୀମାନଙ୍କ ମନରେ 'ସରଳ ପରିବେଶରେ ସମୁଚ୍ଚ ଚିନ୍ତା' ଏହି ଆଦର୍ଶକୁ ସଂସ୍ଥାପିତ କରିବା ପାଇଁ ଶିକ୍ଷକମାନେ ଯତ୍ନଶୀଳ ଥିଲେ । ଉତ୍କଳର ପଣ୍ଡିତ ନୀଳକଣ୍ଠ ଓ ତାଙ୍କ ସହକର୍ମୀମାନେ ସମସ୍ତେ ଦେଶପ୍ରାଣ ବ୍ୟକ୍ତି ଥିଲେ ଏବଂ ଭାରତ ତଥା ଉତ୍କଳକୁ ବିଜାତୀୟ ଶାସନ ଓ ବିଜାତୀୟ ସଂସ୍କୃତିର ଅହିତକର ପ୍ରଭାବରୁ ମୁକ୍ତ କରିବା ସେମାନଙ୍କର ବ୍ରତ ଥିଲା । ଭାରତର ଅନ୍ୟାନ୍ୟ ପ୍ରାନ୍ତର କୌଣସି ପ୍ରଗତିଶୀଳ ଚିନ୍ତାଧାରା ସେମାନଙ୍କ ଚିନ୍ତାଧାରାକୁ ଟପି ନ ଥିଲା । ସେମାନେ ବହୁଦିନଯାଏଁ ବିଦେଶୀ ସରକାରଙ୍କ ସନ୍ଦେହଭାଜନ ଥିଲେ, କିନ୍ତୁ ଉତ୍କଳମଣିଙ୍କର ତତ୍କାଳୀନ ଲାଟ ସାର୍ ଏଡୱାର୍ଡ଼ ଗେଟ୍‌ଙ୍କ ଉପରେ ଯେଉଁ ବ୍ୟକ୍ତିଗତ ପ୍ରଭାବ ଥିଲା ସେଥିଯୋଗୁଁ ସନ୍ତ୍ରାସବାଦର ଆୟୋଜନ କରୁଛନ୍ତି ବୋଲି ସେମାନଙ୍କ ନାମରେ ରଟିଥିବା ଅଖ୍ୟାତିରୁ ସେମାନେ ମୁକ୍ତ ହୋଇଥିଲେ ।

ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଉତ୍କଳର ପଣ୍ଡିତ ନୀଳକଣ୍ଠ ଓ ଉତ୍କଳର ପଣ୍ଡିତ ଗୋଦାବରୀଶ ଉତ୍କଳ-ମଣିଙ୍କ ପନ୍ଥାଶ୍ରୟୀ ଥିଲେ । ରାଧାନାଥଙ୍କ କାବ୍ୟମାନଙ୍କ ବିଜାତୀୟ ବିଷୟବସ୍ତୁ ବିରୁଦ୍ଧରେ ସେମାନେ ଅଭିଯାନ ଘୋଷଣା କରିଥିଲେ । କିନ୍ତୁ ରାଧାନାଥ ଯେ ଓଡ଼ିଆ କାବ୍ୟ ସାହିତ୍ୟରୁ ଛନ୍ଦବୈଚିତ୍ର୍ୟ ବା କାବ୍ୟର ବିଭିନ୍ନ ସର୍ଗକୁ ବିଭିନ୍ନ ଛନ୍ଦରେ ଲେଖିବାର ରୀତିକୁ ନାଶ କରି ଗୋଟାଏ ଗୋଟାଏ କାବ୍ୟକୁ ବଙ୍ଗୀୟ ବା ଇଂଲଣ୍ଡୀୟ ରୀତିରେ ଗୋଟାଏ ଗୋଟାଏ ସାଧାରଣ ଛନ୍ଦରେ ଲେଖି-ଥିଲେ ଏହା ସେମାନେ ଧରିପାରି ନ ଥିଲେ । ସେମାନେ ମଧ୍ୟ ରାଧାନାଥଙ୍କ ପନ୍ଥାନୁସାରୀ ହୋଇ ଗୋଟାଏ ଗୋଟାଏ କାବ୍ୟକୁ ଗୋଟାଏ ଗୋଟାଏ ଛନ୍ଦରେ ଲେଖିଥିଲେ । ଛନ୍ଦ ଓ ଓଡ଼ିଶୀ ରାଗରାଗିଣୀକୁ କଳଙ୍କିଭାରତୀ ରୀତିରେ ପୁନଃ ପ୍ରତିଷ୍ଠିତ କରିବାର ପ୍ରୟୋଜନ ସେମାନେ ବୁଝିପାରି ନ ଥିଲେ । ବିଶ୍ୱନାଥ କର, ଶଶିଭୂଷଣ ରାୟ ଓ ମୃତ୍ୟୁଞ୍ଜୟ ରଥ ପ୍ରଭୃତି ତତ୍କାଳୀନ ସାହିତ୍ୟିକ ରାଧାନାଥ ରାୟଙ୍କୁ ଗୋଟାପଣେ ଆଦର୍ଶ ଜାତୀୟ କବି ବୋଲି ଯେଉଁ ଭ୍ରାନ୍ତ ପ୍ରଚାର କରୁଥିଲେ ସେ ପ୍ରଚାରକୁ ଅତ୍ୟନ୍ତ ପ୍ରବଳ ଧକ୍କା ଦେଇ ଟଳମଳ କରିଦେଇଥିଲେ ଏହି ସତ୍ୟବାଦୀର ସାଧକମାନେ । ଓଡ଼ିଆ ଜାତୀୟତାକୁ ଏହା ସେମାନଙ୍କର ଗୋଟାଏ ବଡ଼ ଦାନ । ସେମାନଙ୍କର ପ୍ରତ୍ୟେକ ଗ୍ରନ୍ଥରେ ଓଡ଼ିଶାର ତଥା ଭାରତର ଜାତୀୟ ଗୌରବ ପରିକୀର୍ତ୍ତିତ ହେଉଥିଲା ।

ସତ୍ୟବାଦୀ ସ୍କୁଲର ହଷ୍ଟେଲରେ ପାଞ୍ଚହେ ଉପରେ ଅନ୍ତେବାସୀ ଥିଲେ । ସେମାନଙ୍କର ଗୋଟିଏ ସାଧାରଣ ମେସ୍ ବା ରୋଷେଇ ଥିଲା । ଘଣ୍ଟା ବାଜିଲା ମାତ୍ରେ ଏକ ସମୟରେ ସମସ୍ତେ ପଂକ୍ତି ଭୋଜନରେ ବସୁଥିଲେ । ନିଜ ନିଜ ମଧ୍ୟରୁ ପାଳିକରି ଛାତ୍ର ଖାଦ୍ୟ ପରିଷୁଥିଲେ । ସେ ଦୃଶ୍ୟ ଅତ୍ୟନ୍ତ ମନୋରମ ଥିଲା ।

ଛାତ୍ରମାନେ ଘଣ୍ଟା ବାଜିଲାରୁ ପ୍ରାତଃସ୍ନାନ କରୁଥିଲେ ଏବଂ ଘଣ୍ଟା ବାଜିବାମାତ୍ରେ ବୈଦିକ ସ୍ତୋତ୍ର ଗାଇ ପ୍ରାର୍ଥନା କରୁଥିଲେ । ସାୟଂକାଳରେ ମଧ୍ୟ ପ୍ରାର୍ଥନା ପାଇଁ ଘଣ୍ଟା ବାଜୁଥିଲା । ଛାତ୍ରମାନେ ବିଧିମତେ ପ୍ରାର୍ଥନା କରୁଛନ୍ତି କି ନାହିଁ ଏଥିପାଇଁ ମନିଟର (ବଡ଼ଗୃହ) ଓ ଶିକ୍ଷକମାନେ ପରିଦର୍ଶନରେ ବାହାରୁଥିଲେ ।

ଯାବତୀୟ ପ୍ରକାର ବିଳାସ ଉପରେ ବଡ଼ଗୃହ ଓ ଶିକ୍ଷକମାନେ କଡ଼ା ନଜର ରଖିଥିଲେ ।

ଘଣ୍ଟା ବାଜିଲାମାତ୍ରେ ସମସ୍ତେ ଆଲୁଅ ଲିଭାଇ ଶୋଇବାକୁ ବାଧ୍ୟ ଥିଲେ ।

ବ୍ୟାୟାମ ନିମନ୍ତେ ସମସ୍ତଙ୍କ ପାଇଁ ବାଧ୍ୟବାଧ୍ୟ ବ୍ୟବସ୍ଥା ଥିଲା ।

ସାପ୍ତାହିକ ନୈଶ ସଭାରେ ନିଜେ ଉତ୍କଳମଣି, ଶିକ୍ଷକମାନେ ଓ ନିମନ୍ତ୍ରିତ ବିଦ୍ୱାନମାନେ ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେଉଥିଲେ ।

ଗୋଟିଏ ଗୋଟିଏ କୋଠରୀର ଛାତ୍ରମାନେ ଦିନେ ଦିନେ କରି ସମଗ୍ର ହଷ୍ଟେଲର ରୋଗୀ ଛାତ୍ରମାନଙ୍କର ଯାବତପ୍ରକାର ସେବା କରୁଥିଲେ । ଅଧ୍ୟକ୍ଷ ଆଚାର୍ଯ୍ୟ ହରିହରଙ୍କ ସହିତ ପରାମର୍ଶ କରି ତାଙ୍କ ନିର୍ଦ୍ଦେଶରେ ଔଷଧ ଓ ପଥ୍ୟ ନିର୍ଦ୍ଦିଷ୍ଟ ହେଉଥିଲା । ରୋଗୀପାଳିରେ ଥିବା ଛାତ୍ରମାନେ ପାଳିଦିନ ଅଧ୍ୟୟନରୁ ଅବ୍ୟାହତି ପାଉଥିଲେ ।

ଆଚାର୍ଯ୍ୟ ହରିହର ଦାଶ ଛାତ୍ରମାନଙ୍କ ଉପରେ ପିତୃମାତୃସୁଲଭ ସ୍ନେହ ଢାଳି ଦେଇ ସେମାନଙ୍କର ସର୍ବାଙ୍ଗୀନ ତତ୍ତ୍ୱାବଧାନ କରୁଥିଲେ । ଛାତ୍ରମାନେ ତାଙ୍କୁ ଯେ କେତେ ବିଶ୍ୱାସ ଓ ସ୍ନେହ କରୁଥିଲେ କଥାରେ କହିହେବ ନାହିଁ ।

ଆଚାର୍ଯ୍ୟ ହରିହରଙ୍କର ବିଶାଳ ହୃଦୟ ଓ ଅଗାଧ ସ୍ନେହରେ ମୁଁ ଚିରଜୀବନକୁ ତାଙ୍କଠାରେ ବିକି ହୋଇ ଯାଇଅଛି । ମୁଁ ତାଙ୍କୁ ନରଦେହଧାରୀ ଦେବତା ବୋଲି ଜ୍ଞାନ କରିଆସିଅଛି ।

ଆମ୍ଭେମାନେ ଉତ୍କଳମଣିଙ୍କୁ ପ୍ରତ୍ୟକ୍ଷ ଦେଖିବାକୁ ପାଉଥିଲୁଁ, ତାଙ୍କ ମୁଖନିଃସୃତ ଉଦ୍‌ବୋଧନ ବାଣୀ ଶୁଣୁଥିଲୁଁ ଓ ଅହୋରାତ୍ର ତାଙ୍କ କର୍ମଠତା ଦେଖି ଅନୁପ୍ରାଣିତ ହେଉଥିଲୁଁ ।

ସାହିତ୍ୟରେ ଆମ୍ଭମାନଙ୍କୁ ପ୍ରେରଣା ମିଳୁଥିଲା ଡକ୍ଟର ପଣ୍ଡିତ ନୀଳକଣ୍ଠ ଦାସ ଓ ଡକ୍ଟର ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କଠାରୁ ।

ଇତିହାସରେ ଆମ୍ଭର ଗୁରୁ ଥିଲେ ସ୍ୱର୍ଗତ ପଣ୍ଡିତ କୃପାସିନ୍ଧୁ ମିଶ୍ର ।

ପଣ୍ଡିତ ଲିଙ୍ଗରାଜ ମିଶ୍ର ତାଙ୍କ ବିଦ୍‌ବତ୍ତା ଯୋଗୁ ଆମ୍ଭ ହୃଦୟରେ ଉଚ୍ଚ ଆସନ ଲାଭ କରିଥିଲେ ।

ସତ୍ୟବାଦୀ ସ୍କୁଲର ଆବହାଉଆରେ ଦେଶପ୍ରାଣତା ପୂରିଥିଲା । ସମୁଚ୍ଚଚିନ୍ତା ଧୀରେ ଧୀରେ ଛାତ୍ରମାନଙ୍କ ମନରେ ସଂଚରିତ ହୋଇଯାଉଥିଲା ।

ଏଠାରେ ମଧ୍ୟ ମୋ କବିତାଶକ୍ତି ସ୍ୱୀକୃତ ହୋଇଥିଲା । ମୋର ଗୋଟିଏ ଅନୁବାଦ କବିତା (ସେକ୍‌ସପିୟରଙ୍କ ପ୍ରତି ମିଲ୍‌ଟନ) ସତ୍ୟବାଦୀ ସ୍କୁଲର ଛାତ୍ର ପତ୍ରିକାରେ ପ୍ରକାଶିତ ହୋଇଥିଲା ।

ମୁଁ ମାଟ୍ରିକ୍ୟୁଲେସନ ପ୍ରଥମ ଶ୍ରେଣୀ (ବର୍ତ୍ତମାନର ୧୧ଶ ଶ୍ରେଣୀ) ରେ ୧୯୧୯ ମସିହାଟିଯାକ ଅଧ୍ୟୟନ କରି ୧୯୨୦ରେ ମାଟ୍ରିକ୍ୟୁଲେସନ ପରୀକ୍ଷା ଦେଇଥିଲି । ଶିକ୍ଷକମାନଙ୍କ ଦୟା, ସ୍ନେହାଦର ଓ ସହାଧ୍ୟାୟୀମାନଙ୍କ ସହୃଦୟ ବନ୍ଧୁତା ଓ ସମ୍ମାନ ଏ ବର୍ଷଟିକୁ ମୋ ପକ୍ଷରେ ମଧୁମୟ କରିଥିଲା । ମୁଁ ମୂଳରୁ ଏହି ସ୍କୁଲରେ କାହିଁକି ପଢ଼ି ନ ପାରିଲି ଭାବି ମୋ ମନରେ ଶୋଚନା ହେଲା । ନିଜର ଅନ୍ତର୍ନିହିତ ଆଦର୍ଶବାଦର ପରିପୋଷଣ ନିମନ୍ତେ ଏହାହିଁ ଥିଲା ସର୍ବୋତ୍କୃଷ୍ଟ ପୀଠ । ସତ୍ୟବାଦୀର ବନବିଦ୍ୟାଳୟର କମନୀୟ ମାଧୁରୀ ସ୍ମୃତିକୋଷରେ ଚିରକାଳ ସାଇତା ହେବାର ସାମଗ୍ରୀ ।

ଦୈବର ବିଧାନ ଅନୁଯାୟୀ ଟେଷ୍ଟ ବା ବଛିବଛି ପରୀକ୍ଷାର ଫଳ ବାହାରିବା ପରେ ମୁଁ ଟାଇଫଏଡ଼ ଜ୍ୱରରେ ସାଂଘାତିକ ଭାବରେ ପୀଡ଼ିତ ହୋଇ ପଡ଼ିଥିଲି । ଆଚାର୍ଯ୍ୟ ହରିହରଙ୍କ ନିଜ କୋଠରୀର ସନ୍ନିକଟବର୍ତ୍ତୀ କୋଠରୀକୁ ମୋତେ ନିଆଯାଇଥିଲା ଓ ସେହିଠାରେ ମୋତେ ତାଙ୍କର ତତ୍ତ୍ୱାବଧାନରେ ଚିକିତ୍ସା କରାଯାଇ-ଥିଲା । ମୋ ଅବସ୍ଥା ଉଦ୍‌ବେଗଜନକ ବୋଲି ଗ୍ରାମକୁ ସମ୍ବାଦ ପ୍ରେରିତ ହେବାରେ ଜନକ ଆସି ଉପସ୍ଥିତ ହେଲେ । କିୟଦ୍ଦିବସର ଅବିହତ ଚିକିତ୍ସା ପରେ ମୋ ଦେହରୁ ଜ୍ୱର ଛାଡ଼ିଗଲା, କିନ୍ତୁ ତା ସଙ୍ଗକୁ ମୋ ଦେହରେ ଅସଂଖ୍ୟ କାଛୁ ବାହାରି ମୋତେ ବ୍ୟଥିତ କଲା । ଜ୍ୟେଷ୍ଠଭ୍ରାତା ସେତେବେଳେ ସ୍କୁଲ ସବ୍‌ଇନ୍‌ସପେକ୍ଟର ହୋଇ କଟକ ଜିଲ୍ଲା ବଡ଼ଚଣା-ଠାରେ ଅବସ୍ଥାପିତ ଥିଲେ । ସେତେବେଳକୁ ତାଙ୍କର ପୁନର୍ବିବାହ ହୋଇ ଗୋଟିଏ କନ୍ୟା ଜାତ ହୋଇଥିଲା ଏବଂ ସେ ବଡ଼ଚଣାଠାରେ ସସ୍ତ୍ରୀକ ଅବସ୍ଥାନ କରୁଥିଲେ । ମୁଁ ସେହିଠାକୁ ନୀତ ହେଲି । ସେଠାରେ ସୁଚିକିତ୍ସା ଫଳରେ ମୋର ଅଳ୍ପଦିନରେ ଆରୋଗ୍ୟଲାଭ ହେଲା ଏବଂ ଆସ୍ତେ ଆସ୍ତେ ବଳାଧାନ ପରେ ମୁଁ ବିଶ୍ୱ-ବିଦ୍ୟାଳୟ ପରୀକ୍ଷା ନିମନ୍ତେ ନିଜକୁ ପ୍ରସ୍ତୁତ କରିବାରେ ଲାଗିଲି ।

କିଛୁଦିନ ପରେ ଜ୍ୟେଷ୍ଠଭ୍ରାତାଙ୍କର ପୁରୀ ଜିଲ୍ଲା ସ୍କୁଲକୁ ସହକାରୀ ଶିକ୍ଷକରୂପେ ବଦଳି ହେବାରୁ ତାଙ୍କ ସହିତ ମୋତେ ପୁରୀରେ ଅବସ୍ଥାନ କରିବାକୁ ହୋଇଥିଲା । ଆମ୍ଭ ବସା ଥିଲା ଦୋଳମଣ୍ଡପ ସାହିରେ । ଗ୍ରାମରୁ ଜନନୀ ଆସି ଉକ୍ତ ବସାରେ ଅବସ୍ଥାନ କଲେ । ପୁରୀ କେନ୍ଦ୍ରରେ ମୁଁ ମାଟ୍ରିକ୍ୟୁଲେସନ ପରୀକ୍ଷା ଦେଇଥିଲି । ପରୀକ୍ଷାର ପ୍ରାକ୍‌କାଳରେ ମୋତେ ସାଙ୍ଘାତିକ ଭାବରେ ଟାଇଫଏଡ଼ ଜ୍ୱର ଆକ୍ରମଣ କରିବାରୁ ମୋର ଅଧ୍ୟୟନ ବହୁତ ବ୍ୟାହତ ହୋଇଥିଲା । ଆଗରୁ କ୍ରମାଗତ ପୀଡ଼ା ଫଳରେ ମୋର ଅଧୀତବ୍ୟ ଅଙ୍କ ବିଦ୍ୟାକୁ ଯଥାଯଥ ଆୟତ୍ତ କରିବାରେ ଖଇରୁ ରହି ଯାଇଥିଲି । ତେଣୁ ମାଟ୍ରିକ୍ୟୁଲେସନ ପରୀକ୍ଷାରେ ବୃତ୍ତି ମିଳିବା ଆଶା ମୋତେ ତ୍ୟାଗ କରିଦେବାକୁ ପଡ଼ିଥିଲା । ଶେଷକୁ ତାହାହିଁ ହେଲା । ମୁଁ କେବଳ ପ୍ରଥମ ଶ୍ରେଣୀରେ ମାଟ୍ରିକ୍ୟୁଲେସନ ପରୀକ୍ଷାରେ ପାସ୍ କଲି—ବୃତ୍ତି ପାଇଲି ନାହିଁ । ମାଟ୍ରିକ୍ୟୁଲେସନ ପରେ କଲେଜରେ ଆଇ.ଏ. ପଢ଼ିବାର ସମ୍ଭାବନା ଉପରକୁ ଆଞ୍ଚ ଆସିଲା । ଜ୍ୟେଷ୍ଠଭ୍ରାତା ଭବିଷ୍ୟତର ଏକାନ୍ନବର୍ତ୍ତୀ ପରିବାର ସଂସ୍ଥାର ଉପଯୋଗିତା ଉପରେ ଆଉ ଆସ୍ଥା ପୋଷୁଥିବାର ଦେଖାଗଲା ନାହିଁ । ପୂର୍ବେ ସେ ମୋ ଭବିଷ୍ୟତ ଜୀବନର ଯେଉଁ ଚିତ୍ର ଅଙ୍କନ କରି ମୋତେ ଦେଖାଉଥିଲେ ସେ ଚିତ୍ରକୁ ରୂପ ଦେବାକୁ ତାଙ୍କୁ ଯେ ଅର୍ଥ ବ୍ୟୟ କରିବାକୁ ହେବ ଏ ସମ୍ଭାବନା ତାଙ୍କର ଆଉ ସହ୍ୟ ହେଲାନାହିଁ । ସେ ପ୍ରକାଶ୍ୟରେ ମୋତେ ବୁଝାଇବାକୁ ଲାଗିଲେ ଯେ ଉଚ୍ଚଶିକ୍ଷାର ମୃଗତୃଷ୍ଣା ପଛରେ ନ ଗୋଡ଼ାଇ ଯାଁଲାରେ ଖଣ୍ଡିଏ ଚାଉଳ ଡାଲି ଦୋକାନ କରି ବସିବା ମୋ ପକ୍ଷରେ ଶ୍ରେୟସ୍କର । ମୁଁ ତାଙ୍କ ସବଳ ପ୍ରତି-ଦ୍ୱନ୍ଦ୍ୱିର ଏ ବିଳୟ ଦେଖି ମହାକ୍ରୁଦ୍ଧ ହୋଇପଡ଼ିଲି ଓ ମୋ ଜନନୀ ଉତ୍‌ଫଣା ନାଗିନୀ ତୁଲ୍ୟ ଗର୍ଜନ କରିବାକୁ ଲାଗିଲେ । ଚିର ପ୍ରଶାନ୍ତ ଜନକ ଏ ସଂକଟରୁ ରକ୍ଷା କରିବା ନିମନ୍ତେ ମା ଦାରୁଣୀଙ୍କର ମନେ ମନେ ଶରଣା-ପନ୍ନ ହେଲେ । ସେ ପାଟି ଖୋଲି ଜ୍ୟେଷ୍ଠପୁତ୍ରଙ୍କୁ କିଛି କହିପାରିଲେ ନାହିଁ । ଜନକଙ୍କର ସମସ୍ତ ପୋଷ୍ୟ ଯେ ତାଙ୍କ ଅସାମର୍ଥ୍ୟରେ ଜ୍ୟେଷ୍ଠଭ୍ରାତାଙ୍କର ପୋଷ୍ୟ ଏ ଧାରଣା ପ୍ରତି ଜ୍ୟେଷ୍ଠଭ୍ରାତାଙ୍କର ବିମୁଖତା ଓ ଅସହିଷ୍ଣୁତା ଧୀରେ ଧୀରେ ପ୍ରକଟ ହେବାକୁ ଲାଗିଲା । ତାଙ୍କ ଅଙ୍ଗଜମାନେ ତାଙ୍କ ପୋଷ୍ୟ, ଜନକଙ୍କ ଅଙ୍ଗଜ-ମାନେ ନୁହନ୍ତି—ପ୍ରକାରାନ୍ତରେ ତାଙ୍କର ରୁକ୍ଷ କଥୋପକଥନରୁ ଏହା ଏଣିକି ସୁସ୍ପଷ୍ଟ ପ୍ରକାଶିତ ହୋଇ ପଡ଼ିଲା । ଜନକ ଜନନୀଙ୍କ ହୃଦୟରେ ଏହା ଶେଲ-ଭେଦସଦୃଶ ପ୍ରତୀୟମାନ ହେଲା । ବିଶେଷ କରି ମୋ

ଉଚ୍ଚଶିକ୍ଷା ଯେନ ଏ ପ୍ରସଙ୍ଗର ଉଦ୍‌ଭବ ହେଉଥିବାରୁ ମୁଁ ଅତ୍ୟନ୍ତ ମର୍ମାହତ ହେଲି—ମୋତେ ସବୁଆଡ଼େ ଅନ୍ଧକାର ଦିଶିଲା । ସ୍ୱର୍ଗତା ଭ୍ରାତୃଜାୟା ଲାବଣ୍ୟବତୀ ଦେବୀଙ୍କ ଅକାଳମରଣରେ ପରିବାର ଉପରକୁ କି ସଙ୍କଟ ମାଡ଼ିଆସିଲା ତାହା ଜନକଜନନୀଙ୍କର ବାକ୍‌ସ୍ଫୂର୍ତ୍ତି ହୋଇପାରିଲା ନାହିଁ । ଶେଷରେ ଜନନୀଙ୍କୁ ଓ ମୋତେ ବାକ୍ୟ-ଅସି ଉତ୍ତୋଳନ କରି ତିକ୍ତ କଳହରେ ପ୍ରବୃତ୍ତ ହେବାକୁ ପଡ଼ିଲା । ୧୯୨୦ ମସିହା ଜୁଲାଇରେ ଜ୍ୟେଷ୍ଠଭ୍ରାତା ପାଟଣାକୁ କଅଣ ଟ୍ରେନିଙ୍ଗ ପାଇବାକୁ ପ୍ରେରିତ ହୋଇଥିଲେ ଏବଂ ପାଟଣା ପ୍ରୟାଣ ପୂର୍ବରୁ ବହୁ କଷ୍ଟରେ ପ୍ରଥମ ବାର୍ଷିକ ଶ୍ରେଣୀର ଖର୍ଚ୍ଚ ବହନ କରିବାକୁ ସମ୍ମତି ପ୍ରଦାନ କରିଥିଲେ । ଖଞ୍ଜିତ୍ୱଜନିତ କାୟିକ କ୍ଳେଶର ଅତିରିକ୍ତ ଅନ୍ୟ ପ୍ରକାର କ୍ଳେଶରେ ସମ୍ମୁଖୀନ ହୋଇ ଖଞ୍ଜିତ୍ୱ ଲାଭ କରିଥିବାରୁ ପୂର୍ବଜନ୍ମକୃତ ଦୁଷ୍କୃତମାନଙ୍କୁ ମୁଁ ଶତଧିକ୍‌କାର ଦେଲି । ମୁଁ ଯେ ପର୍ଯ୍ୟାପ୍ତ ଉଚ୍ଚଶିକ୍ଷା ପାଇ ପାଞ୍ଚଜଣଙ୍କ ଭିତରେ ଜଣେ ହୋଇପାରିବି ଜନନୀ ଏ ବିଷୟରେ ସନ୍ଦିହାନ ହୋଇପଡ଼ିଲେ । ମୁଁ ଜୀବନରେ ନିଶ୍ଚୟ ଯେ ମହତ୍ ହୋଇପାରିବି ଏ ଦୁର୍ଦ୍ଦମ ଆଶାବାଦିତା ମୋତେ ସବୁ ବାଧାବିଘ୍ନକୁ ପାଦରେ ଦଳିଦେବାକୁ ନିରବଚ୍ଛିନ୍ନ ଭାବରେ ପ୍ରେରଣା ଦେଉଥାଏ । ସେହି ଆଶାବାଦିତାହିଁ ଏ ପର୍ଯ୍ୟନ୍ତ ମୋ ଜୀବନର କବଚ ହୋଇଅଛି । ଘନଘଟା ପରେ ଘନଘଟା ଆସି ଜୀବନପଥକୁ ତମସାଚ୍ଛନ୍ନ କରି ଦେଇଅଛି—କେଉଁଆଡ଼େ ହେଲେ ପଥ ଦୃଷ୍ଟିଗୋଚର ହୋଇନାହିଁ । ସଂସାର ନିର୍ମମ ହୋଇ ତାର ଗନ୍ତିପଥରେ ଧାଇଁଅଛି । ତା ଦେଖି ଅତି ବଳିଷ୍ଠ ହୃଦୟ ମଧ୍ୟ ଲସିଯିବାକୁ କ୍ଷଣେ ମାତ୍ର ଲାଗିବ ନାହିଁ । ତଥାପି ଦୈବପ୍ରେରିତ ଭଳି ପ୍ରତିବନ୍ଧକ ପିଠିରେ ଧକ୍‌କା ମାରି ତାକୁ ମୁଁ ମୋ ପଥରୁ ଅପସାରିତ କରିଛି ଓ ଲକ୍ଷ୍ୟପଥରେ ଧାଇଁଅଛି । ବାରମ୍ବାର କରାୟତ୍ତ ହୋଇଥିବା ସଫଳତା ପ୍ରଦୀପ୍ତ ବର୍ତ୍ତିକା ହୋଇ ଅନ୍ଧକାର ମଧ୍ୟରେ ମୋତେ ପଥପ୍ରଦର୍ଶନ କରିଅଛି । କଲେଜ ଯିବାର ପ୍ରାକ୍‌କାଳରେ ପୂର୍ବରୁ ସଂଶିତ ଜ୍ୟେଷ୍ଠ-ଭ୍ରାତାଙ୍କ ସୃଷ୍ଟ ଏ ଅଶୁଭ ଶକୁନ ମୋର ଉଦ୍ୟୋତ୍ସାହକୁ ନିର୍ମୂଳ କରି ନ ଥିଲା, ବରଂ କରିଥିଲା ପଲ୍ଲବିତ ଓ ପୁଷ୍ପିତ ।

## ଷଷ୍ଠ ଅଧ୍ୟାୟ

ଶରୀର ଦିଗରୁ ଦେଖିଲେ ଏକ ପ୍ରକାର ସ୍ଥାଣୁ, ଜନକଙ୍କ ସମ୍ବଳହୀନତା ଦିଗରୁ ଦେଖିଲେ ବ୍ୟୟବହୁଳ ଉଚ୍ଚଶିକ୍ଷା ଲାଭ ପାଇଁ ପୂର୍ଣ୍ଣ ଅସମର୍ଥ ଅଥଚ ଉଚ୍ଚାଭିଳାଷର ଉଦ୍ଦାମତାରେ ସମ୍ପୂର୍ଣ୍ଣ ଅଥୟ ମୋ ଭଳି ଜଣେ ଯୁବକ ବିଧାତାଙ୍କର ଏକାନ୍ତ ଦୟାମୟ ସୃଷ୍ଟି । ବିଧାତାଙ୍କ ଦୃଷ୍ଟିରୁ ମୋର ଏତାଦୃଶ ଜୀବନ ସାର୍ଥକ, କାରଣ ଏହାକୁ ଉପାୟ କରି ସେ ତାଙ୍କ ଅଘଟଘଟନପଟୀୟସୀ ମହିମାକୁ ପ୍ରକଟିତ କରୁଅଛନ୍ତି; କିନ୍ତୁ ଜୀବନର ପୁଷ୍ପାସ୍ତୃତ ପଥରେ ଯେଉଁମାନେ ସ୍ୱଚ୍ଛନ୍ଦଗାମୀ ସେମାନଙ୍କ ନିକଟରେ ମୋ କ୍ଳେଶସଂକୁଳ ଜୀବନ ନିଶ୍ଚୟ ଅଭିଶପ୍ତ ତୁଚ୍ଛ । ସେଥିଯୋଗୁଁ ନିଜ ଅର୍ଜ୍ଜନ ବଳରେ ଭବିଷ୍ୟତରେ ସୁଖସୌଧ ଉତ୍ତୋଳନ କରିବାର ବର୍ଣ୍ଣଭାସ୍ୱର ସ୍ୱପ୍ନ ଦେଖୁଥିବା ମୋ ଜ୍ୟେଷ୍ଠ-ଭ୍ରାତା ମୋ ଉଚ୍ଚଶିକ୍ଷାରେ ତାଙ୍କ ଅର୍ଜନକୁ ବ୍ୟୟ

କରିବାକୁ ପରାଙ୍ମୁଖତା ଦେଖାଇଲେ । ପାଟଣାକୁ ଟ୍ରେନିଂ ପାଇଁ ଯିବା ପ୍ରାକ୍‌କାଳରେ କଲେଜରେ ନାମ ଲେଖାଇବାକୁ ଅତି ଅନିଚ୍ଛାରେ ଫିଙ୍ଗାଫୋପଡ଼ା ଭଳି କେତେଟା ଟଙ୍କା ଦେଇଗଲେ । କଲେଜ ହଷ୍ଟେଲରେ ପହଞ୍ଚିଲାବେଳକୁ ମୋର ନ ଥିଲା ସାଧାରଣ ଦ୍ରବ୍ୟ ବିଛଣା ଆଚ୍ଛାଦନ ବା ପୁସ୍ତକ । ଜନକ ବ୍ୟଥାକୁଳ ହୃଦୟରେ ମୋତେ ହଷ୍ଟେଲରେ ଛାଡ଼ି ଦେଇ ଆସିଲେ । ଏବର କଲେଜିଏଟ୍ ସ୍କୁଲ ହତାରେ ଯେଉଁ ଏକ-ମହଲା ପକ୍‌କାରେ ସ୍କୁଲ ଛାତ୍ରାବାସ ରହିଅଛି ତାହାହିଁ ସେତେବେଳେ ଥିଲା କଲେଜ ଛାତ୍ରାବାସ । ତହିଁରେ ଗୋଟିଏ କୋଠରୀରେ ମୋତେ ସ୍ଥାନ ମିଳିଥିଲା । ସେ କୋଠରୀରେ ଜଣେ ମେଦିନୀପୁରୀ ଓ ଜଣେ ବାଲେଶ୍ୱରୀ ଛାତ୍ର ଥିଲେ । ସେ ଦୁହେଁ ସ୍ୱଚ୍ଛଳ ଅବସ୍ଥାପନ୍ନ ଘରର ପିଲା ଥିଲେ । ଶାରୀରିକ ଅବସ୍ଥା ପାଇଁ ନୁହେଁ, କେବଳ ସ୍ପଷ୍ଟ ପ୍ରକୃତି ଓ ମୋ ନିର୍ଦ୍ଧନତା ପାଇଁ ମୁଁ ସେ ଦୁହିଁଙ୍କ ନିକଟରେ ସଙ୍କୁଚିତ ଯାଉଥିଲି । ମୁଁ ହଷ୍ଟେଲରୁ ଯାଇ କଲେଜର ତଳମହଲା ଘର ଓ ଉପରମହଲା ଘର ଶ୍ରେଣୀମାନଙ୍କରେ ଉପସ୍ଥିତ ହେଉଥିଲି । ଉପର ମହଲାକୁ ଉଠିବାରେ ଓ ତହିଁରୁ ଓହ୍ଲାଇ ତଳକୁ ଆସିବାରେ ମୋତେ ଦୁରନ୍ତିକମ୍ୟ କଷ୍ଟ ହେଉ ନ ଥିଲା । ସତ୍ୟବାଦୀ ସ୍କୁଲର ମାଟ୍ରିକ୍ୟୁଲେସନ ଶ୍ରେଣୀରେ ପଢ଼ିଲାବେଳେ ମୋତେ ବ୍ୟସ୍ତ କରାଇବା ପାଇଁ ଜଣେ ସହାଧ୍ୟାୟୀ ଅଧା ଥଟ୍ଟା ଓ ଅଧା ନିରନ୍ତରରେ କହି-ଥିଲେ ଯେ କଲେଜ ଉପର ମହଲାରୁ ଓହ୍ଲାଉ ଓହ୍ଲାଉ ପଡ଼ି କରି ମୋର ପ୍ରାଣ ଯିବ । ପେଲି ଦେବାକୁ ଦୁର୍ବୃତ୍ତ ପିଲାଙ୍କର ଅଭାବ ହେବନାହିଁ । କିନ୍ତୁ ଏପରି କିଛି ତ ଘଟିଲା ନାହିଁ । ମୁଁ ଉପର ମହଲାକୁ ଉଠିବାବେଳେ ବା ତହିଁରୁ ଓହ୍ଲାଇବାବେଳେ ସମସ୍ତେ ଦୟା ଓ ସୌଜନ୍ୟରେ ମୋତେ ବାଟ ଛାଡ଼ି ଦେଉଥିଲେ । କଲେଜରେ ବହୁ ଅବସ୍ଥାର ଛାତ୍ର ପାଠ ପଢ଼ନ୍ତି । ଧନିକ ଛାତ୍ରମାନଙ୍କ ବେଶଭୂଷା, ଖାଦ୍ୟପେୟ ଓ ବେପରବାଏ ଭାବ ଦେଖିଲେ ସଂସାରରେ ଏମାନଙ୍କର କି ସ୍ୱଚ୍ଛନ୍ଦ ଗତି ତହିଁର ସମ୍ୟକ ଧାରଣା କରିହୁଏ । ସମସ୍ତେ ଷୋଡ଼ଶୋତ୍ତର ବୟସରେ ଉପନୀତ ହୋଇଥିବାରୁ କଲେଜ ଅଧ୍ୟାୟୀଙ୍କ ମଧ୍ୟରେ ବିରହୀ ସ୍ୱାମୀ ଓ ବିଚ୍ଛେଦୀ ପ୍ରେମିକ ବହୁ ସଂଖ୍ୟାରେ ଥାଆନ୍ତି । ସହୃଦୟ କେତେକ ବନ୍ଧୁଙ୍କର ମୁଁ ବିଶ୍ୱାସୀ ହୋଇ ପଡ଼ିଥିବାରୁ ସେମାନଙ୍କ ହୃଦୟର କାହାଣୀ ସେମାନଙ୍କ ମୁଖରୁ ଶୁଣିଥିଲି । କଲେଜ ଗୋଟିଏ ଶ୍ରେଷ୍ଠ ସଂସାର, ଅଥଚ ଗୋଟିଏ ବଡ଼ ରଙ୍ଗପଦ୍ମ । ଆମ୍ଭ ସମୟରେ କଲେଜରେ ସହଶିକ୍ଷା ନ ଥିଲା । ଏବେ କିନ୍ତୁ କଲେଜ ଶିକ୍ଷା-କ୍ଷେତ୍ରରେ ଯୁବତୀମାନେ ଉପନୀତ ହେବାରୁ ଅଧ୍ୟାୟି-ଜୀବନରେ ପାଶ୍ଚାତ୍ୟଦେଶସୁଲଭ ସମସ୍ୟାମାନଙ୍କର ଉଦ୍‌ଭବ ହେଉଅଛି । ଆମ୍ଭେମାନେ ଆଯେଁଷତର ପନ୍ଥାର ପଥିକ ହୋଇ ପଡ଼ୁଥାଇଁ । ଅନ୍ତତଃ ଚାଳିଶି ବର୍ଷ ତଳେ ଓଡ଼ିଶାରେ ଏ ସ୍ଥିତି ନ ଥିଲା ।

୧୯୨୦ ମସିହାର ପ୍ରଥମ ବାର୍ଷିକ ଶ୍ରେଣୀର ମୁଁ ଛାତ୍ର ହେଲି । ସେ ବର୍ଷ ଦଶହରା ଛୁଟିରେ ମୁଁ ଗ୍ରାମକୁ ଯାଇ ଗ୍ରାମରୁ ଫେରିଲାବେଳକୁ ମୁଁ ଆଉ ସାଧାରଣ ବ୍ୟକ୍ତି ହୋଇ ନ ଥିଲି । ହଷ୍ଟେଲରେ ପାଦ ଦେଉ ଦେଉ ପରିଚିତ ଅପରିଚିତ ବହୁ ଛାତ୍ର ଆସି ମୋତେ ଉଚ୍ଛ୍ୱସିତ ଅଭିନନ୍ଦନ କରିଥିଲେ ଏବଂ ମୋତେ କହି-ଥିଲେ ଯେ ମୁଁ ସମଗ୍ର କଲେଜରେ ଅଧ୍ୟାପକ-ମହଲରେ ତଥା ଛାତ୍ରମହଲରେ ଗୋଟାଏ ବିରାଟ ଚହଳ ପକାଇ ଦେଇଅଛି । ଯେଉଁମାନେ ମୋତେ ଦେଖିନାହାନ୍ତି ଓ ଚିହ୍ନିନାହାନ୍ତି ସେମାନେ ମୋତେ ଦେଖିବାକୁ ଓ ମୋ ସହିତ ଚିହ୍ନା ପରିଚୟ ହେବାକୁ ଉଦ୍‌ଗ୍ରୀବ ହୋଇ ବସିଅଛନ୍ତି । ଦଶହରା ଛୁଟିପରେ ମୋର କଲେଜକୁ ଫେରିବାରେ ଆଠ ଦିନ ଉଚ୍ଛୁର ହୋଇଥିବାରୁ ସମସ୍ତଙ୍କର ଉଦ୍‌ବେଗ ବଢ଼ିଯାଇଅଛି ।

କଥାଟା ହେଉଛି ଦଶହରା ଛୁଟି ପୂର୍ବରୁ ହୋଇ-ଥିବା ପ୍ରଥମ ତୈମାସିକ ପରୀକ୍ଷାର ଇଂରାଜି ଉତ୍ତର

ମୋର ଏତେ ଉଚ୍ଚକୋଟିର ହୋଇଥିଲା ଯେ ପରୀକ୍ଷକ ତାହାଁରେ ଶହେକରୁ ଅଶୀ ନମ୍ବର ଦେଇଥିଲେ । ଇଂରେଜୀରେ କଲେଜରେ ଶତକଡ଼ା ଅଶୀ ନମ୍ବର ରଖିବା କୌଣସି ଛାତ୍ର ପକ୍ଷରେ କେବେ ସମ୍ଭବ ହୁଏ ନାହିଁ । ମୋ ପକ୍ଷରେ ଏହା ସମ୍ଭବ ହୋଇଥିବାରୁ ମୁଁ ଜଣେ ଲୋକୋତ୍ତର ପ୍ରତିଭା ବିଶିଷ୍ଟ ଛାତ୍ର ବୋଲି ବିବେଚିତ ହେଲି । ଉତ୍ତରର ରଚନାଭଙ୍ଗୀ ଏପରି ସମୁତ୍କୃଷ୍ଟ ହୋଇଥିଲା ଯେ ଅଧ୍ୟାପକ ମହାଶୟ (ଶ୍ରୀ ଗିରିଜା ଶଙ୍କର ରାୟ, ଏମ୍. ଏ.) ଏହାକୁ ନେଇ ତତ୍କାଳୀନ ପ୍ରିନ୍ସିପାଲ (ଅଧ୍ୟକ୍ଷ) କ୍ୱିଟଲିକ୍ ସାହେବଙ୍କୁ ଦେଖାଇଥିଲେ ଏବଂ ପ୍ରିନ୍ସିପାଲଙ୍କ ଲିଖିତ ଆଦେଶରେ ଏ ଉତ୍ତରପତ୍ର ଇଂରାଜୀ ରଚନାର ଆଦର୍ଶ ରୂପେ ୧ମ ବାର୍ଷିକ ଶ୍ରେଣୀରୁ ଆରମ୍ଭ କରି ୪ର୍ଥ ବାର୍ଷିକ ଶ୍ରେଣୀ ପର୍ଯ୍ୟନ୍ତ ପ୍ରତ୍ୟେକ ଶ୍ରେଣୀର ଇଂରାଜୀ ଟିଉଟରିଅଲ ଶ୍ରେଣୀମାନଙ୍କରେ ଛାତ୍ରମାନଙ୍କ ଆଗରେ ପ୍ରଦର୍ଶିତ ଓ ପଠିତ ହୋଇଥିଲା । ଇଂରାଜୀ ଅଧ୍ୟାପକମାନେ ମତ ଦେଇଥିଲେ ଯେ ଏ ଭରଣୀୟ ଛାତ୍ରର ରଚନା ଇଂଲଣ୍ଡର ବିଖ୍ୟାତ ସାହିତ୍ୟିକ ମାକ୍‌କଲେଙ୍କ ରଚନାର ସମକକ୍ଷ । ସମଗ୍ର କଲେଜରେ ତୁଣ୍ଡେ ତୁଣ୍ଡେ ମୋର ଯଶ ଘୋଷିତ ହୋଇଥିଲା ଓ ମୋ ସହିତ ପରିଚିତ ହୋଇ କି ଉପାୟରେ ସେ ବୟସରେ ମୁଁ ରଚନାଶୈଳୀକୁ ଏଡ଼େ ସମୁତ୍କୃଷ୍ଟ ଓ ଏଡ଼େ ଅନନ୍ୟସାଧାରଣ କରିପାରିଛି, ଏହା ମୋ ମୁହଁରୁ ଶୁଣିବା ନିମନ୍ତେ ହଷ୍ଟେଲରେ ମୋ କୋଠରୀରେ ପ୍ରତ୍ୟହ ପ୍ରାତଃ ସାୟଂ ଓ ରାତ୍ରରେ ଦଳ ଦଳ ହୋଇ ଛାତ୍ର ଆସି ଉପସ୍ଥିତ ହୋଇଥିଲେ । ମୁଁ ମାଟ୍ରିକ୍ୟୁଲେସନରେ ବୃତ୍ତି ନ ପାଇଥିଲେ ସୁଦ୍ଧା କଲେଜ ଗୋଟାକଯାକର ବୃତ୍ତିଧାରୀ ଛାତ୍ରମାନେ ମୋ ପ୍ରତି ସମ୍ମାନବିନମ୍ର ହୋଇପଡ଼ିଲେ । ଇଂରାଜୀ ଅଧ୍ୟାପକମାନେ ମୋତେ ପାଖକୁ ଡାକି ମୋର ପୁଙ୍ଖାନୁପୁଙ୍ଖ ପରିଚୟ ଜାଣିବାକୁ ଚାହିଁଲେ ଏବଂ ମୋ ପ୍ରତି ସେମାନଙ୍କର ସକଳବିଧ ହିତାକାଂକ୍ଷା ଜ୍ଞାପନ କଲେ ।

ମୁଁ ମନେକରୁଛି ରେଭେନ୍‌ସ କଲେଜର ସମଗ୍ର ଇତିହାସରେ ଜଣେ ପ୍ରଥମ ବାର୍ଷିକ ଶ୍ରେଣୀର ଛାତ୍ର ଭାଗ୍ୟରେ କେବେହେଲେ ଏତାଦୃଶ ଗୌରବ ଯୁଟି ନାହିଁ ।

ମୋ ଜ୍ୟେଷ୍ଠଭ୍ରାତାଙ୍କ ଅକରୁଣାରୁ ମୁଁ ଦାରିଦ୍ର୍ୟର ଯେଉଁ ବେଷ୍ଟନୀ ମଧ୍ୟରେ କଲେଜ ହଷ୍ଟେଲରେ ଦିନ ଯାପନ କରୁଥିଲି, ଏ ଯଶୋଲାଭରେ ତାହାଁର ଦାରୁଣତା ମୁଁ ଆଉ ବିଶେଷ ଅନୁଭବ କରି ପାରିଲି ନାହିଁ । କ୍ଳେଶଗୁଡ଼ାକ କାୟିକ, ମାନସିକ ପ୍ରଫୁଲ୍ଲତା ଯୋଗୁଁ ସେ ସବୁ ପୂର୍ବପରି ଅନନୁଭୂତ ନ ହେଲେ ମଧ୍ୟ ବିସ୍ମୃତ ହୋଇଯାନ୍ତି । ବିଦ୍ୱଜ୍ଜନ ସ୍ତବନର ବିଜୟମୁକୁଟ ପରିଧାନ କଲେ ମନୀଷା ଦୈହିକ ନିର୍ଯ୍ୟାତନକୁ ଉପେକ୍ଷା ଓ ଉପହାସ କରିଥାଏ । ଦୁଃସ୍ଥ ପ୍ରତିଭାର ତେଜରେ ଦୁଃସ୍ଥିତି ନିଷ୍ପ୍ରଭ ହୋଇପଡ଼େ ।

ଏହିପରି ଯଶଃଶ୍ରୀବିମଣ୍ଡିତ ହୋଇ ଦ୍ୱିତୀୟ ତ୍ରୈମାସିକ ପରୀକ୍ଷା ପର୍ଯ୍ୟନ୍ତ ମୁଁ କଲେଜରେ ଅଧ୍ୟୟନ କରିଥିଲି । କିନ୍ତୁ ମୋ ଶାରୀରିକ ତଥା ମାନସିକ ନିର୍ଯ୍ୟାତନାକୁ ଆହୁରି ମର୍ମବିଦାରକ କରି ମୋ ଜୀବନରେ ଅନ୍ୟ ଏକ ବୈଚିତ୍ର୍ୟମୟ ଅଧ୍ୟାୟ ଆରମ୍ଭ କରିବା ନିମିତ୍ତ ବିଧାତା ମୋତେ କଲେଜରୁ ଅପସାରିତ କରି ଜ୍ୟେଷ୍ଠଭ୍ରାତାଙ୍କ ନିଷ୍କରୁଣ ଆଶ୍ରୟକୁ ଘେନିଗଲେ । ସେ ଘଟନାର ବିବରଣୀ ନିମ୍ନରେ ଦେଉଅଛି ।

ଜ୍ୟେଷ୍ଠଭ୍ରାତା ମୋ ପାଖକୁ ମାସିକ କଲେଜଖର୍ଚ୍ଚ ପଠାଉଥାନ୍ତି ବୋଲି ତାଙ୍କ ମନରେ ଉତ୍କଟ ଅସନ୍ତୋଷ ଥାଏ । ମୋ ଅଧ୍ୟୟନ ପ୍ରତି ସେ ଗୋଟାପଣେ ଅସହିଷ୍ଣୁ ଥାନ୍ତି । ତାଙ୍କ କୋପ ଜନକଜନନୀଙ୍କ ଉପରେ ସେ ଝାଡ଼ୁଥାନ୍ତି । ସେ ଦୁହିଁଙ୍କ ମନୋବ୍ୟଥାର ନିମିତ୍ତ ହୋଇଥିଲି ବୋଲି ମୁଁ ନିଜକୁ ଶତ ଧିକ୍କାର ଦେଉଥାଏ । ବେଳେବେଳେ ମୋର ମନେ ହେଉଥାଏ, ବିମୁଖ ବ୍ୟକ୍ତିର ଗଳଗ୍ରହ ହେବା ଅପେକ୍ଷା ବରଂ

ବିଷଭକ୍ଷଣପୂର୍ବକ ପ୍ରାଣତ୍ୟାଗ କରିବାର ପାପ ଭଗବାନଙ୍କ ପାଦତଳେ ନିବେଦିତ କରିଦେବା ଭଲ । ଜ୍ୟେଷ୍ଠଭ୍ରାତାଙ୍କ ଅକରୁଣା ଯୋଗୁଁ ମୋର ସକଳ ଯଶଃଶ୍ରୀ ମୋତେ ସମୟେ ସମୟେ ପିତା ଲାଗୁଥାଏ । କୁଟିନୁ୍ୟ କଟୂବାକ୍ୟ ଅତ୍ୟନ୍ତ ମର୍ମବିଦାରକ ବୋଲି ମୁଁ ଯାହା ବହିରେ ପଢ଼ିଥିଲି ତାହା ଏବେ ଅକ୍ଷରେ ଅକ୍ଷରେ ମୁଁ ହୃଦୟରେ ଉପଲବ୍ଧି କଲି । ଏହି ସମୟରେ ବିଧାତା ତାଙ୍କ ହାତରେ ମୋ ଜୀବନର ଗତିକୁ ନିୟନ୍ତ୍ରଣ କରିବା ନିମନ୍ତେ ଘଟନାର ଏପରି ଏକ ପରିବେଶ ସୃଷ୍ଟି କଲେ, ଯହିଁରେ ଜ୍ୟେଷ୍ଠଭ୍ରାତାଙ୍କ ଅସନ୍ତୋଷବହ୍ନି ଉପରେ ଆପାତତଃ କିଞ୍ଚିତ୍ ଜଳ ବର୍ଷଣ ହେଲା ।

୧୯୨୦ ମସିହାରେ ଅସହଯୋଗ ଆନ୍ଦୋଳନ ଅତ୍ୟନ୍ତ ପ୍ରବଳ ହୋଇଉଠିଲା । ମହାତ୍ମା ଗାନ୍ଧୀ ତାଙ୍କ ଯାଦୁମନ୍ତ୍ର ବଳରେ ସମଗ୍ର ଦେଶକୁ ଉଦ୍‌ବୁଦ୍ଧ କରିଦେଲେ । ସ୍ୱରାଜଲାଭର ଆଶାରେ ହିମାଚଳଠାରୁ କୁମାରିକା ପର୍ଯ୍ୟନ୍ତ ଦେଶପ୍ରାଣ ବ୍ୟକ୍ତିମାନେ ଅହିଂସ ଆନ୍ଦୋଳନରେ ପ୍ରାଣୋତ୍ସର୍ଗ ପର୍ଯ୍ୟନ୍ତ କରିବାକୁ ବଦ୍ଧପରିକର ହେଲେ । ବର୍ଷକ ମଧ୍ୟରେ ସ୍ୱରାଜଲାଭ ହୋଇପାରିବ ବୋଲି ମହାତ୍ମାଜୀ ଘୋଷଣା କରିବାରୁ ଲୋକଙ୍କର ଉତ୍ସାହର ଜୁଆର ଉଦ୍‌ବେଳ ହୋଇଉଠିଲା । ଉତ୍କଳରେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଅସହଯୋଗ ଆନ୍ଦୋଳନର ମୁଖ୍ୟ ପୁରୋଧା ହୋଇ ଚରମ ତ୍ୟାଗ କରିବା ପାଇଁ ଉତ୍କଳୀୟମାନଙ୍କୁ ଅନୁପ୍ରେରିତ କଲେ । ଓକିଲମାନେ ଓକିଲତି ତ୍ୟାଗ କଲେ, ସରକାରୀ କର୍ମଚାରୀମାନେ ଜୀବିକା ତ୍ୟାଗ କଲେ, ବେସରକାରୀ ଲୋକମାନେ ସକଳ ସରକାରୀ ସଂପର୍କ ତ୍ୟାଗ କଲେ, ଛାତ୍ରମାନେ ସ୍କୁଲ କଲେଜ ତ୍ୟାଗ କଲେ ଏବଂ ଜାତୀୟ ଜୀବନର ସବୁ କ୍ଷେତ୍ରରେ ଘୋର ବିଶୃଙ୍ଖଳା ଓ ଅସ୍ଥିରତା ଦେଖାଗଲା । ଜଣାଗଲା, ଅସହଯୋଗର ଏ ଘୋର ବାତ୍ୟାକୁ ପ୍ରଶମିତ କରିବାକୁ ସ୍ୱରାଜଲାଭହିଁ ଏକମାତ୍ର ଉପାୟ । ଜାତିର ବିକ୍ଷୁବ୍‌ଧ ଅନ୍ତରାତ୍ମାକୁ ସ୍ୱରାଜ୍ୟ ଅତିରିକ୍ତ ଅନ୍ୟ କିଛି ହେଲେ ପ୍ରଶମିତ କରିପାରିବ ନାହିଁ ।

ଆମ କଲେଜ ହଷ୍ଟେଲ ନିକଟରେ ନଈବାଲି । କାଠଯୋଡ଼ି ଶଯ୍ୟାଉପରେ ପ୍ରତିଦିନ ସାୟଂକାଳରେ ବିରାଟ ସଭାମାନ ଅନୁଷ୍ଠିତ ହୁଏ ଏବଂ ସଭା-ପ୍ରତ୍ୟାଗତ ଛାତ୍ରମାନେ ହବାଗ୍ରହ ହଷ୍ଟେଲକୁ ରାଜନୈତିକ ଆଲୋଚନାରେ ମୁଖର କରୁଥାଆନ୍ତି । ଗୋଟାଏ ଗୋଟାଏ ସଭାର ଆହ୍ୱାନ ପରେ ଛାତ୍ରମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ନ୍ତି । କଲେଜରେ ଆଉ ପଢ଼ିବେ ନା ଆନ୍ଦୋଳନକୁ ଡେଇଁପଡ଼ିବେ ଏହାହିଁ ସେମାନଙ୍କର ମନକୁ ଦିନରାତି ଘାରେ । ହଷ୍ଟେଲରୁ ଅଧ୍ୟୟନୋପଯୋଗୀ ବାତାବରଣ ଏକାବେଳକେ ବିଦା ହୋଇଯାଇଥିଲା ପରି ଲାଗୁଥାଏ । ମୋର ମଧ୍ୟ କମ୍ ଆଦର୍ଶବାଦିତା ନ ଥିଲା । ଅକ୍ଷମତାବିଧାୟୀ ମୋ ଖଞ୍ଜତା ଯୋଗୁଁ ମୁଁ ବିଶେଷ ଯାଆସ କରିପାରୁ ନ ଥିଲେ ସୁଦ୍ଧା ସେ ସମୟରେ ଇଂରେଜି, ଓଡ଼ିଆ ବା ବଙ୍ଗଳାରେ ପ୍ରକାଶିତ ଚରମପନ୍ଥୀ ଯାବତ ସମ୍ବାଦପତ୍ର ମୁଁ ତନ୍ନ ତନ୍ନ କରି ପାଠ କରି ଅତ୍ୟନ୍ତ ଉତ୍ତେଜିତ ହୋଇଥାଏ । ବହୁ ଛାତ୍ର ରାଜନୀତିକ ତଥ୍ୟମାନ ମୋଠାରୁ ଆସି ନିୟମିତ ଭାବରେ ବୁଝନ୍ତି, କାରଣ ସେମାନେ କେହି-ହେଲେ ମୁଁ ଯେଉଁ ପରିମାଣରେ ରାଜନୀତିକ ସାହିତ୍ୟ ପାଠ କରିଥିଲି ସେ ପରିମାଣରେ ପାଠ କରିବାର ଅବକାଶହିଁ ପାଉ ନ ଥିଲେ । ମୁଁ ଖଞ୍ଜ ହୋଇ ନ ଥିଲେ କେତେ କ'ଣ କରନ୍ତି ଏ ଆନ୍ଦୋଳନରେ, ଏ ନିଷ୍ଫଳ କଳ୍ପନା ମୋ ଅନ୍ତରକୁ ଘାରି ପକାଉଥାଏ ।

ଏହିପରି ପରିସ୍ଥିତିରେ କଲିକତା ବିଶ୍ୱବିଦ୍ୟାଳୟରେ ଅଧ୍ୟାପକତା କରୁଥିବା ସତ୍ୟବାଦୀ ସ୍କୁଲରେ ମୋର ଶିକ୍ଷକ ପଣ୍ଡିତ ନୀଳକଣ୍ଠ ଦାସ ତାଙ୍କ ଚାକିରିକୁ ଇସ୍ତଫା ଦେଇ ଅସହଯୋଗ ଆନ୍ଦୋଳନରେ ଯୋଗ

ଦେବାକୁ କଟକରେ ପହଞ୍ଚିଲେ । କଲେଜରେ ପଢ଼ୁଥିବା ସତ୍ୟବାଦୀ ସ୍କୁଲର ଭୂତପୂର୍ବ ଛାତ୍ରମାନଙ୍କ ପାଖକୁ ତାଙ୍କର ଡାକରା ଆସିଲା । ଆମ୍ଭେ ୨୦।୩୦ ସଉକ ଯୁବକ ଉପସ୍ଥିତ ହେଲୁଁ । ଆମ୍ଭମାନଙ୍କୁ ସମ୍ବୋଧନ କରି ସେ ବ୍ରିଟିଶ ସରକାର ଚାଳିତ ଶିକ୍ଷାନୁଷ୍ଠାନମାନଙ୍କୁ ବର୍ଜନ କରିବାର ପ୍ରୟୋଜନୀୟତା ବୁଝାଇଲେ । ଜାତିର ଭାଗ୍ୟ ଯୁବକମାନେ ସେମାନଙ୍କ ତ୍ୟାଗଦ୍ୱାରା ଗଢ଼ନ୍ତି ବୋଲି କହିଲେ । ସେ ଆହୁରି ମଧ୍ୟ ଆଶା ଦେଲେ ଯେ ମହାତ୍ମା ଗାନ୍ଧୀ ଭବିଷ୍ୟଦ୍‌ବାଣୀ କରୁଛନ୍ତି ଯେ ଏକବର୍ଷପରେ ସ୍ୱରାଜ୍ୟ ଅବଶ୍ୟ ଲବ୍ଧ ହେବ—ସ୍ୱରାଜ୍ୟ ପରେ ଯେତେବେଳେ ଜାତୀୟ ଶିକ୍ଷା ପ୍ରବର୍ତ୍ତିତ ହେବ, ତେତେବେଳେ ପୁଣି ନୂଆ ପରିବେଶରେ ଆମ୍ଭେମାନେ ଶିକ୍ଷାରମ୍ଭ କରିବୁଁ—ବ୍ରିଟିଶକେଶରୀ ନତଜାନୁ ହୋଇ ଭାରତଠାରୁ ମାର୍ଜନା ଚାହିଁବ ।

ଆମ୍ଭମାନଙ୍କ ମଧ୍ୟରୁ ବହୁ ଛାତ୍ର ପଣ୍ଡିତଜୀଙ୍କ ମତ ଗ୍ରହଣକରି କଲେଜ ବର୍ଜନ କରିବାକୁ ଦୃଢ଼ସଂକଳ୍ପ ହେଲେ । ମୁଁ ମଧ୍ୟ ମୋ ନୈତିକ ସମର୍ଥନ ଦେବାଦ୍ୱାରା କିଛିହେଲେ ଦେଶସେବା ହୋଇପାରିବ ଏହିସବୁ ବିଚାରଦ୍ୱାରା ଚାଳିତ ହୋଇ ମୋ ପୋଥିପତ୍ରରେ ଡୋରି ବାନ୍ଧିଲି । କଲେଜ ଛାଡ଼ୁ ନ ଥିବା ମୋର ଅନେକ ସହପାଠୀ ମୋତେ କଲେଜତ୍ୟାଗରୁ ନିବୃତ୍ତ କରାଇବାକୁ ବହୁ କଥା କହିଥିଲେ ଏବଂ ମୁଁ କଲେଜ ଛାଡ଼ିଯିବାରୁ ପ୍ରକୃତରେ କ୍ଷୁବ୍ଧ ହୋଇଥିଲେ । ମୁଁ ବୁଝୁଥିଲି ଯେ ସାଆସ କରିବାର ଶକ୍ତି ନ ଥାଇ ମୁଁ ବିଶେଷ କିଛି କରିପାରିବି ନାହିଁ । ତଥାପି ମୁଁ ଏ ସ୍ୱାଧୀନତା ଆନ୍ଦୋଳନରେ ନିଷ୍କ୍ରିୟ ଭାବରେ ହେଲେ ମଧ୍ୟ ନିଜର ନୈତିକ ସମର୍ଥନ ଦେଇ ସଂଶ୍ଳିଷ୍ଟ ହୋଇ ପାରିବାର ସୁଯୋଗକୁ ଗ୍ରହଣକଲି । ମନରେ ଅସ୍ପଷ୍ଟ ଭାବରେ ଧାରଣା ହେଲା ଯେ ଏକବର୍ଷ ପରେ ସ୍ୱରାଜ ହୋଇଯିବ । ତହିଁରେ ଆମ୍ଭ ପଣ୍ଡିତ ନୀଳକଣ୍ଠ ପ୍ରଭୃତି କର୍ଣ୍ଣଧାର ହେବେ ଏବଂ ଆମ୍ଭମାନଙ୍କୁ ସେ ସମୟରେ ଜାତିର ପୁନର୍ଗଠନ ପାଇଁ ଶିକ୍ଷାପ୍ରାପ୍ତ ହେବାକୁ ଆଗ ଡାକରା ଆସିବ । ଏହା ଧ୍ରୁବାଣି ପରିତ୍ୟଜ୍ୟ ଅଧ୍ରୁବାଣି ନିଷେବତେ ଭଳି ହେଲା । ତଥାପି ସ୍ୱଳ୍ପମପ୍ୟସ୍ୟ ଧର୍ମସ୍ୟ ତ୍ରାୟତେ ମହତୋ ଭୟାତ୍ ଧାରଣାର ବଶବର୍ତ୍ତୀ ହୋଇ ମୁଁ ଅସହଯୋଗକୁ ଝାମ୍ପ ଦେଇଥିଲି ।

ମୁଁ ଯେତେବେଳେ ପେଡ଼ିପୁଟୁଳା ଧେନି ଗ୍ରାମରେ ପହଞ୍ଚିଲି ଓ ଜନନୀଙ୍କୁ ସବୁକଥା ବୁଝାଇ କହିଲି ସେ ମୋ କାର୍ଯ୍ୟର ଔଚିତ୍ୟ ଅନୌଚିତ୍ୟ ବିଶ୍ଳେଷଣ କଲେନାହିଁ ସତ୍ୟ, କିନ୍ତୁ ମୋ ଭବିଷ୍ୟତ ବିଷୟରେ ସେ ବହୁ ଆଶଙ୍କାରେ ବିହ୍ୱଳ ହୋଇପଡ଼ିଲେ । ଜନକ ବିଷାଦରେ ପ୍ରଭାବିତ ନ ହୋଇ ମୋ କଲେଜ ତ୍ୟାଗକୁ ଅନାସକ୍ତ ଦୃଷ୍ଟିରେ ଦେଖିଲେ । କନିଷ୍ଠା ଭଗିନୀ ସ୍ନେହମୟୀ ନିଶାମଣି ଦୁଃଖସାଗରରେ ବୁଡ଼ିଗଲା । କନିଷ୍ଠ ଭ୍ରାତା କାଳୀଚରଣ ମୁଁ ପଢ଼ା ଛାଡ଼ିକରି ଚାଲି-ଆସିଛି ଦେଖି ତହିଁରୁ ଲବ୍ଧ ଆନନ୍ଦକୁ ପ୍ରଚ୍ଛନ୍ନ ରଖିଲା । ଜ୍ୟେଷ୍ଠଭ୍ରାତା ଓ ଭ୍ରାତୃଜାୟା ତାଙ୍କ ଅସନ୍ତୋଷ ଓ କ୍ରୋଧର ତୀବ୍ରତା କମାଇ ଦେଇ ମୋ ପ୍ରତି ଅସନ୍ତୁଷ୍ଟ ହେବାର ମାତ୍ରା ହ୍ରାସ କରିଦେଲେ ।

ମୁଁ କଲେଜରେ ଲବ୍ଧ ମୋ ଯଶଃଶ୍ରୀକୁ ଝୁରି କପାଳ ଠୁକି ରହିଲି । ମୋ ଦ୍ୱାରା ଲବ୍ଧ ଅଳ୍ପ-ଶିକ୍ଷାରେ ଜୀବିକାର୍ଜନ ଦିଗରେ ମୁଁ ବେଶୀ କିଛି କରିପାରିବି ନାହିଁ ବୋଲି ଭାବି ଭାବି ଜନନୀ ଅତ୍ୟନ୍ତ ବିମର୍ଷ ହେଲେ । ଆଉ ଥରେ ମଧ୍ୟ କଲେଜ ଗମନ କରାଯାଇପାରେ ଅଥବା ସ୍ୱରାଜପରେ ଏ ଧରଣର କଲେଜ ପରିବର୍ତ୍ତରେ ଜାତୀୟ ସ୍ତରରେ ଗଠିତ କଲେଜରେ ଅଧ୍ୟୟନ କରାଯାଇପାରେ ଓ ନିଜ ପ୍ରତିଭାର ପରିଚୟ ଦିଆଯାଇପାରେ, ମୁଁ ଏହିଭଳି ଗୁଡ଼ିଏ କଳ୍ପନାକୁ ସମ୍ବଳ କରି ବିଭ୍ରାନ୍ତ ଭାବରେ ସମୟ

ଅତିବାହିତ କରିବାରେ ଲାଗିଲି । ସତ୍କାର୍ଯ୍ୟରେ ଆପାତ-ନିଷ୍ଫଳ ତ୍ୟାଗ ଭଗବାନଙ୍କଦ୍ୱାରା ଉପେକ୍ଷିତ ହେବ-ନାହିଁ ବୋଲି ମୁଁ ଭାବୁଥିଲି ।

ଏହି ସମୟରେ ମୁଁ ବିଭିନ୍ନ ଭାଷାର ଓ ବିଶେଷ କରି ଇଂରାଜୀର ଅସଂଖ୍ୟ କାବ୍ୟ, ଉପନ୍ୟାସ, ନାଟକ, ସମାଲୋଚନା ଓ ପତ୍ରପତ୍ରିକା ପାଠକରି ମୋ ଜ୍ଞାନ-ଭଣ୍ଡାରକୁ ବୃଦ୍ଧି କରିଥିଲି । ମୋର ଅହୋରାତ୍ର ଅଧ୍ୟୟନରେ ସ୍ୱଯାପିତ ହେଉଥିଲା । ନିଜ ଶାରୀରିକ ଓ ଆର୍ଥିକ ସ୍ଥିତିର ଭୀମ ବାସ୍ତବତାକୁ ପୂରାପୂରି ବିସ୍ମୃତ ହୋଇ ମୁଁ ଯୌବନର ବର୍ଣ୍ଣଭାସ୍ୱର ପରିକଳ୍ପନା-ମାନଙ୍କରେ ନିତ୍ୟନିମଗ୍ନ ରହୁଥିଲି । ଜୀବନରେ ମୋର ଅଭ୍ୟୁଦୟ ନିମନ୍ତେ ଅପର ବ୍ୟକ୍ତିବିଶେଷର ସାହାଯ୍ୟ ସହାନୁଭୂତି ଯେ ପ୍ରୟୋଜନୀୟ ଏବଂ ତାହା ଯେ ସହଜ-ପ୍ରାପ୍ୟ ନୁହେଁ ଏହା ମୋ ମନ ଭିତରକୁ ଆଦୌ ଢୁକୁ ନ ଥିଲା । ବିଦ୍ୟା ଥିଲା ମୋର ନିଃଶ୍ୱାସ, ଅଶନ, ବସନ, ଆଭରଣ ଏବଂ ପଦେ କଥାରେ କହିଲେ ଜୀବନର ସର୍ବସ୍ୱ । ତହିଁରେ ଧନୀକ ହୋଇ ମୁଁ ବିସ୍ମୃତ ହୋଇଯାଉଥିଲି ଯେ ସ୍ଥୂଳ ଜୀବନର ବହୁ କାମ୍ୟ ସାମଗ୍ରୀ ବୈଷୟିକ ଧନରେ ଧନୀକ ଅପଣ୍ଡିତକୁ ସହଜଲଭ୍ୟ ହୁଏ କିନ୍ତୁ ବୈଷୟିକଧନବିବର୍ଜିତ ପଣ୍ଡିତ ସେ ସବୁକୁ ଲୋଡ଼ି ନୈରାଶ୍ୟର ହାହୁତାଶରେ ଦଗ୍ଧ ହୁଏ ଓ ହାହାକାର ମାତ୍ର ସାର କରେ । ଲକ୍ଷ୍ମୀଙ୍କ ପୁତ୍ର ହୁଏ ରାଜା, ସରସ୍ୱତୀଙ୍କ ପୁତ୍ର ହୁଏ ଭିକ୍ଷୁ ।

ଲକ୍ଷହୀରା ଧନେଶ୍ୱର ଅକବ ରାଜାର କୋଳରେ ଚିରାଶ୍ରୟ କାମନା କରି କବିରତ୍ନ କାଳୀଦାସଙ୍କର କରେ ଶିରଚ୍ଛେଦ । ବିଦ୍ୱତ୍ତା, ପ୍ରୀତି ଓ ରସିକତାର ବିମଳ ତ୍ରିବେଣୀ ତ୍ୟାଗକରି କାମିନୀ ପ୍ରାୟଶଃ ଖୋଜନ୍ତି ଧନର ପଙ୍କିଳ ପଲ୍ୱଳ । ସଂସାର ବାଧ ହେଲେ ମୌଖିକ ସମ୍ମାନ ମାତ୍ର ଦିଏ ପ୍ରତିଭାବନ୍ତକୁ, କିନ୍ତୁ ଧନବନ୍ତହିଁ ପ୍ରକୃତରେ ତାର ଦୁଲାଳ । ମୁଁ ଅସହ-ଯୋଗ ଯୋଗୁଁ କଲେଜ ତ୍ୟାଗକରି ଦୀର୍ଘ ଦୁଇବର୍ଷକାଳ ମୋର ପ୍ରତିଭାକୁ ପୁଷ୍ଟ କରିବାକୁ ଯାଇ ବହୁ ଶାସ୍ତ୍ରାଧ୍ୟୟନରେ ନିଜକୁ ପୂରାପୂରି ହଜାଇ ଦେଇଥିଲି । ସଂସାର ମୋତେ ଯେ ଦୂରରୁ ନିରି ଉପହାସ କରୁ-ଥିଲା ଏହା ମୁଁ ଆଦୌ ବୁଝିପାରୁ ନ ଥିଲି । ମୋର ଆଖି ଖୋଲିଦେବା ପାଇଁ ବିଧାତା ମୋ ଜୀବନର ଆଉ ଗୋଟିଏ ଅଧ୍ୟାୟର ସିଦ୍ଧିରସ୍ତୁ କଲେ ।

## ସପ୍ତମ ଅଧ୍ୟାୟ

ସେତେବେଳକୁ ୧୯୨୧ ମସିହା । ମହାତ୍ମା ଗାନ୍ଧୀଙ୍କ ମିଆଦ ଅନୁସାରେ ଏକ ବର୍ଷରେ ସ୍ୱରାଜ ଆସିଲା ନାହିଁ, ପରନ୍ତୁ ଚଉରିଚଉରା ହତ୍ୟାକାଣ୍ଡ ପରେ ଅସହଯୋଗ ଆନ୍ଦୋଳନରେ ପଡ଼ିଗଲା ଅଭାବନୀୟ ଭଟ୍ଟା । ଦେଶର ଭବିଷ୍ୟତ ପରି ମୋ ନିଜ ଭବିଷ୍ୟତ ହୋଇଗଲା ଅନ୍ଧକାରାଚ୍ଛନ୍ନ ।

୧୯୨୧ ମସିହାର ଗ୍ରୀଷ୍ମାବକାଶ ସମୟ—ଜ୍ୟେଷ୍ଠଭ୍ରାତା ପୁରୀ ଜିଲ୍ଲା ସ୍କୁଲରେ ସହକାରୀ ଶିକ୍ଷକ ଥାନ୍ତି । ତାଙ୍କ ବସା ଥାଏ ମାଟିମଣ୍ଡପସାହିରେ—ପୁରୀ ସଂସ୍କୃତ କଲେଜ କୋଠାର ନିକଟରେ । ମୁଁ ଥାଏଁ ସେହି ବସାରେ—ତାଙ୍କ ସାନ୍ନିଧରେ । ଏହି ସମୟରେ ଓଡ଼ିଶାର ଉତ୍ତର ପଟର କୌଣସି ଜିଲ୍ଲାର ଗୋଟିଏ

ଅତ୍ୟନ୍ତ କରୁଣ ପରିବାର ଗ୍ରୀଷ୍ମ ଯାପନ କରିବା ମାନସରେ ପୁରୀରେ ବସା କରି ରହିଲେ । ସେ ପରିବାରରେ ପ୍ର—ବୋଲି ଏକାଦଶବର୍ଷୀୟା ଗୋଟିଏ ବାଳିକା ଥିଲା । ମୁଁ ମନେ କରୁଛି ବିଧାତା ମୋତେ ବିସ୍ମୃତିର ଘୋର ତମିସ୍ରା ଭିତରୁ ପୁଣି ଆଲୋକକୁ ଟାଣି ନେବାକୁ ତାକୁ ମୋ ସୁଷମାଲୋଲୁପ ନୟନ-ସମକ୍ଷକୁ ପ୍ରେରଣ କରିଥିଲେ । ଆମ୍ଭ ପରିବାର ସହିତ ପ୍ର—ଙ୍କ ପରିବାରର ସୌହାର୍ଦ୍ଦ ଥିଲା ।

ମୋ କନିଷ୍ଠା ଭଗିନୀ କଣାମଣିର ବିବାହ ସମାପ୍ତ ହୋଇ ସେ ପତିଗୃହକୁ ବିଦା ହେଉଥାଏ । ମୁଁ ଠିଆ ହୋଇ ଦୃଶ୍ୟ ଦେଖୁଅଛି, ଏହି ସମୟରେ ମୋ ମୁହାଁମୁହିଁ ଠିଆ ହେଲା ସେହି ପ୍ର— । ହଠାତ୍ ଦୁହିଁଙ୍କର ଚାରିଚକ୍ଷୁ ହୋଇଗଲା—ସହଜକେ ଫେରିଲା ନାହିଁ କାହାଠାରୁ କାହା ଆଖି । ଲଜ୍ଜା ଉପେକ୍ଷା କରିବାକୁ ଦୁହେଁ ଆଖିକୁ ଛଡ଼ାଛଡ଼ି କରି ଦେଉଥିଲୁଁ ସତ୍ୟ, କିନ୍ତୁ ବାରମ୍ବାର ପଡୁଥିଲୁଁ ଧରା ପରସ୍ପରଠାରେ । ପ୍ରାୟ ଅଧଘଣ୍ଟାକ ପରେ ଦୁହିଁଙ୍କର ବୁଝିବାକୁ ଆଉ ବାକି ରହିଲା ନାହିଁ ଯେ ଆମ୍ଭେ ଦୁହେଁ ଦୁହିଁଙ୍କ ମୁଖଶ୍ରୀର କାଙ୍ଗାଳ । ଅନ୍ଧେ ଭାରତୀରେ କଥାବାର୍ତ୍ତା କରିନେଲୁଁ "ଏ ଜନ୍ମର ପୂର୍ବରୁ କେଉଁ ବିସ୍ମୃତ କାଳରେ ଆମ୍ଭେ ଦୁହେଁ ପରସ୍ପରର ରୂପ ଆକଣ୍ଠ ପାନ କରି ତୃପ୍ତ ହୋଇପାରି ନ ଥାଇଁ—ଏ ଜନ୍ମରେ ଏବଂ ଏଣିକୁ ଏ ଜନ୍ମର ଅନ୍ତରିକ୍ତ ଭବିଷ୍ୟତର ବହୁ ବହୁ ଜନ୍ମରେ ପୁଣି ପରସ୍ପରର ସାନ୍ନିଧରେ ନିବଡ଼ଭାବରେ ରହି ରୂପ ପିଆପିଇରେ କୃତାର୍ଥ ହେବା । ଈପ୍ସିତ ଅଧଘଣ୍ଟାକ ପରେ ଲଜ୍ଜା ବିଦାୟ ନେଇ ଗ୍ଲଲଗଲା—ଏଣିକ ନିରବଚ୍ଛିନ୍ନ ଭାବରେ ଅପଲକ ଆଖିରେ ଲୋଲୁପତାକୁ ଅପ୍ରଚ୍ଛନ୍ନ ରଖି ପରସ୍ପର ପ୍ରତି ଚାହିଁବାରେ କେହି ଆଉ ବାଧା ରଖିଲୁ ନାହିଁ । ମୋ ହୃଦୟରେ ବହିଗଲା ଏପରି ଏକ ମଳୟ ଯାହାର ଶୀତଳତା ସଂବଧାସ୍ନିଗ୍ଧ ସୁରଭି ଥିଲା ସକଳ ବର୍ଣ୍ଣନର ଅତୀତ । ଆମ୍ଭ ଦୁହିଁଙ୍କ ମଧ୍ୟରେ ପ୍ରେମ-ସରିତ କହ ବା ମଧୁରସରିତ କହ, ରସଭରା ହୋଇ ବହିବାରେ ଲାଗିଲା ଏବଂ ନୟନକମଳର ନାଳରେ ଆମ୍ଭେମାନେ ତାହା ଅତର୍ପଣ ଭାବରେ ପାନ କରିବାରେ ଲାଗିଲୁଁ । ମୁଁ ତ ସଂଖ୍ୟାତୀତ ପ୍ରେମ କାବ୍ୟ, ପ୍ରେମାଖ୍ୟାନ ଉପନ୍ୟାସ ଓ ଉନ୍ମାଦକ ପ୍ରୀତିକବିତା ପାଠ କରିଥିଲି । ଭଗବାନ ମକରଧ୍ୱଜଙ୍କର ଜଗଜ୍ଜୟୀ ବିଶିଖର ଯୋଗ୍ୟ ଲକ୍ଷ୍ୟ ଯେ ଯୁବହୃଦୟ ଏହା ମୋର ଉପଲବ୍ଧ ହେବାକୁ ଆଉ ବାକି ନ ଥିଲା ।

ଚିକୁରଲକ୍ଷ୍ମୀରେ ଘନାନ୍ଧକାରକୁ, ଆନନଶ୍ରୀରେ ପୂର୍ଣ୍ଣଚନ୍ଦ୍ରକୁ, ଚକ୍ଷୁଚାଞ୍ଚଲ୍ୟରେ ମାଣବକ ମୃଗକୁ, ହାସ ବିଭୂତିରେ ପ୍ରବର୍ଷଣଶୀଳ ଚନ୍ଦ୍ରିକାକୁ, ଅଧରମାଧୁରୀରେ ସୁଧାଗର୍ଭା ଜବାକୁ, ନାସାସୌଷ୍ଠବରେ ତିଳପ୍ରସୂନକୁ, ବକ୍ଷକାନ୍ତିରମ୍ୟତାରେ ଜାମ୍ବୁନଦୀ ଆଭାକୁ, ବକ୍ଷୋଜ ସୁଦର୍ଶନତାରେ ଅର୍ଭକ ତାଳକୁ, କଟୀମାଧୁର୍ଯ୍ୟରେ ଡମ୍ବରୁକୁ, ସୃକଳିତ ଘନଜଘନବୈଭବରେ ଉଲଟ ରମ୍ଭାକୁ ଏବଂ ମୁକ୍ତାମୌକ୍ତିକମଣ୍ଡନ ଶ୍ରୀପଦସୁଷମାରେ ବାଳାରୁଣକୁ ତୁଚ୍ଛ କରି ପ୍ର— ଯେତେବେଳେ ମୋ ଆଖିରେ ଆଖି ମିଳାଇଦେଲା ମୁଁ ଭାବିଲି ବିଧାତା ଏହାରି ପାଦର ଆସ୍ତରଣ ହେବାକୁ ମୋତେ ଘାସ କଲା ନାହିଁ କାହିଁକି—ମୋତେ ଏହାଠାରୁ ଭିନ୍ନ କରି ରଖି ମନୁଷ୍ୟ କଲା କେଉଁ ବିଚାରରେ—ଯାକୁ ନିତ୍ୟକାଳ ନେତ୍ରରେ ଚଳାଇ ଏହାରି ସୁଷମା-ମନ୍ଦାକିନୀରେ ଚକ୍ଷୁକୁ ମଜ୍ଜାଇ ରଖିବାହିଁ ଯୁବଜୀବନର ସିନା ପରମ ପୁରୁଷାର୍ଥ । ମୁଁ ନେତ୍ରକୁ କହିଲି—ନେତ୍ର ! ତୁ କୋଟିଗୁଣିତ ହୋଇ ଏହାକୁ ନଖଠାରୁ ଶିଖ ପର୍ଯ୍ୟନ୍ତ ଦେଖୁଥାଅ; କର୍ଣ୍ଣକୁ କହିଲି କର୍ଣ୍ଣ ! ତୁ କୋଟିଗୁଣିତ ହୋଇ ଏହାରି କଣ୍ଠବଲ୍ଲକୀକୁ ଶୁଣୁଥାଅ । ପୁଣି ଅନ୍ତରକୁ ଆଦେଶ ଦେଲି—ଅନ୍ତର ! ତୁ ବିଗଳିତ ହୋଇଯାଇ ଏହା ପାଦରୂପରକ୍ତାରବିନ୍ଦ ଚାରିପଟେ ଭଉଁରୀ ହୋଇ ବୁଲୁଥା—ପ୍ରାଣକୁ କହିଲି ରେ ପ୍ରାଣ ! ତୁ ତୋ ପ୍ରାକ୍ତନ ଜନ୍ମଜନ୍ମାନ୍ତରର ସଙ୍ଗିନୀକୁ ଚିହ୍ନି

ନେ; ବର୍ଷ କେତେଟାର ଅପରିଚୟକୁ ଚୂନା କରିଦେଇ ତା ପାଦତଳ ରଙ୍ଗିମାର ଚନ୍ଦ୍ରାତପ ତଳରେ ନିଶ୍ଚିନ୍ତରେ ଆଶ୍ରୟ ବରଣ କରି । ନାସା କହିଲା—ମୋତେ ଆଦେଶ ଦିଆଯାଉ ମୁଁ ଅତୀତ ଜନ୍ମଜନ୍ମାନ୍ତର ପରିଚିତ ତାଙ୍କ ଅଙ୍ଗର ମଳୟ ଆଘ୍ରାଣ କରିବି; ମୁଖ କହିଲା—ତାଙ୍କ ଅଧରର ସୁଧା ମୁଁ ପ୍ରାକ୍ତନ ଜନ୍ମଜନ୍ମାନ୍ତରରେ ପାନକରି ତୃପ୍ତ ହୋଇ ପାରିନାହିଁ । ଆଦେଶ ହେଲେ ମୁଁ ତହିଁର ଅଖଣ୍ଡିତ ଶୋଷଣରେ ତୃପ୍ତ ହେବି; ବାହୁ କହିଲା—ମୋତେ ଆଦେଶ ହେଉ ମୁଁ ତାଙ୍କୁ ନିବିଡ଼ ବନ୍ଧନରେ ଆବଦ୍ଧ କରି ମୋ ବନ୍ଧୁ ଆପଣଙ୍କ ବକ୍ଷରେ ପ୍ରାକ୍ତନ ଜନ୍ମଜନ୍ମାନ୍ତରରେ ମୋର ସୁପରିଚିତ ସେହି ବନ୍ଧୁର ବକ୍ଷକୁ ଆଣି ଏକୀଭୂତ କରିଦେବି ।

ମୋର ଆଉ ଆୟତ୍ତ ରହିଲା ନାହିଁ । ପ୍ରାକ୍ତନ ଜନ୍ମଜନ୍ମାନ୍ତରର ପରିଚିତା ମୋ ଆତ୍ମାର ଆତ୍ମା ସେହି ଚିତ୍ତଚନ୍ଦ୍ରିକା ମନୋରମା ପ୍ର—ପ୍ରତି ମୋର ସବୁ ଅଙ୍ଗ ଓ ସବୁ ବୃତ୍ତି କିଙ୍କର ପରି ପ୍ରଧାବିତ ହେଲେ । ନିର୍ବାକ ଭାଷାରେ ମୁଁ ତାଙ୍କୁ ସମ୍ବୋଧନ କଲି, "ଅଭିନ୍ନା !!"—ସେ ମୋତେ ଅପରିମେୟ ପ୍ରଣୟରେ ଆହ୍ୱାନ କଲା "ଅଭିନ୍ନ" !!

କନ୍ୟା ବିଦା ଦେଖିବାରେ ଅସଂଖ୍ୟ ଲୋକ ସମବେତ ଜନତାର କୋଳାହଳରେ, କନ୍ୟା ଓ ଆତ୍ମୀୟମାନଙ୍କ କରୁଣ ବିଳାପରେ, ବରର ରୂପ-ସନ୍ଦର୍ଶନରେ ବା ଚିତ୍ତଦ୍ରାବକ ବାଦ୍ୟର ନିନାଦରେ ନିଜ ନିଜକୁ ହଜାଇ ଦେଇଥିଲେ, କିନ୍ତୁ ପ୍ର—କୁ ଅନାଇ ମୁଁ ଓ ମୋତେ ଅନାଇ ପ୍ର— ପୂର୍ବତନ ଜନ୍ମଜନ୍ମାନ୍ତରର ଆମ୍ଭ ଦୁହିଁଙ୍କ ଅତୀତ ବିବାହାବଳିକୁ ସ୍ମରଣ କରୁଥିଲୁଁ ଏବଂ ଏ ଜନ୍ମରେ ସତେ ବିଧାତା ଅୟମାରମ୍ଭକୁ ସାର୍ଥକ କରି ଆମ୍ଭ ଦୁହିଁଙ୍କୁ ସର୍ବାଙ୍ଗୀନ ପ୍ରପୂର୍ଣ୍ଣ ଆଶ୍ଳେଷରେ ଏକ କରିଦେବ ଏହାହିଁ ଭାବୁଥିଲୁଁ । ଦୁଇପକ୍ଷର ଅଭିଭାବକମାନଙ୍କ ଆୟୋଜନରେ ଭଗିନୀ ବିବାହର ଶେଷ ପର୍ଯ୍ୟାୟ ସାଙ୍ଗ ହୋଇଆସିଲାବେଳକୁ ଭାଇ ଦୁଇପକ୍ଷ ଅଭିଭାବକଙ୍କ ବିନାଗୋଚରରେ ମଧ୍ୟ ତା ଇଚ୍ଛା-କନିଆଁର ଇଚ୍ଛା-ବର ସାଜୁଥିଲା ।

ତାପରେ ପ୍ର—ସହିତ ନାନା ବିଷୟରେ ମନ-ବଚନ କର୍ତ୍ତବ୍ୟରେ ପରସ୍ପରର ଅତ୍ୟନ୍ତ ପାଖାପାଖି ହୋଇଆସିଲା ଭଳି ପୂରା ମାସକ ପର୍ଯ୍ୟନ୍ତ ଅମେୟ-ପ୍ରୀତି-ମ୍ରକ୍ଷିତ କଥାବାର୍ତ୍ତା ପ୍ରତ୍ୟହ ବାରମ୍ବାର ହୋଇ-ଅଛି । ମୁଁ ଯେ ଖଞ୍ଜ ବା ତାର ଅଯୋଗ୍ୟ ଏହା ତ ମାସକ ମଧ୍ୟରେ ତାଭଳି ଚତୁରୀ ଧରିନେବାକୁ କ୍ଷଣେ-ମାତ୍ର ଲାଗିନଥାନ୍ତା । କାଳେ ମୁଁ ସ୍ୱତଃ ନିଜ ଦଶା ଭାବି ସଂକୋଚରେ ନଇଁ ପଡ଼ିବି ଏହା ଘଟାଇ ନ ଦେବାକୁ ସେ ଦୟାବତୀ ତା ଚିତ୍ତର ଚରମ ଉତ୍ସର୍ଗ ବ୍ୟଞ୍ଜିତ କରି ମୋତେ ବଚନାତୀତ ଚାତୁର୍ଯ୍ୟରେ ନିର୍ଭୟ କରି ଦେଇ-ଥିଲା ।

ହାୟରେ, ଶ୍ରୀକ୍ଷେତ୍ରରୁ ତାର ବିଦାୟ ନେବାର ସେ ଦାରୁଣ ଦିବସ ! ମୁଁ କହିଲି ପ୍ର—, ଆଜି କଅଣ ସତେ — — — —

— — — — —

— — — — —

ମୋର ତ ହେଲେ ଅର୍ଦ୍ଧେକ ବାକ୍ୟ ଉଚ୍ଚାରଣ କରିବାର ଧୈର୍ଯ୍ୟ ଆସିଲା କିନ୍ତୁ ପ୍ର— ପୂର୍ଣ୍ଣ ନିର୍ବାକ ହୋଇ ପ୍ରାୟ ଅଧଘଣ୍ଟାଏ କାଳ କେବଳ ଚାହିଁରହିଲା ମୋର ମୁହଁକୁ । ଆଖିରେ ନ ଥିଲା ତାର ଲୋତକ ନ ଥିଲା ପୁଣି ପଲକ—ମୁଖରେ ନ ଥିଲା ସୁନିଷ୍ଟ ଭାଷା—ତାର ନିଃଶ୍ୱାସ ପ୍ରଶ୍ୱାସ ଗତାଗତ ହେଉଥିଲା କି ନାହିଁ ସନ୍ଦେହ । ସେ ପ୍ରେମିକାକୁଳମୌଳିମଣ୍ଡନା—ଭାବିନୀକୁଳେଶ୍ୱରୀର ବିଚ୍ଛେଦ-ଦୁଃଖ ଥିଲା—ବଚନର ଅତୀତ—ଲୋତକର ଅତୀତ—ଦୀର୍ଘଶ୍ୱାସର ବି ଅତୀତ ।

ଏହା ଦେଖି ମୋର ହୃଦୟ ତତ୍‌କ୍ଷଣାତ୍ ଯାହା ଶତଧା ହୋଇ ଫାଟି ନ ଗଲା ଏହାହିଁ ବିଚିତ୍ର । ପ୍ର—ହିଁ ଥିଲା ମୋ ନାସାର ନିଃଶ୍ୱାସ । ମୋର ଚରମ ଦୁର୍ଭାଗ୍ୟ-ବିଧାୟୀ ସେ ବିଦାୟ ଦିବସ ଗତ ହୋଇଗଲା—ତାକୁ ଘେନି ତା ସ୍ୱଜନଙ୍କ ସହିତ ସୁଦୂର ଉତ୍ତରୀ ନଗର ତା ଜନ୍ମସ୍ଥଳୀକୁ, ଅଥଚ ଏ ପିଣ୍ଡ ପୁଣି ରହିଲା ସଚଳ । ମୁଁ ସିଦ୍ଧାନ୍ତ କଲି ବିଧାତା ମୋ ପ୍ରକୃତ ଜୀବନକୁ ପ୍ର— ର ଅଙ୍ଗୀଭୂତ କରାଇ ମୋଦ୍ୱାରା ନିଜର ଈପ୍‌ସିତ କାର୍ଯ୍ୟର ସମ୍ପାଦନ ଉଦ୍ଦେଶ୍ୟରେ ମୋଠାରେ ପୁନଶ୍ଚ ଜୀବନ—ଏକ କୃତ୍ରିମ ଜୀବନ ସଞ୍ଚାର କରି ମୋତେ କଲେ ସଚଳ । ମୁଁ ନିର୍ଲ୍ଲଜ ପ୍ର—ଠାରୁ ଦୂରରେ ଥାଇ ରହିଲି ପୁଣି ଜୀବିତ !!! ଅଘଟଘଟନପଟୀୟସୀ ହା ନିୟତି ! ତୁମେ ପ୍ରକୃତରେ ନିର୍ମମା, ନିରଙ୍କୁଶା ଓ ଅଜେୟା ।

## ଅଷ୍ଟମ ଅଧ୍ୟାୟ

୧୯୨୧ ଓ ୧୯୨୨ ମସିହାର ମଧ୍ୟରେ ପ୍ର— ଉଚ୍ଚାଭିଳାଷର ଯେଉଁ ଅଗ୍ନି ମୋ ହୃଦୟରେ ସନ୍ଦୀପିତ କରିଦେଇଗଲା ସେ ଅଗ୍ନିର ଲେଲିହାନ ଶିଖା ହେଲା ଏକାବେଳକେ ଦୁର୍ବାର । ପ୍ର— ଧନିକ ଘରର କନ୍ୟା —ତା ଅଭିଭାବକମାନେ ଖ୍ୟାତନାମା ବ୍ୟକ୍ତି । ପ୍ର—କୁ ଲାଭ କରିବାକୁ ହେଲେ ବିଶ୍ୱବିଦ୍ୟାଳୟର ସମୁଚ୍ଚ ଉପାଧି ଅତ୍ୟନ୍ତ ପ୍ରୟୋଜନୀୟ – ଅତ୍ୟନ୍ତ ଅପରିହାର୍ଯ୍ୟ । ମୋ ବିଦ୍ୟାଗତ ଯୋଗ୍ୟତାକୁ କେନ୍ଦ୍ରକରି ମୁଁ ମନେ ମନେ ଗଢ଼ିବାରେ ଲାଗିଗଲି କଳ୍ପନାର ତୁଙ୍ଗ ଅଟ୍ଟାଳିକା । ମୋ ଖଞ୍ଜତା ଯେ ଏକ ଖାମ ବାସ୍ତବତା ଏହା ଆଦୌ ମୋ ମନରେ ରେଖାପାତ କଲାନାହିଁ । କେଉଁ କେଉଁ ଅବସ୍ଥା ମଜୁଦ୍ ଥିଲେ ବିବାହ ହୋଇପାରେ ସେ ବିଷୟରେ ମୁଁ ଆଦୌ ମନୋଯୋଗୀ ହେଲିନାହିଁ । ପ୍ର— ସହିତ ମନୋରାଜ୍ୟରେ ମୋ ମିଳନକୁ ମୁଁ ଅତି ସ୍ଥୂଳ ବୈଷୟିକ ରାଜ୍ୟର ବାସ୍ତବତାର ଅର୍ଥାତ୍ ପ୍ର— ସହିତ ମୋ ଈପ୍‌ସିତ ବିବାହର ଅଭ୍ରାନ୍ତ ସୂଚକ ବୋଲି ଅତ୍ୟନ୍ତ ଭ୍ରାନ୍ତଭାବରେ ଧରିନେଲି । ଜୀବନରେ ଖାମ ବାସ୍ତବ କରରୁ ବହୁବହୁବାର କଠୋର ଚପେଟାଘାତ ଖାଇ ଖାଇ ଏବକୁ ମୋର ଚକ୍ଷୁ ଉନ୍ମୀଳିତ ହେଉଅଛି । କିନ୍ତୁ ମୋତେ ଏକୋଇଶ ବା ବାଇଶି ବର୍ଷ ହୋଇଥିଲାବେଳେ ମୁଁ ବିଷୟର ଜଟିଳ ଛନ୍ଦରେ ପୂର୍ବାପର ଶୃଙ୍ଖଳିତ ସଂସାର ଯେ କେଉଁ ସରଣୀରେ ଗତି କରେ ତାହା ଆଦୌ ବୁଝୁ ନ ଥିଲି । ଇଂରାଜି ବା ଓଡ଼ିଆ ସାହିତ୍ୟରେ ସମଗ୍ର କଲେଜରେ ସର୍ବାଗ୍ରଗଣ୍ୟ ପ୍ରଥିତଯଶା ଛାତ୍ର ହେବା ମୋ ପକ୍ଷରେ ଯେପରି ସହଜ ଥିଲା ଜଣେ ଖ୍ୟାତନାମା ଧନିକ ବ୍ୟକ୍ତି କନ୍ୟାର ସ୍ୱାମୀ ହେବା ମୁଁ ସେହିପରି ସହଜ ଜ୍ଞାନ କରୁଥିଲି । ପ୍ର— ର ଅକୁଣ୍ଠିତ ହୃଦୟଦାନ ମୋତେ ବର୍ଣ୍ଣଭାସ୍ୱର କଳ୍ପନାଦୋଳାରେ ନିତ୍ୟ ଦୋଳାୟିତ କରୁଥିଲା । ପ୍ର—ର ଶରୀର ଯେ ତାର ଅକ୍ତିଆରରେ ଆଦୌ ନ ଥିଲା ମୁଁ ଭୁଲି ଯାଇଥିଲି । ପ୍ର—ସହିତ ମୋର ହୃଦୟ ବିନିମୟ ଏକାନ୍ତ ନିଗୂଢ଼ ଘଟନା ଥିଲା । ଆମ୍ଭ ପରିବାର ବା ତାଙ୍କ ପରିବାର ଏଥିର ଆଦୌ ଟେର୍ ପାଇ ନ ଥିଲେ । ଭଗବାନ୍ ମକରଧ୍ୱଜ ! ସଂସାର ଆଖିରେ ଧୂଳି ପକାଇ ତୁମ୍ଭେ ସୃଷ୍ଟିର ପ୍ରାରମ୍ଭରୁ ଯେ ଏ ପର୍ଯ୍ୟନ୍ତ ରଚନା କରିଚାଲିଛ

ଉନ୍ମାଦକର ଲୀଳାର କି ନିରବଚ୍ଛିନ୍ନ ପର୍ଯ୍ୟାୟ ! ଜଗମୋହିନୀ ବିଷ୍ଣୁମାୟା ତୁମ୍ଭଙ୍କୁହିଁ ଯେଜନ ଅମୋଘା । କି ମଧୁମୟ—କି ସ୍ୱାଦ୍ୟ ତୁମ୍ଭର କରଣିମାନ ! ମୋର ରମାବଲ୍ଲଭ ଶ୍ରୀଜଗନ୍ନାଥଙ୍କ ନିକଟରେ ନିତ୍ୟ ପ୍ରାର୍ଥନା ତୁମ୍ଭର ଚିତ୍ତଦ୍ରାବକ ସମ୍ମୋହକ ପ୍ରସାଦକୁ ସେ ନିଜେ କୃପାଦୃଷ୍ଟିରେ ଗୃହିଁ ମୋର କରଗତ କରାନ୍ତୁ । ତୁମ୍ଭର ଏତାଦୃଶ ପ୍ରସାଦ ହେଉ ଜନ୍ମେ ଜନ୍ମେ ମୋର କାମ୍ୟ ।

ବଙ୍ଗର ପ୍ରସିଦ୍ଧ ଔପନ୍ୟାସିକ ବଙ୍କିମ ଚନ୍ଦ୍ର ଚଟ୍ଟୋପାଧ୍ୟାୟ କହିଥିଲେ, "ଏ ଯୌବନ ଜଲତରଙ୍ଗ କେ ରୋଧିବେ ଉହାରେ—ହରେ ମୁରାରେ, ହରେ ମୁରାରେ !" ମୁଁ ଉଦ୍ଦାମ ଓ ଉଦ୍‌ବେଳ ହୋଇ ପୁଣି ରାଭେନ୍‌ସ କଲେଜରେ ପଢ଼ିବାକୁ ବାହାରିଲି । ଇତିମଧ୍ୟରେ ତତ୍କାଳୀନ ଗୋରା ପ୍ରିନ୍‌ସିପାଲ ଲାମ୍ବର୍ଟ ସାହେବଙ୍କ ପାଖକୁ ପତ୍ର ଲେଖି ପ୍ରଥମ ବାର୍ଷିକ ଶ୍ରେଣୀରେ ପଢ଼ିବାର ପୂର୍ବ ଦୁଇବର୍ଷ ପରେ ଦ୍ୱିତୀୟ ବାର୍ଷିକ ଶ୍ରେଣୀରେ ପଢ଼ିବା ନିମନ୍ତେ ତାଙ୍କ ସାନୁଗ୍ରହ ଅନୁମତିପତ୍ର ହାସଲ କରିସାରିଥିଲି । ଜ୍ୟେଷ୍ଠଭ୍ରାତା ମୋଠି ପୁଣି କଲେଜରେ ପାଠ ପଢ଼ିବାର ଅଦମ୍ୟ ଉତ୍ସାହ ଦେଖି ବିସ୍ମିତ ହୋଇଗଲେ ଓ ମୋର ସଂକଳ୍ପବ୍ୟଞ୍ଜୀନୀ ଭାଷାର ଉଗ୍ରତା ଦେଖି ଆପତ୍ତି କରିବାକୁ ସାହସୀ ହୋଇ ନ ଥିଲେ ।

ମୁଁ ୧୯୨୩ ମସିହାର ଦ୍ୱିତୀୟ ବାର୍ଷିକ ଶ୍ରେଣୀରେ ପ୍ରବେଶ କଲି । ପୁଣି ଥରେ ଦୁଇବର୍ଷ ପରେ ପ୍ରଥମ ତ୍ରୈମାସିକ ପରୀକ୍ଷାରେ ମୁଁ ଇଂରାଜୀ ଓ ଓଡ଼ିଆରେ ସମଗ୍ର କଲେଜର ସର୍ବାଗ୍ରଣୀ ଛାତ୍ରରୂପେ ପରିଗଣିତ ହେଲି । କି ଅଧ୍ୟାର୍ଥୀ କି ଅଧ୍ୟାପକ ସମସ୍ତେ ମୋର ଯଶୋଗାନରେ ମୁଖର ହୋଇ ମୋତେ ଅଜସ୍ର ଉତ୍ସାହ ପ୍ରଦାନ କଲେ । ବୈଷୟିକ ନାନା ଅଭାବ ସତ୍ତ୍ୱେ ମୁଁ କଲେଜରେ ମସ୍ତକୋତ୍ତୋଳନ କରି ଅତ୍ୟନ୍ତ ସମ୍ମାନିତ ହେଲି । ମୋର ଖଞ୍ଜତା ମୋର ଅଳଙ୍କାର-ବିଶେଷ ହୋଇଗଲା । ଦ୍ୱିତୀୟ ବାର୍ଷିକ ଶ୍ରେଣୀର ପରମାୟୁ ଶୀଘ୍ର ଶେଷ ପାଇଲା । ଆଇ.ଏ. ପରୀକ୍ଷା ପାଇଁ ବହୁପ୍ରତୀକ୍ଷିତ ବା ଟେଷ୍ଟ ପରୀକ୍ଷା ମଧ୍ୟ ଶୀଘ୍ର ସମାପ୍ତ ହେଲା । ଏ ପରୀକ୍ଷା ପରେ ମୁଁ କଲେଜ ହଷ୍ଟେଲରେ ନ ରହି ପୁରୀଠାରେ ଜ୍ୟେଷ୍ଠଭ୍ରାତାଙ୍କ ବସାରେ ରହିଥିଲି ଓ ବିଶ୍ୱବିଦ୍ୟାଳୟ ପରୀକ୍ଷା ପାଇଁ ନିଜକୁ ପ୍ରସ୍ତୁତ କରୁଥିଲି । ପ୍ରାୟ ଦୁଇମାସ କାଳ ମୋତେ ଏ ପରୀକ୍ଷାପାଇଁ କଠିନ ପରିଶ୍ରମ କରିବାକୁ ହୋଇଥିଲା । ଜନନୀ ମଧ୍ୟ ଏହି ସମୟରେ ଏହି ବସାରେ କ୍ଷେତ୍ରବାସ କରିଥିଲେ । ବିଶ୍ୱବିଦ୍ୟାଳୟ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉ ହେଉ ମୁଁ ମହାମାୟାଙ୍କ ବିଧାନରେ ଅନ୍ୟ ଏକ ଅପ୍ରତ୍ୟାଶିତ ପରୀକ୍ଷାର ସମ୍ମୁଖୀନ ହୋଇପଡ଼ିଲି । ପଡ଼ିଶା ଘରର ପରସ୍ପରର ଦୂର ସଂପର୍କିତା ଭଗିନୀ ଦୁଇଜଣ ଷୋଡ଼ଶୀ ପଡ଼ାଘରର ବାତାୟନ ପଥରେ ମୋର ଦୃଷ୍ଟି ଆକର୍ଷଣ କରିବାରେ ଲାଗିଲେ । ଯେଉଁ ଯେଉଁ ବିଭ୍ରମରେ ଆକର୍ଷଣ ଅମୋଘ ହୁଏ ଅତି ଅକୁଣ୍ଠ ମନରେ ସେମାନେ ତାହା ମୋର ଦୃଷ୍ଟିର ଗୋଚରୀଭୂତ କରାଇ-ବାରେ ଲାଗିଲେ । ମୁଁ ତଳକୁ ମୁହଁ କରି ପୁସ୍ତକ ପାଠ କଲେ ବାତାୟନ ବାଟେ ସେମାନଙ୍କ ନିକ୍ଷିପ୍ତ ପୁଷ୍ପ ବା ଉପଲ ମୋ ନିକଟରେ ପତିତ ହେଉଥିଲା । ମୁଁ କେବଳ ଶାନ୍ତ ଭାବରେ ସେମାନଙ୍କ ଆଡ଼କୁ ଗୃହିଁ ରହିଲେ ସେମାନେ ସନ୍ତୁଷ୍ଟ ହୋଇ ଅତ୍ୟନ୍ତ ବିମୋହନ ଚିତ୍ତ-ବିଦ୍ରାବକ ବିଭ୍ରମାବଳୀରେ ମୋତେ ହତଧୃତି କରିବାରେ ଲାଗୁଥିଲେ । ମୋ ଅନ୍ତରରେ ପ୍ର—ର ପ୍ରୋଜ୍ଜ୍ୱଳ ମୂର୍ତ୍ତି ବିରାଜିତ ଥିବାରୁ ମୁଁ ଏ ପ୍ରେମାକାଙ୍କ୍ଷିଣୀ ଦୁହିଁଙ୍କ ପ୍ରତି ଯୁବୋଚିତ କର୍ତ୍ତବ୍ୟ କରିପାରିନାହିଁ । ସେମାନଙ୍କ ଦୁଇମାସବ୍ୟାପିନୀ ଏ ପ୍ରେମପ୍ରଚେଷ୍ଟା ବନ୍ଧ୍ୟାତ୍ୱପ୍ରାପ୍ତା ହୋଇଥିଲା । ମୁଁ ଖଞ୍ଜ ବୋଲି ଜାଣି ମଧ୍ୟ ସେମାନେ ମୋ ରୂପଶ୍ରୀରେ ଅତ୍ୟନ୍ତ ବିମୋହିତା ହୋଇଥିଲେ । ଏହି ଅତ୍ୟନ୍ତ ସୁକୁମାର ବିଷୟରେ ମୁଁ ସେମାନଙ୍କ ଉତ୍କଟ ନୈରାଶ୍ୟର କାରଣ ହୋଇଥିବାରୁ ମୋର ଏ ଦାରୁଣତାକୁ କ୍ଷମା କରିବା ପାଇଁ ନୀଳାଚଳନାଥ

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କଠାରେ ପ୍ରାର୍ଥୀ ହୋଇଅଛି । ସେ ଅବଶ୍ୟ ମୋର ଦୋଷାଦୋଷ ବିଚାର କରିବେ । ଏତାଦୃଶ ସଙ୍କଟରେ ତାଙ୍କର ଦୟାହିଁ ଅସହାୟ ମନୁଷ୍ୟର କବଚ । ଉକ୍ତ ରମଣୀଦ୍ୱୟ ବର୍ତ୍ତମାନ ସୁସନ୍ତାନବତୀ ଗୃହିଣୀ ।

ପ୍ରଥମ ବାର୍ଷିକ ଶ୍ରେଣୀରେ ଦୁଇଟି ମାତ୍ର ତ୍ରୈମାସିକ ପରୀକ୍ଷା ଦେଲାପରେ ପୂରା ଦୁଇବର୍ଷ ପରେ ଦ୍ୱିତୀୟ ବାର୍ଷିକ ଶ୍ରେଣୀର ପରିବର୍ତ୍ତିତ ପାଠ୍ୟ ଆୟତ୍ତ କରି ପରୀକ୍ଷା ଦେଇଥିବାରୁ ମୁଁ ଦ୍ୱିତୀୟ ବିଭାଜନ ବା (ଡିଭିଜନ)ରେ ଉତ୍ତୀର୍ଣ୍ଣ ହୋଇଥିଲି । ଉପରୋକ୍ତ ପ୍ରେମାକାଙ୍କ୍ଷିଣୀମାନଙ୍କ କ୍ରିୟାକଳାପ ମୋ ପରୀକ୍ଷାଫଳକୁ କିଞ୍ଚିତ୍ ପରିମାଣରେ ମଧ୍ୟ ନିୟମିତ କରିଥିବ । କିନ୍ତୁ ତାହା ସର୍ବସାଧାରଣଙ୍କୁ ଅଜ୍ଞାତ । ମୋର ଦ୍ୱିତୀୟ ବିଭାଜନ ହୋଇଯିବାରେ ମୁଁ ଆଦୌ ସମାଲୋଚିତ ହୋଇନାହିଁ । ବରଂ ଅନେକେ ମୋ ପ୍ରତି ସହାନୁଭୂତିଶୀଳ ହୋଇଥିଲେ ଏବଂ ମଝିରେ ଦୁଇବର୍ଷକାଳ ଗତ ହେଲାପରେ ଦ୍ୱିତୀୟ ବାର୍ଷିକ ଶ୍ରେଣୀରେ ପୁନଶ୍ଚ ପାଠାରମ୍ଭ କରିଥିବାରୁ ମୋ ପାଖକୁ ମଧ୍ୟ କୃତିତ୍ୱ ବୋଲି ଜ୍ଞାନ କରିଥିଲେ । ମୁଁ ତୃତୀୟ ବାର୍ଷିକ ଶ୍ରେଣୀରୁ ବି.ଏ. ରେ ଇଂରାଜୀରେ ଅନର୍ସ ପାଠ୍ୟ ପଢ଼ିଲେ ଯେ ପାଟଣା ବିଶ୍ୱବିଦ୍ୟାଳୟରେ ବହୁ ବହୁ ବର୍ଷର କୃତୀ ଛାତ୍ରଙ୍କ ଯଶକୁ ମ୍ଳାନ କରି ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଅନର୍ସ ଲାଭ କରିବି ଏହା ସ୍ୱତଃହିଁ ମୋ ମନକୁ ତଥା ଅନ୍ୟାନ୍ୟଙ୍କ ମନକୁ ଆସିଥିଲା । ପ୍ର—ପାଇଁ ମୋତେ ସବୁ ଅସାଧ୍ୟକୁ ସାଧ୍ୟ କରି କପରି ଧନ୍ୟ ପଦବୀର ଅଧିକାରୀ ହେବାକୁ ପଡ଼ିବ ତାହାର ଉପାୟ ବର୍ତ୍ତମାନ ମୋ ମନକୁ ଘାରିଲା । ପୁଣ୍ୟମୟୀ ଜନନୀ ଶ୍ରୀଜଗନ୍ନାଥଙ୍କ ପଦାରବିନ୍ଦରେ ମୋ ଅଭ୍ୟୁଦୟ ପାଇଁ ଅତ୍ୟନ୍ତ ଆକୁଳ ନିବେଦନ କରିବାରେ ଲାଗିଲେ । ପୁରୋଦୃଷ୍ଟି ବଳରେ ସେ ଉଚ୍ଚତର ଶିକ୍ଷାକାମନାରେ ମୋ ଆଗାମୀ ଦୁର୍ଦ୍ଧମ ପ୍ରଚେଷ୍ଟାର ଚିତ୍ର ଦେଖିପାରୁଥିଲେ ।

## ନବମ ଅଧ୍ୟାୟ

ଇଂରାଜୀରେ ଅନର୍ସ ସହିତ ବି. ଏ. ପଢ଼ିବାକୁ ଯିବାରେ ଜନନୀଙ୍କ ଭବିଷ୍ୟଦ୍‌ବାଣୀ ଅନୁସାରେ ହିମାଳୟୋପମ ଏତାଦୃଶ ପ୍ରତିବନ୍ଧକ ଆସି ଉପସ୍ଥିତ ହେଲା ଯେ ମୋ ମନରେ ପ୍ର—ର ଲାଭ ପାଇଁ ଯଦି ପ୍ରାଣମୂର୍ଚ୍ଛା ସଂକଳ୍ପ ନ ଥାନ୍ତା ତାହାହେଲେ ବୋଧହୁଏ ମୁଁ ଶରୀରଂ ପାତୟେୟତ୍ ବା କାର୍ଯ୍ୟଂ ସାଧୟେୟତ୍ ନୀତିରେ ଅଗ୍ରସର ହୋଇପାରିନଥାନ୍ତି । ପରୀକ୍ଷାଫଳ ପ୍ରକାଶିତ ହେବାମାତ୍ରେ ଅଧିକ ପାଠ ପଢ଼ିବାକୁ ଜ୍ୟେଷ୍ଠଭ୍ରାତା ମନା କରିଦେଲେ ଏବଂ ଏଣିକି ଏକ କପର୍ଦ୍ଦକମାତ୍ର ସେ ସାହାଯ୍ୟ କରିପାରିବେ ନାହିଁ ବୋଲି ଦୃଢ଼ ଭାବରେ ଘୋଷଣା କରିଦେଲେ । ଏ ଘୋଷଣା ପରେ ମୁଁ ତାଙ୍କ ବସାରେ ଯେତେଦିନ ରହିଲି ସେ ଦିନଗୁଡ଼ାକତୁଲ୍ୟ ମର୍ମବିଦାରକ ଅନୁଭୂତିପୂର୍ଣ୍ଣ ଦିନ ଏ ଜୀବନରେ ଅତୀତରେ ଆଉ କେବେ ଘଟିଥିବା ମୋ ମନେ ହେଉନାହିଁ । ପ୍ର—ବିଷୟରେ ଜନନୀ କୌଣସି ତଥ୍ୟ ଅବଗତ ହୋଇ ନ ଥିଲେ ହେଁ ମୁଁ ଉଚ୍ଚଶିକ୍ଷାରେ ତୁଙ୍ଗ ବୈଶିଷ୍ଟ୍ୟ ଅର୍ଜନ କରି ଦେଶବିଶ୍ରୁତ ହେବା ପାଇଁ ତାଙ୍କର ପିପାସା ରହିଥିଲା । ଜୀବନରେ ମୋ

କଲ୍ଟନାର ଦୌଡ଼ ସଙ୍ଗେ ତାଳ ପକାଇ ଧାଇଁବାର ଲୋକ ଥିଲେ ଏକା ସେ । ଜନନୀଙ୍କର ଅନେକ ସନ୍ତାନ ମୃତ ହେଲାପରେ ଅବଶେଷ ରହିଥିଲୁ ଆମ୍ଭେ ପାଞ୍ଚଜଣ :—ଜ୍ୟେଷ୍ଠଭ୍ରାତା (ପଦ୍ମଚରଣ), ଜ୍ୟେଷ୍ଠା ଭଗିନୀ (ଇଚ୍ଛାବତୀ), ସ୍ୱୟଂ (ବଞ୍ଛନିଧିଚରଣ), କନିଷ୍ଠା ଭଗିନୀ (ନଶାମଣି), କନିଷ୍ଠ ଭ୍ରାତା (କାଳୀଚରଣ) । ଜନନୀଙ୍କର ପ୍ରାୟ ସବୁଗୁଣ ଉତ୍ତରାଧିକାରିତ୍ୱସ୍ୱରେ ପ୍ରାପ୍ତ ହୋଇଥିଲି ଏକା ମୁଁ । ଭଗିନୀ ନଶାମଣି ଜନନୀଙ୍କ ସହିତ ଓ ମୋ ସହିତ ସର୍ବଦା ଏକମତ ହେଉଥିଲା । ଅପର ତିନିଜଣଙ୍କର ପ୍ରକୃତି ଓ ନୀତି ଅଭିନ୍ନ ଥିଲା । ଜନକ ଆମ୍ଭ ଦୁହିଁଙ୍କ ସହିତ ଏକମତ ଥିଲେ ସତ୍ୟ—ତଥାପି ସେ କଠୋର ଭାବରେ କାହାକୁ କିଛି କହୁ ନ ଥିଲେ । ଜନନୀ ଓ ମୁଁ ଆଗ୍ନେୟଗିରି ହୋଇପାରୁଥିଲୁ କିନ୍ତୁ ଉଷ୍ମା ଜନକଙ୍କ ଜାତକରେ ନ ଥିଲା । ଜନକଙ୍କ ଶାନ୍ତ ଗୁଣ ନଶାମଣିଠାରେ ମଧ୍ୟ ଥିଲା ।

ମୋ ଜୀବନର ଏ ସନ୍ଧିକ୍ଷଣରେ ଜନନୀ ନୀଳାଚଳଧାମରେ ଥାଇ ଶ୍ରୀଜଗନ୍ନାଥଙ୍କ ଚରଣରେ ଶରଣାପନ୍ନ ହେଲେ । ଦିପହରରେ ସେ କେବଳ ମୋ ଦୁଃଖ ଜଣା କରିବାକୁ ସ୍ୱତନ୍ତ୍ର ଭାବରେ ପ୍ରତ୍ୟହ ଶ୍ରୀମନ୍ଦିରକୁ ଯାଉଥିଲେ ଓ ମହାପ୍ରଭୁଙ୍କ ପ୍ରସାଦ ଧଣ୍ଡା ଆଣି ମୋତେ ଅର୍ପଣ କରୁଥିଲେ ।

ଏକେ ଖଞ୍ଜ ଥିବାରୁ ଅକ୍ଷମ, ଦ୍ୱିତୀୟରେ ପୂରାପୂରି ଅର୍ଥହୀନ । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ବ୍ୟତୀତ ସଂସାରରେ ଆଗକୁ ଟେକିକୁ କେହି ନାହିଁ । ଆଉ ଅଧିକ ପଢ଼ାରେ ସହାୟତା ନ କରିବାକୁ ଜ୍ୟେଷ୍ଠଭ୍ରାତା କଲେ ନିଦାରୁଣ ଘୋଷଣା । କେବଳ ପ୍ର—ର ମଧୁମୟୀ ମୂର୍ତ୍ତି ମନଶ୍ଚକ୍ଷୁ ସମ୍ମୁଖରେ ପ୍ରେରଣାଦାତ୍ରୀରୂପେ ଦଣ୍ଡାୟମାନା । ଦିନେ ମୁଁ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ନାମ ଉଚ୍ଚାରଣ କରି ଓ ଜନନୀଙ୍କ ପଦଧୂଳି ଗ୍ରହଣପୂର୍ବକ ଭ୍ରାତୃ ଆଶ୍ରୟରୁ ଚିରବିଦାୟ ଗ୍ରହଣ କଲି । ଗ୍ରାମାଭିମୁଖରେ ଜନକଙ୍କ ସାନ୍ନିଧ୍ୟକୁ ପ୍ରୟାଣ କରିବା ଥିଲା ମୋର ଅଭିପ୍ରାୟ ।

କଟକକୁ ଗମନ କରି ଥରେ ଭାଗ୍ୟ ପରୀକ୍ଷା କରି ଆସିବି ବୋଲି ମୁଁ ଜନକଙ୍କ ଆଶୀର୍ବାଦ ଭିକ୍ଷା କଲି । ସେ ମୋର ସହଯାତ୍ରୀ ହେବାକୁ ଉଦ୍ୟତ ହେଲେ ଏବଂ ତାଙ୍କ ଅଶ୍ରୁସିକ୍ତ ଚକ୍ଷୁବାଟେ ମୁଁ ଦେଖିପାରୁଥିଲି ତାଙ୍କ ଅନ୍ତରସ୍ଥ ବାତ୍ସଲ୍ୟର ଉଲ୍ଲୋଳ ପୟୋନିଧି ।

ମନେଅଛି କଟକରେ ଥିବା ଖୋର୍ଦ୍ଧା ମେସ ନାମକ ସ୍ଥାନରେ ଆମେ ଦୁହେଁ ଖର୍ଚ୍ଚ ଦେଇ ରହିଥିଲୁଁ ପରବର୍ତ୍ତୀ ଦିନର ସକାଳ ୧୦ ଘଣ୍ଟା ପର୍ଯ୍ୟନ୍ତ ।

ତାପରେ ବଗି ଖଣ୍ଡିଏ ଭଡ଼ାକରି ମୋ କହିବାନୁସାରେ ଦୁହେଁ ଗଲୁ ରାଭେନ୍ସା କଲେଜର ପୂର୍ବପଠ ହଷ୍ଟେଲକୁ ଯହିଁରେ କି ମୋତେ ବିଶେଷ ଭାବରେ ସ୍ନେହ କରୁଥିବା ସଂସ୍କୃତ ଓ ଓଡ଼ିଆ ଭାଷାର ଅଧ୍ୟାପକ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ଥିଲେ ସୁପରିଣ୍ଟେଣ୍ଡେଣ୍ଟ ବା ଅଧ୍ୟକ୍ଷ । ଡକ୍ଟର ମହାନ୍ତି ମହୋଦୟ ଜନକଙ୍କ ସହିତ ମୋତେ ଆଗତ ଦେଖି ମୁଁ କାହିଁକି ସେ ପର୍ଯ୍ୟନ୍ତ ଅର୍ଥାତ୍ କଲେଜ ଖୋଲିବାର ପନ୍ଦର ଦିନ ପର୍ଯ୍ୟନ୍ତ ନାମ ଲେଖାଇ ନାହିଁ ବୋଲି ପଚାରିଲେ । ପୁନଶ୍ଚ କହିଲେ ଯେ ବିଶ୍ୱବିଦ୍ୟାଳୟର ଓଡ଼ିଆ ପରୀକ୍ଷକ ମୋ ଲେଖାରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ମୋତେ ଶହେ ନମ୍ବରରୁ ଶହେ ନମ୍ବର ଦେବାକୁ ଇଚ୍ଛା କରୁଥିଲେ । ପରେ କେତେଜଣ ସଙ୍ଗୀ ଅଧ୍ୟାପକଙ୍କ ପରାମର୍ଶରେ ଲୋକଦେଖାଣିକୁ ତେର ନମ୍ବର ମାତ୍ର କମାଇ ସତାଅଶି ନମ୍ବର ଦେଇଥିଲେ । ସେ ନିଜେ ମଧ୍ୟ ସଂସ୍କୃତ ଉତ୍ତରରେ ଇଂରାଜି ଅନୁବାଦ ଅଂଶରେ ମୋତେ ପଚିଶରୁ ପୂରା ପଚିଶ ନମ୍ବର ଦେଇଥିଲେ । ପଢ଼ିଲେ ଭବିଷ୍ୟତରେ ମୁଁ ଯେ ଯଶସ୍ୱୀ ହୋଇ ସୁଖରେ ଦିନାତିପାତ କରିପାରିବି ଏ ଆଶ୍ୱାସନା ଦେଇ ସେ ମୋତେ ସମୁତ୍ସାହିତ କରିଥିଲେ ।

ମୁଁ ମୋ ପାରିବାରିକ ସ୍ଥିତି ତାଙ୍କୁ ପୂର୍ଣ୍ଣ ଭାବରେ ବୁଝାଇ ଦେଲି । ଜନକ ମଧ୍ୟ ତାଙ୍କ କରରେ ମୋ ଭାଗ୍ୟ ସମର୍ପଣ କରିଦେଲେ ।

ଡକ୍ଟର ମହାନ୍ତି ଦୁଃସ୍ଥ ପ୍ରତିଭାଶାଳୀ ଛାତ୍ରଙ୍କ ବନ୍ଧୁ ଥିଲେ । ସେ ନିଜର ବ୍ୟକ୍ତିଗତ ପ୍ରଭାବ ବଳରେ ମୋତେ ଗୋଟିଏ ମେସ୍‌ରେ ବିନା ଦେୟରେ ମୋର ଖିଆପିଆର ବ୍ୟବସ୍ଥା କରାଇଦେଲେ । ମେସ୍‌ରେ ଥିବା ଛାତ୍ରମାନେ ମୋତେ ଏପରି ସାହାଯ୍ୟ କରୁଥିବାରୁ ଆପଣାକୁ ଗୌରବାନ୍ୱିତ ମନେକଲେ । କଲେଜ ଓ ହଷ୍ଟେଲରେ ନାମ ଲେଖାଇବା ଟଙ୍କା ସେ ନିଜ ହାତରୁ ଦେଲେ ଓ ପରେ ନିଜ ପ୍ରଭାବ ଖଟାଇ ଛାତ୍ରଦତ୍ତ ବେତନାଦି ଦେବା ଦାୟିତ୍ୱରୁ ମୋତେ ମୁକ୍ତ କରାଇ-ଦେଲେ । ସେତେବେଳକୁ ସେ ପ୍ରାଚୀନ ତାଳପତ୍ର ପୋଥି-ସବୁ ସଂଗ୍ରହ କରି ପ୍ରାଚୀନ ଓଡ଼ିଆ ସାହିତ୍ୟକୁ ବିଲୁପ୍ତି-ମୁଖରୁ ସମୁଦ୍ଧାର କରିବାକୁ ଯତ୍ନ କରୁଥିଲେ । ସେ ସେ କାର୍ଯ୍ୟରେ ମୋତେ ତାଙ୍କ ସହକାରୀ ରୂପେ ଗ୍ରହଣ-କରି ସମୟେ ସମୟେ ମୋତେ କିଛି କିଛି ଅତିରିକ୍ତ ଆର୍ଥିକ ସାହାଯ୍ୟ ମଧ୍ୟ ଦେଉଥିଲେ । କଲେଜରେ ଡକ୍ଟର ମହାନ୍ତିଙ୍କୁ ବଳି ବଡ଼ ପାହ୍ୟାର ବହୁତ ଅଧ୍ୟାପକ ଥିଲେ । କିନ୍ତୁ ହୃଦୟବତ୍ତାରେ ଡକ୍ଟର ମହାନ୍ତି ପ୍ରାୟ ସମସ୍ତଙ୍କଠାରୁ ବଡ଼ ଥିଲେ । ଦୁଃସ୍ଥ ପ୍ରତିଭାର ସେ ଥିଲେ ଅକୃତ୍ରିମ ସହାୟକ । ଭବିଷ୍ୟତ ଜୀବନରେ ସରକାରି ଚାକିରି ଆଧାରରେ ଉଚ୍ଚ ପାହ୍ୟା ଲାଭ କରି-ଥିବା ବହୁ ବ୍ୟକ୍ତି ତାଙ୍କ ଅକୁଣ୍ଠ ସହାୟତା ଓ ଦାନର ପାତ୍ର ହୋଇଥିବା ମୋତେ ଜଣାଅଛି । ତାଙ୍କ ପ୍ରାଚୀନ ସାହିତ୍ୟସଂରକ୍ଷା ବ୍ରତ ଯୋଗୁଁ ସେ ଉତ୍କଳରେ ସମଧିକ ପ୍ରଖ୍ୟାତ । ତାଙ୍କ ଜନହିତୈଷଣା ବେଶି ଲୋକ ଜାଣିବାର ସୁଯୋଗ ପାଇନାହାନ୍ତି ।

ମୁଁ କଲେଜ ଶିକ୍ଷାରେ ସଂସ୍ଥାପିତ ହୋଇସାରିଲା ପରେ ଜ୍ୟେଷ୍ଠଭ୍ରାତା ମୋ ପ୍ରତି ମୌଖିକ ଅନୁକୂଳ ଭାବ ପ୍ରଖ୍ୟାପନ କରିଥିଲେ ଏବଂ ତାଙ୍କ ସହିତ କଟକଠାରେ ଜନନୀ ରହୁଥିବାରୁ ମୁଁ ତାଙ୍କ ବସାକୁ ନିର୍ବାଧରେ ଯିବାଆସିବା କରୁଥିଲି । ଜ୍ୟେଷ୍ଠ ଭ୍ରାତାଙ୍କ ବସାରେ ମୁଁ ସ୍ୱର୍ଗତା ନାରୀକବି କୁନ୍ତଳାକୁମାରୀଙ୍କ ସହିତ ପରିଚିତ ହୋଇଥିଲି ଓ ତତ୍କାଳୀନ ମୁକୁର ପତ୍ରିକାରେ ମୋର ଲେଖାବିଶେଷ ପାଠକରି ସେ ଅତ୍ୟନ୍ତ ଆପ୍ୟାୟିତ ହୋଇଥିଲେ ବୋଲି ମୋତେ କହିଥିଲେ । ଓଡ଼ିଆରେ ମୋ ଗଦ୍ୟ ଲେଖାର ଶୈଳୀରେ ପଦ୍ୟର ସବୁ ଉପାଦାନ ଥିଲା ବୋଲି କହି ସେ ମୋତେ ଉଚ୍ଛ୍ୱସିତ ଅଭିନନ୍ଦନ କରିଥିଲେ । ଚିକିତ୍ସା ପାଇଁ ଆହୂତା ହୋଇ ସେ ଜ୍ୟେଷ୍ଠଭ୍ରାତାଙ୍କ ବସାକୁ ଆଗମନ କରିଥିଲେ ।

ତୃତୀୟ ବାର୍ଷିକ ଶ୍ରେଣୀରେ ଅଧ୍ୟୟନ କଲା ସମୟରୁ ପ୍ରାଚୀନ ବା ଜାତୀୟ ଓଡ଼ିଆ ସାହିତ୍ୟର ସମୁଦ୍ଧାର ଓ ଶିକ୍ଷିତଗୋଷ୍ଠୀର ତତ୍ପ୍ରତି ଆଦର ଓ ସମ୍ମାନ ସୃଷ୍ଟି ପାଇଁ ମୋତେ ଯେ ଭବିଷ୍ୟତରେ ସଂଗ୍ରାମ କରିବାକୁ ପଡ଼ିବ ଏହା ମୁଁ ପୂର୍ଣ୍ଣଭାବରେ ଉପଲବ୍‌ଧି କରିଥିଲି । ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ମଧ୍ୟ ମୋ ଯୋଦ୍ଧୃବୃତ୍ତିର ପରିଚୟ ଲାଭକରି ମୋ ପ୍ରତି ଦିନକୁ ଦିନ ଅଧିକରୁ ଅଧିକ ଆକୃଷ୍ଟ ଓ ସ୍ନେହଶୀଳ ହେଲେ । ଜାତୀୟ ସାହିତ୍ୟ ସଂରକ୍ଷାରେ ସେ ତତ୍କାଳୀନ ଛାତ୍ର ସ୍ୱର୍ଗତ ଅମରବଲ୍ଲଭ ଦେ, ଏମ୍.ଏ., ବି.ଏଲ୍., ଡକ୍ଟର କରୁଣାକର କର, ଏମ୍.ଏ. ଓ ଶ୍ରୀ ଜଗଦାନନ୍ଦ ମହାନ୍ତି ବି.ଏ. (ଅନର୍ସ)ଙ୍କୁ ନିଜର ସମର୍ଥ ସହକାରୀ ରୂପେ ବାଛିଥିଲେ । ମୋ ଭଳି ଜଣେ ଯଶସ୍ୱୀ ସହକାରୀ ଲାଭ କରିବାରେ ତାଙ୍କ ଆନନ୍ଦ ପୂର୍ଣ୍ଣାଙ୍ଗ ହୋଇଥିଲା । ବ୍ରିଟିଶପୂର୍ବଯୁଗ ସାହିତ୍ୟକୁ ମୁଁ ଜାତୀୟ ସାହିତ୍ୟ କହୁଥିଲି । ବ୍ରିଟିଶ ଅଧିକାର ପରେ ରାଧାନାଥ ଯୁଗ ଓ ଆଧୁନିକ ଯୁଗ ସାହିତ୍ୟ ବ୍ରିଟିଶ ଓ ବଙ୍ଗାନୁକରଣପର ହୋଇଥିବାରୁ ମୁଁ ତାକୁ କହୁଥିଲି ବିଜାତୀୟ ସାହିତ୍ୟ । ଏ ବିଚାରରେ ମୁଁ ଥିଲି ଅତ୍ୟନ୍ତ ଚରମପନ୍ଥୀ । ଡକ୍ଟର

ମହାନ୍ତି ସେହିଦିନୁ କଳନା କରିପାରିଥିଲେ ଯେ ଭବିଷ୍ୟତରେ କବିସମ୍ରାଟ ଉପେନ୍ଦ୍ରଭଞ୍ଜାଦି ମହାକବି-ମାନଙ୍କ କୃତିମାନ ମୋଦ୍ୱାରା ହିଁ ଇଂରାଜୀ ଭାଷାରେ ଅନୂଦିତ ହୋଇ ବିଶ୍ୱ ସାରସ୍ୱତ ଦରବାରରେ ସମୁଚିତ ଗୌରବ ଅର୍ଜନ କରିବ ଏବଂ ତଦ୍ୱାରା ଉତ୍କଳ ଧନ୍ୟପଦବୀବିଭୂଷିତ ହେବ । ମୋର ଏହିପରି ପ୍ରସ୍ତୁତ ହେବାକୁ ଲାଗିଲି ଯେ ସେଭଳି କୌଣସି ଗୁରୁତର ପ୍ରତ୍ୟବାୟ ଦୈବଗତ୍ୟା ଉପସ୍ଥିତ ନ ହେଲେ ମୋ ଉଚ୍ଚଶିକ୍ଷା ଲାଭ ଆଉ ବ୍ୟାହତ ହୋଇପାରିବ ନାହିଁ । ଉକ୍ତର ମହାନ୍ତି ପ୍ରଭୃତି ଯେଉଁମାନେ ମୋତେ ଏବେ ଜାଣିପାରିଲେଣି ସେମାନେ ମୋ ପ୍ରତିଭାପ୍ରଦୀପକୁ କଦାଚ ନିଭିଯିବାକୁ ଦେବେନାହିଁ ।

ଏହିପରି ବୈଷୟିକ ଦିଗରୁ ନାନା ଭାବରେ ବଞ୍ଚିତ ହୋଇଥିଲେ ସୁଦ୍ଧା ମା କଳିଙ୍ଗଭାରତୀଙ୍କ ଦୟାରୁ ପ୍ରାପ୍ତ ପ୍ରତିଭାଯୋଗୁଁ ସବିଶେଷ ସମ୍ମାନିତ ହୋଇ ମୁଁ ତୃତୀୟ ବାର୍ଷିକ ଶ୍ରେଣୀ ଅତିକ୍ରମ କଲି ।

ଚତୁର୍ଥ ବାର୍ଷିକ ଶ୍ରେଣୀ ଆରମ୍ଭ ହେବା ପୂର୍ବରୁ ଦୀର୍ଘ ତିନିମାସ କାଳ ଗ୍ରୀଷ୍ମାବକାଶ । ଉକ୍ତର ମହାନ୍ତିଙ୍କ ସହକାରିତା କରି ଜାତୀୟ ସାହିତ୍ୟ ସଂରକ୍ଷା କାର୍ଯ୍ୟରେ ମୁଁ ଅବକାଶକୁ ବ୍ୟୟିତ କରିଥିଲି । ଏହି ସମୟରେ ମୋ ଛାତ୍ରଜୀବନକୁ ଆହୁରି ସୁଗମ ଓ ସମ୍ୟକ୍ ଗୌରବାନ୍ୱିତ କରିବାକୁ ଗୋଟିଏ ଅନନ୍ୟସାଧାରଣ ଘଟଣା ଉପସ୍ଥିତ ହେଲା । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀଚରଣତଳେ ମୋ ପୁଣ୍ୟବତୀ ଜନନୀ ମୋ ଅଭ୍ୟୁଦୟ ବିଧାନ କରିବାକୁ ଯେଉଁ ଆକୁଳ ପ୍ରାର୍ଥନା କରିଥିଲେ, ତାହା ପ୍ରଥମେ ଉକ୍ତର ମହାନ୍ତିଙ୍କ କୃପାଦୃଷ୍ଟି ଓ ଦ୍ୱିତୀୟରେ ଏହି ପୂର୍ଣ୍ଣ ଅପ୍ରତ୍ୟାଶିତ ଘଟଣାଦ୍ୱାରା ସାର୍ଥକ ଓ ଫଳାନ୍ୱିତ ହୋଇଥିଲା । ମୋର ଏ ଜଗତର ଜନନୀ ମାନବସୃଷ୍ଟିର ସକଳ ଜଗତର ଜନକଙ୍କ ନିକଟରୁ ମୋ ନିମନ୍ତେ ଏପରି ଏକ ଭାସ୍ୱର ଗୌରବଟୀକା ମାଗିଆଣିଲେ, ଯାହା କି ଜାତିର ଖୁବ୍ ବଡ଼ ବଡ଼ ଲୋକଙ୍କ ଛାତ୍ରଜୀବନରେ କ୍ୱଚିତ୍ ଘୁଟିଥାଏ । ଯେ ତାମସ ଭିତରୁ ନେଇ ଜ୍ୟୋତିରେ ଉପନୀତ କରାନ୍ତି ସେ ଜଗନ୍ନାଥ ମହାପ୍ରଭୁ ପରମ ଧର୍ମପରାୟଣା ମୋ ଜନନୀଙ୍କ ଆକୁଳ ଗୁହାରିକି ଶୁଣିଥିଲେ ଏବଂ ଛାତ୍ରାବସ୍ଥାରୁ ମଧ୍ୟ ମୋ ବଦ୍‌ବନ୍ଧୁ ଯେପରି ଅତି ଉଚ୍ଚ ପଦାରୂଢ଼ ବ୍ୟକ୍ତିମାନଙ୍କ ସ୍ୱୀକୃତି ଲାଭ କରେ ତହିଁର ପଥ ଉନ୍ମୁକ୍ତ କରି-ଦେଇଥିଲେ ।

ସେହି ୧୯୨୪ ମସିହାରେ ପୁରୀ ଜିଲ୍ଲାର ମାଜିଷ୍ଟ୍ରେଟ ଓ କଲେକ୍ଟର ସ୍ୱର୍ଗତ ଦେଓ୍ୱାନ ବାହାଦୁର ଦୟାନିଧି ଦାସଙ୍କ ଏକମାତ୍ର ପୁତ୍ର ସ୍ୱର୍ଗତ ନିମାଇଁଚରଣ ଦାସ ଆଇ. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ଦାୟାନିଧି ଦାସଙ୍କର ଇଚ୍ଛା ଥିଲା ତାଙ୍କ ପୁତ୍ର ବି.ଏ. ରେ ଇଂରାଜୀ ଅନର୍ସ ନେଇ ପାସ୍ କରୁ । ଦୟାନିଧି ଦାସ ଇଂରାଜୀ ଅମଳର ଜଣେ ଅତି ଠାଣୁଆ ଅଫିସର ଥିଲେ ଏବଂ ବ୍ରିଟିଶ ସରକାରଙ୍କର ଅଖଣ୍ଡ ବିଶ୍ୱାସଭାଜନ ଥିଲେ । ତତ୍କାଳୀନ ଭାରତରେ ଏକାଧିକ ଗୋରା ଗଭର୍ଣ୍ଣରଙ୍କ ସହିତ ତାଙ୍କର ଏକାନ୍ତ ସୌହାର୍ଦ୍ଦ ଥିଲା । ଏକମାତ୍ର ପୁତ୍ରକୁ ଯୋଗ୍ୟ କରାଇ ପ୍ରତିଯୋଗିତାରେ ନ ହେଲେହେଁ ଅନୁଗ୍ରହୀ ମନୋନୟନରେ ମଧ୍ୟ ଯେ ଆଇ.ସି.ଏସ. କରି ନିଆଯିବ ଏଥିପାଇଁ ଲର୍ଡବଂଶୀୟ ଜଣେ ଗଭର୍ଣ୍ଣର ତାଙ୍କୁ ନିର୍ଭର ଜବାବ ଦେଇଥିଲେ ।

ପୁତ୍ରପାଇଁ ଇଂରେଜରେ ଜଣେ ଦକ୍ଷ ଅଧ୍ୟାପକଙ୍କୁ ଗୃହଶିକ୍ଷକରୂପେ ଦୁଇବର୍ଷ ପାଇଁ ନିଯୁକ୍ତ କରିବାକୁ ସେ କଟକ ଆସି ଉକ୍ତର ମହାନ୍ତିଙ୍କ ଘରେ ଅତିଥି ହେଲେ । ସେତେବେଳେ ରାଭେନ୍‌ସ କଲେଜରେ ଏତେ ଅଧ୍ୟାପକ ନ ଥିଲେ । ଗୋପାଳଚନ୍ଦ୍ର ଗାଙ୍ଗୁଲି, ବରଦାକାନ୍ତ ଚଟ୍ଟର୍ଜୀ, ଗିରିଜାଶଙ୍କର ରାୟ ଓ ଯୋନାଥନ ମହାନ୍ତି ଏହି ଚାରିଜଣ ମାତ୍ର ଇଂରାଜୀ ଅଧ୍ୟାପକ ଥିବାର ମୋର ମନେହେଉଛି । ଦୟାନିଧି ଦାସ ଉପଯୁକ୍ତ ଦରମା ଦେଇ ଏମାନଙ୍କୁ ଜଣ ଜଣ କରି

ତାଙ୍କ ପୁତ୍ରର ଗୃହଶିକ୍ଷକ ହେବାକୁ ଅନୁରୋଧ କରିଥିଲେ । କିନ୍ତୁ ଅନ୍ୟାନ୍ୟ ଧନିକ ବ୍ୟକ୍ତିଙ୍କ ପୁତ୍ରମାନଙ୍କୁ ଗୃହଶିକ୍ଷକ ଭାବରେ ଶିକ୍ଷା ଦେବାକୁ କେତେକେ ଆଗରୁ ବଚନ ଦେଇ ପକାଇଥିବାରୁ ତାଙ୍କ ଅନୁରୋଧକୁ ରକ୍ଷା-କରିବାକୁ ଅସାମର୍ଥ୍ୟ ପ୍ରକାଶ କଲେ—କେତେକେ ଗୃହ-ଶିକ୍ଷକ ହେବାକୁ ମୂଳରୁ ରାଜି ହେଲେନାହିଁ ।

ଦାସ ମହୋଦୟ ଅତ୍ୟନ୍ତ ବ୍ୟଥିତ ହୋଇ ଓକ୍ଟର ମହାନ୍ତିଙ୍କ ପରାମର୍ଶ ଲୋଡ଼ିବାରୁ ସେ ତାଙ୍କୁ କହିଲେ ଯେ ଏ ଅବସ୍ଥାରେ ଚତୁର୍ଥ ବାର୍ଷିକ ଶ୍ରେଣୀର ଇଂରାଜି ଅନର୍ସ ଛାତ୍ର ବାଞ୍ଛାନିଧିଚରଣ ପଟ୍ଟନାୟକ ଉପରେ ନିମାଇଁଚରଣର ଗୃହଶିକ୍ଷକ ଭାର ଦିଆଗଲେ ସେ ସେ କାର୍ଯ୍ୟ ସମ୍ୟକ୍ ଦକ୍ଷତା ସହିତ ତୁଲାଇପାରିବ । ଦାସ ମହୋଦୟ ଓକ୍ଟର ମହାନ୍ତିଙ୍କ କଥାକୁ ହସରେ ଉଡ଼ାଇଦେଲେ । ଏତଦ୍ଦ୍ୱାରା ତାଙ୍କ ପୁତ୍ରର ଅନର୍ସ ପାଇବାର ଆଶା ପରାହତ ହେବ ବୋଲି ସେ ସ୍ପଷ୍ଟ ଆଶଙ୍କା ପ୍ରକାଶ କଲେ ଏବଂ ଚତୁର୍ଥ ବାର୍ଷିକ ଶ୍ରେଣୀର ଛାତ୍ର ଜଣକ ନିଜ କଥା ସମ୍ଭାଳି ନିଜେ ଅନର୍ସ ପାଇ-ପାରିବ କି ନା ତାହା ତାହାର ନିତ୍ୟ ଧ୍ୟେୟ ଥିବାସ୍ଥଳେ ସେ କିପରି ତୃତୀୟ ବାର୍ଷିକ ଶ୍ରେଣୀର ଜଣେ ଅନର୍ସ ଛାତ୍ରର ଅଧ୍ୟାପନା ଭାର ଗ୍ରହଣ କରିବ, ଏ ବିଷୟରେ ସେ ଘୋର ସନ୍ଦିହାନ ହୋଇପଡ଼ିଲେ । ଓକ୍ଟର ମହାନ୍ତିଙ୍କ ସୂଚନାକ୍ରମେ ଦାସ ମହୋଦୟ ଉପରୋକ୍ତ ଅଧ୍ୟାପକମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ମୋ ଯୋଗ୍ୟତାର ସମ୍ଭାବ୍ୟତା ବିଷୟରେ ପ୍ରଶ୍ନ କଲେ ଏବଂ ସେମାନେ କହିଲେ ଯେ, ବାଞ୍ଛାନିଧିଚରଣ ପଟ୍ଟନାୟକ ଜଣେ ଅସାଧାରଣ ପ୍ରତିଭାସମ୍ପନ୍ନ ଛାତ୍ର—ତା ପକ୍ଷରେ ଏ ଭାର ଗ୍ରହଣକରି ଯଥାଯଥ ଭାବରେ ତୁଲାଇବା ଆଦୌ ଦୁରୂହ ନୁହେଁ । ସେ ଆର୍ଥିକ ଅଭାବରେ ବିବ୍ରତ ହେଉଅଛି । କିଛିଏ ସ୍ୱଚ୍ଛଳତା ଲାଭ କଲେ ସେ ଆଶ୍ୱସ୍ତ ହୁଅନ୍ତା—

ତଥାପି ଦାସ ମହାଶୟଙ୍କ ବିଶ୍ୱାସ ହେଲାନାହିଁ । ସେ ଭାବିଲେ, ଏ ଅଧ୍ୟାପକମାନେ ମୋର ଆର୍ଥିକ ଦୁଃସ୍ଥିତିର ପ୍ରତିକାର ପାଇଁ ବୋଧହୁଏ ମୋ ନାମ ସୁପାରିସ କରୁଅଛନ୍ତି । ତହୁଁ ସେ ତାଙ୍କ ବନ୍ଧୁ କଲେଜର ଗୋରା ପ୍ରିନ୍‌ସିପାଲ ମିଷ୍ଟର ହ୍ୱିଟେଲକ୍‌ଙ୍କ ନିକଟକୁ ଯାଇଁ ତାଙ୍କୁ ମୋ ଯୋଗ୍ୟତା ବିଷୟରେ ପ୍ରଶ୍ନ କଲେ । ପ୍ରିନ୍‌ସିପାଲ ଇଂରାଜି ଅଧ୍ୟାପନା କରୁଥିଲେ ଏବଂ ତାଙ୍କ ହାତରେ ଇଂରାଜିରେ ମୁଁ କେବେହେଲେ ଶତକଡ଼ା ଅଶୀ ନମ୍ବରରୁ କମ୍ ନମ୍ବର ପାଉ ନ ଥିଲି । ପ୍ରଥମ ବାର୍ଷିକ ଶ୍ରେଣୀଠାରୁ ମୁଁ ତାଙ୍କ ଦୃଷ୍ଟି ଆକର୍ଷଣ କରିଆସିଥିଲି । ତହୁଁ ସେ ଓକ୍ଟର ମହାନ୍ତି ପ୍ରଭୃତିଙ୍କ ସୁପାରିସକୁ ଅତ୍ୟନ୍ତ ଦୃଢ଼ଭାବରେ ସମର୍ଥନ କଲେ । ଗୋରା ପ୍ରିନ୍‌ସିପାଲଙ୍କ କଥାରେ ଦାସ ମହାଶୟଙ୍କର ଆଉ ତିଳାର୍ଦ୍ଧ ମାତ୍ର ସନ୍ଦେହ ରହିଲାନାହିଁ । ମୁକ୍ତ-ସନ୍ଦେହ ହୋଇ ସେ ଓକ୍ଟର ମହାନ୍ତିଙ୍କ ଆବାସକୁ ପ୍ରତ୍ୟାବର୍ତ୍ତନ କଲେ ।

ଅତ୍ୟନ୍ତ ଉଲ୍ଲସିତ ମନରେ ସେ ଓକ୍ଟର ମହାନ୍ତିଙ୍କୁ କହିଲେ, "ବାଞ୍ଛାନିଧିଚରଣ ପଟ୍ଟନାୟକ ହିଁ ମୋ ପୁତ୍ରର ଗୃହଶିକ୍ଷକ ହେବ କାରଣ ତୁମ୍ଭ କଲେଜ ଅଧ୍ୟାପକମାନଙ୍କ ଛଡ଼ା ସ୍ୱୟଂ ଗୋରା ପ୍ରିନ୍‌ସପାଲ ମିଷ୍ଟର ହ୍ୱିଟେଲକ୍ ମଧ୍ୟ ମୁକ୍ତକଣ୍ଠରେ ଉକ୍ତ ଯୁବକର ଅସାଧାରଣ ଇଂରାଜି ଜ୍ଞାନର ପ୍ରଶଂସା କରୁଅଛନ୍ତି । ପ୍ରଥମେ ମୋର ସନ୍ଦିହାନ ହେବା ସ୍ୱାଭାବିକ ଥିଲା । ମୋତେ କ୍ଷମା କରିବ । ଏ ଯୁବକ ବି. ଏ. ପାସ୍ କଲେ ମୁଁ କମିସନର ସାହେବଙ୍କୁ କହି ତାଙ୍କୁ ଡେପୁଟୀ ମାଜିଷ୍ଟ୍ରେଟ କରି-ଦେବି । ମୋ ପୁତ୍ର ଯଦି ତାଙ୍କ ଅଧ୍ୟାପନାରେ ଇଂରାଜି ଅନର୍ସ ଲାଭ କରେ ତାହାହେଲେ ଡେପୁଟି ମାଜିଷ୍ଟ୍ରେଟ କଅଣ, ତାଠାରୁ ଉଚ୍ଚ ପାହ୍ୟାର ଚାକିରି ଦେବାକୁ ମୁଁ ସ୍ୱୟଂ ଗଭର୍ଣ୍ଣରଙ୍କୁ ମଧ୍ୟ ପରାମର୍ଶ ଦେବି ।"

ଓକ୍ଟର ମହାନ୍ତି ଦୁଃଖର ସହିତ କହିଲେ ଯେ, ଖଞ୍ଜତା ଯେବେ ସେ ଯଦି ବିକଳାଙ୍ଗ ହୋଇ ନ ଥାନ୍ତା,

ତାହାହେଲେ ତା ବିଦ୍ୟାବଳରେ ସେ ଗ୍ରୁଏଁ ଗ୍ରୁଏଁ ମଧ୍ୟ ବଡ଼ ପାହ୍ୟା ଗ୍ରକରି ପାଇଁ ଅବଶ୍ୟ ନିର୍ବାଚିତ ହୋଇ-ପାରିଥାନ୍ତା । ଆପଣ ଇଚ୍ଛା କଲେ ମଧ୍ୟ ତା ପାଇଁ ବେଶି କିଛି କରିପାରିବେନାହିଁ । ଭଗବାନ ତାକୁ ଦୁର୍ଭାଗ୍ୟ କରି ଜନ୍ମ ଦେଇଅଛନ୍ତି ।

ଦାସ ମହାଶୟେ ସମବେଦନାରେ ଅଭିଭୂତ ହେଲେ । ଡକ୍ଟର ମହାନ୍ତିଙ୍କ ଜରିଆରେ ସମ୍ବାଦ ପଠାଇବାରୁ ମୁଁ ଆସି ଉଭୟଙ୍କ ସମ୍ମୁଖରେ ଉପସ୍ଥିତ ହେଲି । ସେ ଓ ଡକ୍ଟର ମହାନ୍ତି ମୋତେ ନିମାଇଁ ଚରଣଙ୍କ ଗୃହଶିକ୍ଷକ ପଦରେ ନିଯୁକ୍ତ କରି ତାଙ୍କ ଇଂରାଜି ଅନର୍ସ ଅଧ୍ୟାପନାର ସମସ୍ତ ଭାର ମୋତେ ଅର୍ପଣ କଲେ । ପୂର୍ବପଟ ହଷ୍ଟେଲରେ କେବଳ ଆମ୍ଭ ଦୁହିଁଙ୍କ ପାଇଁ ଗୋଟାଏ ବଡ଼ ବଖରା ନିର୍ଦ୍ଦିଷ୍ଟ କରାଗଲା । ଆମ୍ଭେ ଦୁହେଁ ସମାନ ସ୍ୱାଚ୍ଛନ୍ଦ୍ୟରେ ଯେପରି ରହି ଅଧ୍ୟୟନ କରିପାରିବୁ ତନ୍ନିମିତ୍ତ ଯାବତୀୟ ଖର୍ଚ୍ଚ ଦାସ ମହାଶୟେ ବହନ କରିବେ ବୋଲି ସ୍ଥିର ହେଲା । ଏ ବୋଧହୁଏ ସେ ବର୍ଷ ଜୁନ ମାସର କଥା । ଜୁଲାଇ ମାସଠାରୁ କଲେଜ ଖୋଲିଲେ ଉପରୋକ୍ତ ଭିତ୍ତିରେ କାର୍ଯ୍ୟାନୁଷ୍ଠାନ କରାଯିବାର ସିଦ୍ଧାନ୍ତ କରାଗଲା । ଦାସ ମହାଶୟେ ମୋତେ ବହୁ ଆଶୀର୍ବାଦ କଲେ ଏବଂ ଭବିଷ୍ୟତରେ ମୋତେ କୌଣସି ମତେ ପଦସ୍ଥ କରିବେ ବୋଲି କହିଲେ । ଏ ସମ୍ବାଦ କ୍ରମେ ଜନକଜନନୀଙ୍କ କର୍ଣ୍ଣକୁ ଯିବାରୁ ସେ ଦୁହେଁ ଅତ୍ୟନ୍ତ ଆଶ୍ୱସ୍ତ ହେଲେ । ସେ ଇଷ୍ଟ ଦେବଦେବୀଙ୍କୁ ଅପାର କୃତଜ୍ଞତାରେ ପୂଜା ଆରାଧନା କରିବାରେ ଲାଗିଲେ ।

ଏ ଘଟଣାକୁ ଭବିଷ୍ୟତ ବୈଷୟିକ ସୁଖର ଗୋଟାଏ ଅଭ୍ରାନ୍ତ ସୂଚନା ବୋଲି ଭାବି ମୁଁ ଭ୍ରମ କରି-ଥିଲି ଓ ଜନକ ଜନନୀ ମଧ୍ୟ ଦୁରାଶାର ଚକ୍ରରେ ପତିତ ହୋଇଥିଲେ । ଯାହାକୁ କଣ୍ଟା ଉପରେ ଚାଲିବାକୁ ନିୟତି ନିର୍ଦ୍ଦିଷ୍ଟ କରିଅଛି ତା ନିଜ ଅଭିପ୍ରେତର ସିଦ୍ଧି ନିମନ୍ତେ ସେ ଭାବିବା ଅନୁଚିତ ଯେ ତା ଚାଲିବା ପାଇଁ ଜୀବନପଥରେ ମଖମଲ ଗାଲିଚ୍ଚ ବିଛା ହେବ । ଜୀବନର ଘୋର ଘନଘଟା ଭିତରେ ଏ ଘଟଣା ଥିଲା ବିଜୁଳିର ଗୋଟାଏ ଝଲକ ମାତ୍ର ।

କଲେଜ ଗ୍ରୀଷ୍ମ ଭାବରେ ମୁଁ ଯେପରି ବିଦ୍ୟାଶ୍ରର ଭୂମିକାରେ ଥିଲି ସେଥିରେ ମୁଁ ଖଞ୍ଜ ହୋଇ ନ ଥିଲେ ମୋ ଜିଲ୍ଲା କଲେକ୍ଟର ଦାସଙ୍କ ସୁପାରିସ ବା ବିନା ସୁପାରିସରେ ମୁଁ ତ ଅକ୍ଲେଶରେ ଡେପୁଟୀ ମାଜିଷ୍ଟ୍ରେଟ (ତତ୍କାଳୀନ) ହୋଇଥାନ୍ତି । ପ୍ର—କୁ ତା ଅଭିଭାବକ ଜଣେ ଗ୍ରେଡିଆ ଅଫିସରକୁ ଦେବାକୁ ମହାପ୍ରସାଦ ନିର୍ବନ୍ଧ କରିଥିଲେ ଯାହାର କି ରୂପ ତ ଆଦୌ ନ ଥିଲା, କୁଳ ମଧ୍ୟ ଥିଲା ଯଶୋବିବର୍ଜିତ । କିନ୍ତୁ ମୋ ଜନନୀ କହିଲା ଭଳି "ଗ୍ରମ ମୋର ସବୁଗୁଣେ ସାର । କି ଗୁଣେ ବିଧାତା ତାକୁ କଲା ଅବଗ୍ରର ।" ମୁଁ ହେଲି ଜନ୍ମାବଧି ଦୁର୍ଭାଗ୍ୟ ବ୍ୟାଧିର ଶିକାର । ପ୍ର— ଯେଉଁ ଗୁଣମଣିଙ୍କୁ ବାଗ୍‌ଦତ୍ତା ହେଲା ପ୍ର—ସଂପର୍କରେ ମୋ ନାମ ଉଠିବା ଆଗରୁ ସେ ଚରମ ବିଶ୍ୱାସଘାତକତାର ଗୋଟାଏ ଅପୂର୍ବ କାଣ୍ଡ କରି ବସିଲେ ।

ଗ୍ରମାୟଣର ପୂର୍ଣ୍ଣାଙ୍ଗତା ନିମନ୍ତେ ମନ୍ଥରା ଓ କୈକେୟୀ, କୌଶଲ୍ୟା ଓ ସୀତାଙ୍କ ଭଳି ମଧ୍ୟ ଅତ୍ୟନ୍ତ ଅପରିହାର୍ଯ୍ୟ । ସେମାନଙ୍କୁ ମାନବୀୟ ବିଗ୍ରରରେ ଘିନା ଘୃଣ୍ୟ ଜ୍ଞାନ କରାଯାଏ—ମାନବୀୟ ବିଗ୍ରରର ଊର୍ଦ୍ଧ୍ୱ-ଦେଶକୁ ମନକୁ ଉନ୍ନୀତ କରି ଦେଖିଲେ ବୁଝିବାକୁ ହୁଏ ଯେ ସୁମହତ୍ ବିଧାତୃବିଧାନର ସଫଳୀକରଣ ନିମନ୍ତେ ମୁଁ ଯାହାକୁ ଗୁଣମଣି ବୋଲି ଅଭିହିତ କଲି ସେମାନଙ୍କ ଭଳି ଲୋକଙ୍କୁ ମଧ୍ୟ ବିଧାତା ନିଜର ଆୟୁଧ କରି ବ୍ୟବହାର କରନ୍ତି ।

## ଦଶମ ଅଧ୍ୟାୟ

ଜଣେ ଜିଲ୍ଲା କଲେକ୍ଟରଙ୍କ ପୁତ୍ରର ଇଂରାଜି ଅନର୍ସ ଅଧ୍ୟାପନା ପାଇଁ ମୁଁ ଗୃହଶିକ୍ଷକ ରୂପେ ନିଯୁକ୍ତ ହୋଇ ଟ୍ରିଂପଠ ହଷ୍ଟେଲର ଗୋଟାଏ ପ୍ରଶସ୍ତ କୋଠରୀରେ ସମ୍ୟକ ସ୍ୱାଚ୍ଛନ୍ଦ୍ୟ ଓ ଆଡ଼ମ୍ବରରେ ରହିବାଦ୍ୱାରା ମୋର ବିଦ୍‌ବତ୍ତା ଯେନ ଆଗରୁ ଯେତିକ ଗୌରବ ଥିଲା ତାହା ଲୋକଚକ୍ଷୁରେ ବହୁଗୁଣିତ ହୋଇଗଲା । କଲେକ୍ଟର ମହାଶୟ ପୁଣି ନିଜ ଜିଲ୍ଲାର କର୍ତ୍ତା ହୋଇଥିବାରୁ ମୋ ସଂସ୍ପୃକ୍ତ ବ୍ୟକ୍ତିମାନେ ମଧ୍ୟ ବେଳ ପଡ଼ିଲେ ମୋଦ୍ୱାରା ବହୁ ଉପକୃତ ହୋଇପାରିବେ ବୋଲି ଆଶାୟୀ ହୋଇପଡ଼ିଲେ । କଲେକ୍ଟରଙ୍କ ପୁତ୍ର ନିମାଇଁ ଚରଣ ତାଙ୍କ ପିତାଙ୍କ ପରି ଜଣେ ରକ୍ଷଣଶୀଳ ଧରଣର ଅତ୍ୟନ୍ତ ନିଷ୍ଠାପର ଯୁବକ ଥିଲେ । ଦେବଦେବୀମାନଙ୍କ ଉପରେ ତାଙ୍କର ଅଚଳ ବିଶ୍ୱାସ ଥିଲା । ଶ୍ରୀଜଗନ୍ନାଥ ମହାପ୍ରଭୁ ତାଙ୍କ ପରିବାରର ପରମ ଧ୍ୟେୟ ଥିଲେ । ବହୁ ବର୍ଷ ପୁରୀ ଜିଲ୍ଲାର କଲେକ୍ଟର ଥାଇ ପୁରୀରେ ଅବସ୍ଥାପିତ ଥିବାରୁ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ପ୍ରତ୍ୟକ୍ଷ ଭାବରେ ଓ ପରୋକ୍ଷ ଭାବରେ ସେବା କରିବାକୁ ତାଙ୍କୁ ପ୍ରଶସ୍ତ ସୁଯୋଗ ମିଳିଥିଲା । ମନ୍ଦିରର କର୍ମଚାରୀବୃନ୍ଦ ସବୁବେଳେ ତାଙ୍କର ଅନୁଗ୍ରହପ୍ରାର୍ଥୀ ଥିଲେ । ମୁଁ ଯେ ନିମାଇଁ-ଚରଣଙ୍କର କେବଳ ଗୃହଶିକ୍ଷକ ହୋଇ ରହିଲି ତାହା ନୁହେଁ, କୌଣସି ଛୁଟି ହେଲେ ମଧ୍ୟ ମୁଁ ତାଙ୍କ ସହିତ ଯାଇଁ ପୁରୀ କଲେକ୍ଟର କୋଠିରେ ରହୁଥିଲି । ଦୟାନିଧି ଦାସ ଓ ତାଙ୍କ ପୁଣ୍ୟବତୀ ପତ୍ନୀ ତିଳୋତ୍ତମା କ୍ରମେ କ୍ରମେ ମୋ ପ୍ରତି ଏତେଦୂର ସ୍ନେହଶୀଳ ହେଲେ ଏବଂ ସେ ସ୍ନେହକୁ ସେ ଏତେ ଅକୁଣ୍ଠ ଭାବରେ ପ୍ରକାଶ କଲେ ଯେ ଲୋକମୁଖରେ ମୁଁ ତାଙ୍କ ଧର୍ମପୁତ୍ର ବୋଲି କଥିତ ହେଲି । ସେ ଦୁହେଁ ଯାତ୍ରାପର୍ବରେ ଶ୍ରୀଜଗନ୍ନାଥ-ଦର୍ଶନରେ ଗଲେ ମଟରଗାଡ଼ିରେ ମୋତେ ସାଙ୍ଗରେ ନିଅନ୍ତି ଓ ତାଙ୍କ କ୍ଷମତାର ପ୍ରଭାବରେ ମୋର ଅନାୟାସ ଦର୍ଶନ ସୁବିଧା ହୋଇଥାଏ । ଶେଷରତଃ ସର୍ବଲୋକ-ମହେଶ୍ୱର ସର୍ବକରୁଣାକାରଣ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଏପରି ସନ୍ନିକଟ ହୋଇ ଦର୍ଶନ ସୌଭାଗ୍ୟ ଲାଭ କରିବା ମୋ ଭଳି ଖଞ୍ଜି ବ୍ୟକ୍ତି ପକ୍ଷରେ ସମ୍ଭବ ହୋଇଥିଲା ତାଙ୍କର ଅପାର କରୁଣାରୁ । ମୋ ପୁଣ୍ୟମୟୀ ଜନନୀ ରାଧାରାଣୀଙ୍କ ଆକୁଳ ଆହ୍ୱାନ ତାଙ୍କ କର୍ଣ୍ଣରେ ପ୍ରକୃତରେ ବାଜିଥିଲା । ମୁଁ ପ୍ରାୟ ଦେଢ଼ବର୍ଷ କାଳ ନିମାଇଁଚରଣଙ୍କ ଗୃହଶିକ୍ଷକ ରୂପେ ରାଜଭୋଗରେ ରହିଥିଲି କହିଲେ ଅତ୍ୟୁକ୍ତି ହେବନାହିଁ । ଦୟାନିଧି ଦାସ ଓ ତିଳୋତ୍ତମା ପ୍ରକୃତରେ ଠିକ୍ ତାଙ୍କ ପୁତ୍ରବତ୍ ମୋତେ ସ୍ନେହ କରୁଥିଲେ । ମୋ ପ୍ରତି ସେମାନଙ୍କ ବ୍ୟବହାର ଦେଖିଲେ ମୁଁ ତାଙ୍କ ଜନ୍ମିତ ପୁତ୍ର ଛଡ଼ା ଅନ୍ୟ କେହି ନୁହେଁ ବୋଲି ନ ଜାଣିବା ଲୋକେ ଭାବୁଥିଲେ । ବେଳେବେଳେ ନିମାଇଁଚରଣ ମଧ୍ୟ ମୋ ପ୍ରତି ଏଥିଯୋଗୁଁ ଟିକିଏ ଈର୍ଷାଳୁ ହୋଇପଡ଼ି ମୁଁ ବେଶି ସ୍ନେହାସ୍ପଦ ହୋଇପଡ଼ୁଛି ବୋଲି ମୋ ଆଗରେ ପିତା-ମାତାଙ୍କୁ କହୁଥିଲେ । ଆମ୍ଭ ଗୃରଙ୍କ ଭିତରେ ଗୋଟାଏ ବଡ଼ ହସ ହେଉଥିଲା । ହାୟ ଦୟାନିଧି, ତିଳୋତ୍ତମା ଓ ନିମାଇଁଚରଣ ! ଆଜି ତୁମ୍ଭେ ତିନିହେଁ ସ୍ୱର୍ଗଗାମୀ ହୋଇ-ସାରିଛ । ଏ ପାପାକୀର୍ଣ୍ଣ ମରରାଜ୍ୟରେ ଜୀବିତ ରହି ମୁଁ ନାନା ଦୁରିତ ଓ କ୍ଳେଶର ଶିକାର ହେଉଅଛି । ମୋର ଜନକଜନନୀ ମଧ୍ୟ ଊର୍ଦ୍ଧ୍ୱଲୋକଗାମୀ ହୋଇ-ଅଛନ୍ତି । ମୋର ଭରସା ଅଛି ସମସ୍ତେ ମୋତେ ସୁଦୃଷ୍ଟିରେ ସେପୁରରୁ ଚାହିଁଅଛ । ଦୟାନିଧି ଓ ତିଳୋତ୍ତମା ! ତୁମ୍ଭେ ଆତ୍ମଜ ନ ହୋଇ ମଧ୍ୟ ମୁଁ ତୁମ୍ଭ-ଠାରୁ ଆତ୍ମଜତୁଲ୍ୟ ଯେଉଁ ସ୍ନେହ ଲାଭ କରିଅଛି, ତାର ପ୍ରତିଦାନ ଦେବା ମୋ ପକ୍ଷରେ ଅସମ୍ଭବ ହୋଇଅଛି । ମୋର ଦୁଃସ୍ଥିତି ଦେଖି ମୋତେ ଏ ଦାରୁଣ ତ୍ରୁଟିଯୋଗୁଁ କ୍ଷମା ଦେବ ।

ଭାବୋଚ୍ଛ୍ୱାସ କଲେଜ ହଷ୍ଟେଲର ଘଟଣା ବର୍ଣ୍ଣନା କରୁ କରୁ ଲେଖଣୀକୁ ଅନ୍ୟଦିଗକୁ ଟାଣିନେଲା । ତଥାପି ହଷ୍ଟେଲଜୀବନ ଉପରେ ଏସବୁ ଆଲୋକପାତ କରିବାର ସାମଗ୍ରୀ ।

ନିମାଇଁଚରଣ ସମବୟସ୍କ ହୋଇଥିବାରୁ ମୁଁ ତାଙ୍କର ଅଧ୍ୟାପନା କରୁଥିଲେ ସୁଦ୍ଧା ସେ ମୋର ବୟସ୍ୟ ଓ ବନ୍ଧୁ ହେବାକୁ ବେଶି ସମୟ ଲାଗି ନ ଥିଲା । କ୍ରମେ କ୍ରମେ ପ୍ର—ସମ୍ପର୍କିତ ମୋର ସଂକଳ୍ପ ମଧ୍ୟ ସେ ଅବଗତ ହେଲେ ଏବଂ ମୋ ଅପେକ୍ଷା ବୈଷୟିକ ସଂସାରର ଗତି ସେ ସମ୍ୟକ୍ ଅଧିକ ବୁଝୁଥିବାରୁ ମୋତେ ପ୍ର—ଲାଭ ପଥର କେତେକ ସମ୍ଭାବ୍ୟ ପ୍ରତ୍ୟବାୟର ସୂଚନା ଦେଇଥିଲେ । ତଥାପି ସେ ଏ ବିଷୟରେ ମୋତେ ବହୁତ ହିମ୍ମତ୍ ଦେଇଥିଲେ ଏବଂ ମୁଁ ଆଗ ବି.ଏ. ଇଂରେଜି ଅନର୍ସରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଯେପରି ଉତ୍ତୀର୍ଣ୍ଣ ହୁଏ ତତ୍‌ପ୍ରତି ମୋତେ ଅହରହ ସଜାଗ କରୁଥିଲେ । ମୋର ଅଧ୍ୟାପନାବଳରେ ସେ କଲେଜର ବିଭିନ୍ନ ତ୍ରୈମାସିକ ପରୀକ୍ଷାରେ ସନ୍ତୋଷଜନକ ନମ୍ବର ରଖି ଅନର୍ସପ୍ରାପ୍ତ ହେଉଥିବାରୁ ନିଜେ ସେ, ତାଙ୍କ ଜନକଜନନୀ ଓ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ସାଡ଼େୟୁ ପ୍ରୀତି ଲାଭ କରୁଥିଲେ । ମୁଁ ନିଜେ ମଧ୍ୟ ଇଂରେଜିରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଅନର୍ସ ପାଇବି ଓ ମୋ ପ୍ର—ଲାଭର ପଥ ସୁଗମ ହେବ ଏଥିପାଇଁ ସେ ସମ୍ୟକ ଅବହିତ ଥିଲେ । ଅଧ୍ୟାୟୀ-ଅଧ୍ୟାପକ ସମ୍ପର୍କ ଥିଲେ ସୁଦ୍ଧା ବୟସର ସାମ୍ୟବଶତଃ ଆମ୍ଭ ଦୁହିଁଙ୍କ ମଧ୍ୟରେ ଭାବ ବିନିମୟରେ ପ୍ରତ୍ୟବାୟ ରହି ନ ଥିଲା ।

ଏହି ସମୟରେ ମୁଁ ୧୯୨୦ରେ ପ୍ରଥମ ବାର୍ଷିକ ଶ୍ରେଣୀରେ ପଢ଼ୁଥିବା ସମୟର ଜଣେ ସହାଧ୍ୟାୟୀ ( ଯେ କି ବି.ଏ. ଅନର୍ସ ପାସ୍ କରିସାରିଥିଲେ ) ମୋ ସଙ୍ଗେ ଆସି ଭାବ ଜମାଇଲେ ଓ ଦୁଇବର୍ଷ ପରେ ଆସି ଆଇ.ଏ. ପାସ୍ କରି ବି.ଏ. ଅନର୍ସରେ ପ୍ରଖ୍ୟାତନାମା ହେଉଥିବାରୁ ମୋତେ ଅଭିନନ୍ଦନ କଲେ । ପଢ଼ା ଛୁଟିବା ପରେ କଲେଜକୁ ପ୍ରତ୍ୟାବର୍ତ୍ତନ ପାଇଁ କିପରି ମନବଳିଲା ଏ ବିଷୟରେ କଥୋପକଥନ ହେଉ ହେଉ ପ୍ର—ର ପ୍ରସଙ୍ଗ ମୋର କବିଜନୋଚିତ ଅନବଧାନ-ବଶତଃ ମୋ ମୁଖରୁ ବାହାରିଗଲା । ବନ୍ଧୁ ( ଆଗରୁ ଏହାଙ୍କୁ ଗୁଣମଣି ବୋଲି କହିଅଛି ) ପ୍ର—ର ମୋ ଦ୍ୱାରା କୃତ କବିଜନୋଚିତ ବର୍ଣ୍ଣନା ଶୁଣି କୌଶଳରେ ପ୍ର—ର ଅଭିଭାବକଙ୍କ ଠିକଣା ଆଦି ତଥ୍ୟ ମୋ ମୁହଁରୁ କାଢ଼ିନେଲେ । ବନ୍ଧୁଙ୍କର ଜଣେ ସମ୍ପର୍କିତ ଭାଇ ପ୍ର—ର ଅଭିଭାବକଙ୍କ ନିକଟରେ ଚାକିରି କରୁଥିଲେ । ପ୍ର—କୁ ନିଜେ ବନ୍ଧୁ ପତ୍ନୀରୂପେ ଲାଭ କରିବାପାଇଁ ଅତୀବ ବ୍ୟାକୁଳ ହୋଇପଡ଼ିଲେ । ମୁଁ ସେ ପର୍ଯ୍ୟନ୍ତ ବି. ଏ. ଅନର୍ସ ପାଇ କିଛି ହୋଇ ନ ଥିବାରୁ ଓ କୌଣସି ଶ୍ରେଷ୍ଠିଆ ସରକାରି ଚାକିରି ତାଙ୍କୁ ଯୁଟିବାର ସମୟ ନିକଟ ହୋଇ ଆସୁଥିବାରୁ ସେ ତାଙ୍କ ଉପରୋକ୍ତ ସମ୍ପର୍କିତ ଭାଇଙ୍କୁ ଲକ୍ଷ୍ୟ ପୂରଣର ପରମାୟୁଧ ବୋଲି ଜ୍ଞାନ କରି ତାଙ୍କୁ କରାୟତ୍ତ କଲେ ।

ତେତେବେଳକୁ କଲେଜ ହଷ୍ଟେଲରେ ପ୍ର—ପାଇଁ ବର ଖୋଜାଖୋଜି ଲାଗିଥିବାର ସମ୍ବାଦ ମୁଁ ଓ ନିମାଇଁଚରଣ ପାଉଥାଉଁ । ଏ ଖୋଜାଖୋଜିଟା ଟିକିଏ ବିଳମ୍ବିତ ହୋଇଗଲେ ମୋର ଅନର୍ସ ପରୀକ୍ଷାଟା ସରିଯାନ୍ତା ଓ ବିଶ୍ୱବିଦ୍ୟାଳୟର ଜଣେ ଅତ୍ୟନ୍ତ କୃତୀ ଅଧ୍ୟାୟୀରୂପେ ପ୍ର—ପାଇଁ ମୋ ନାମଟା ପ୍ରସ୍ତାବିତ ହୁଅନ୍ତା । ଆମ୍ଭେ ଦୁହେଁ ଏଥିପାଇଁ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ନିତ୍ୟ ପ୍ରାର୍ଥନା କରୁଥିଲୁଁ । କିନ୍ତୁ ତାଙ୍କର ଦୁର୍ଜ୍ଞେୟ ଅଭିପ୍ରାୟ ଫଳରେ ଘଟଣାର ସ୍ରୋତ ଅନ୍ୟଦିଗରେ ଅବାରିତ ଭାବରେ ଅଗ୍ରଗତି କରିଚାଲିଥାଏ ।

ଦିନେ ଉପରୋକ୍ତ ଗୁଣମଣି ବନ୍ଧୁ ହଠାତ୍ ମୋ କୋଠରୀରେ ପ୍ରବେଶ କରି ମୋତେ ଆସି କହିଲେ ଯେ ପ୍ର—ର ବିବାହପାଇଁ ତାର ଅଭିଭାବକମାନେ ଅତ୍ୟନ୍ତ ଉଦ୍‌ବିଗ୍ନ । ମୁଁ ମୋର ସମ୍ପର୍କିତ ଭାଇଙ୍କ ନିକଟକୁ

କାର୍ଯ୍ୟୋପଲକ୍ଷରେ ଯାଉଅଛୁ । କିଏ ଜାଣେ ସେ ପ୍ର— ପାଇଁ ମୋ ନାମ ସୁପାରିସ କରିପାରନ୍ତି । ମୁଁ କିଅଣ ତାର ବର ହେବାକୁ ସର୍ବତୋଭାବରେ ଯୋଗ୍ୟ ନୁହେଁ କି ? ମୋ ସମ୍ପର୍କିତ ଭାଇଙ୍କର ପ୍ର—ପରିବାର ଉପରେ ଏପରି ଅପ୍ରତିହତ ପ୍ରଭାବ ଯେ ତାଙ୍କ ସୁପାରିସ ପ୍ର—ଙ୍କ ପରିବାରରେ କେହିହେଲେ ଏଡ଼ି ପାରିବେ ନାହିଁ । ମୁଁ ତାଙ୍କ ନିକଟରୁ ଫେରିଲେ ପୁଣି କଥାବାର୍ତ୍ତା ।

ମୁଁ ବନ୍ଧୁଙ୍କୁ କହିଲି, "ବନ୍ଧୁ ! ମୋର ପ୍ର—ପ୍ରତି ଯେଉଁ ପ୍ରାଣୋନ୍ମାଦକ ପ୍ରଣୟ ରହିଅଛି ତାହା ଯଦି ତୁମ୍ଭେ ମୋଠାରୁ ନ ଶୁଣିଥାନ୍ତ, ତେବେ ଦୈବଗତ୍ୟା ତୁମ୍ଭ ସହିତ ତାର ବିବାହପ୍ରସ୍ତାବ ହେଉଥିଲେ ମୁଁ ତୁମ୍ଭଙ୍କୁ କିଛି କହନ୍ତି ନାହିଁ । ମୋ ମୌଖିକ ବର୍ଣ୍ଣନା ଓ ମୋ ଲିଖିତ କବିତାଗୁଡ଼ିକ ଶୁଣି ତୁମ୍ଭେ ପ୍ର—ଲାଭର ସମ୍ଭାବନାକୁ ଏତିକିବେଳୁ ଯାପୁଚି ଧରିଲଣି —ଭାଇଙ୍କି ମଧ୍ୟ ସେ ସମ୍ଭାବନାକୁ ବାସ୍ତବ କରିଦେବା ପାଇଁ ତୁମ୍ଭେ ଯେ ସେ କିଛି କହିଲି ପୂର୍ବରୁ ପ୍ରୟୋଗ କରିବ, ଏହା ମୋତେ ତୁମ୍ଭ କଥାରୁ ଜ୍ଞାତ ହୋଇପଡ଼ୁଅଛି । ମୁଁ ସାଧାରଣ ମାନବିକତାର ଦୋହି ଦେଉଅଛି ତୁମ୍ଭେ ପ୍ର— ଲାଭପାଇଁ ପ୍ରଚେଷ୍ଟା କରନାହିଁ । କିଏ ଜାଣେ ମୋ ଶବ ଉପରେ ପଦନ୍ୟାସ କରି ତୁମ୍ଭେ ବରବେଶରେ ଯାଇଁ ମଣ୍ଡପରେ ବସିବ । ମୋର ଟେଷ୍ଟ ବା ବଛାବଛି ପରୀକ୍ଷା ମୋଟେ ଏକ ମାସ ଅଛି । ଏତେବେଳେ ଏ ଚରମ ବିଶ୍ୱାସଘାତକତା କଲେ ମୁଁ ଧ୍ୱଂସପ୍ରାପ୍ତ ହୋଇଯିବି ।"

ଗୁଣମଣି ଶୁଷ୍କହାସ୍ୟ ମାତ୍ର କଲେ । ସେଥିରୁ ମୁଁ ବୁଝିନେବାକୁ ଆଉ ବାକି ରହିଲା ନାହିଁ ଯେ ଏହାଙ୍କ ଆଖିରେ କବିଜନୋଚିତ ମଞ୍ଜୁଭାଷଣରେ ପ୍ର—ର ମୂର୍ତ୍ତି ବର୍ଣ୍ଣନ କରିବାଦ୍ୱାରା ମୁଁ ହାଣକୁରାଡ଼ି ବେକକୁ ଆଣିଅଛି । ଏହାଙ୍କ ଲାଳସା ଦୁର୍ବାର । ଏ ସାକ୍ଷାତ ମୋର ଅନ୍ତକ ।

ନିମାଇଁଚରଣ ଦାସ ଏ ବ୍ୟାପାର ଶୁଣି ଅବାକ୍ ହୋଇଗଲେ । କୈତବ ବନ୍ଧୁ ତାରେ ଭୁଲି ମୁଁ କି ଖିଷଣ ବିପଦ ବରଣ କରିଆଣିଛି ଏହା ଦେଖି ସେ ଅଧୀର ହେଲେ । ତଥାଚ ସେ ମୋତେ ଧୈର୍ଯ୍ୟ ଦେଉଥାନ୍ତି । କେଉଁ ପାଣି କେଉଁ ଆଡ଼କୁ ଯାଉଛି ସ୍ଥିରକରି ଦେଖିବାକୁ ମୋତେ ଆଶ୍ୱସ୍ତ କରୁଥାନ୍ତି । ମୋ ପ୍ରେମାକୁଳ ହୃଦୟ ଆତଙ୍କର ଭୀମ ଘନଘଟାରେ ଗ୍ଳାନ ହୋଇ ଯାଉଥାଏ ।

ମୋ ଟେଷ୍ଟ ପରୀକ୍ଷା ଖୁବ୍ ନିକଟବର୍ତ୍ତୀ । ମୋଟେ ଦଶବାରଟା ଦିନ ବାକି । ଏହି ସମୟରେ ଉକ୍ତ ଗୁଣମଣି ନିଜ ସମ୍ପୃକ୍ତ ଭାଇଙ୍କ ବଳରେ ପ୍ର—ସହିତ ତାଙ୍କ ବିବାହ ପାଇଁ ପ୍ର—ପରିବାରର ଚୂଡ଼ାନ୍ତ ନିଷ୍ପତ୍ତି କରାଇ କଟକ ଫେରିଆସିଲେ । ସେ ଆମରି ହଷ୍ଟେଲରେ ରହୁଥିଲେ । ଦିନେ ବିଜୟୋଲ୍ଲାସରେ ଉନ୍ମତ୍ତ ହୋଇ ଝଡ଼ପରି ସେ ମୋ କୋଠରୀରେ ପ୍ରବେଶ କଲେ ଏବଂ ତହିଁରେ ମୋ ଛଡ଼ା ଅନ୍ୟ କେହି ଉପସ୍ଥିତ ନ ଥିବାରୁ ମୋ ଆଗରେ ପ୍ରସ୍ରବଣ ଜଳର ବେଗରେ ନାନାକଥା ଉଦ୍‌ଗୀରଣ କରିଗଲେ । ତହିଁର ମର୍ମ ଥିଲା, ପ୍ର—ର ଅଭିଭାବକ ତାଙ୍କୁ ପ୍ର—ର ସ୍ୱାମୀପଦ ଦେବା-ପାଇଁ ପୂର୍ଣ୍ଣ ସିଦ୍ଧାନ୍ତ କରିଅଛନ୍ତି ଓ ଅଳ୍ପ ଦିନ ମଧ୍ୟରେ ନିର୍ବନ୍ଧ ଉତ୍ସବ ଅନୁଷ୍ଠିତ ହେବ । କଣ୍ଟା ଘା'ରେ ଚୂନ ଦେଲାଭଳି ସେ ପୁଣି କହିଲେ ଯେ ତାଙ୍କ ଭାଇ ମୋ କଥା ଉତ୍ଥାପନ କରିବାରୁ ସେମାନେ ତାହା ଆଦୌ ଗ୍ରାହ୍ୟ କଲେନାହିଁ, ତେଣୁ ପ୍ର—ଲାଭ ଆଶା ମୋତେ ତ୍ୟାଗ କରିବାକୁ ହେବ ଏବଂ ବୃଥାରେ ଆକାଶରେ ସୌଧ ନିର୍ମାଣ କରିବାର ଉଦ୍ୟମ ମୋତେ ବନ୍ଦ କରିବାକୁ ହେବ ।

ମୁଁ ଧୈର୍ଯ୍ୟ ସମ୍ବରଣ କଲି ଏବଂ ନରାଧମକୁ କହିଲି, "ତୋ ଭଳି କାକ ବେକରେ ଚମ୍ପାମାଳ ମନକୁ ମନ ପଡ଼ୁଥିଲେ ମୁଁ କିଛି କହନଥାନ୍ତି । କିନ୍ତୁ ମୋ ସମ୍ପର୍କରେ ତୁ ସବୁକଥା ଜାଣୁ ଜାଣୁ ଯାହା ପ୍ର—କୁ

କରାୟତ୍ତ କରିବାକୁ ଅଗ୍ରସର ହେଉଛୁ ତାହା ତୋ ପକ୍ଷରେ ଜ୍ୱଳନ୍ତ ଅଗ୍ନି-ପାନର ସମାନ ହେବ । ତୋ ସହିତ ବାକ୍ୟାଳାପ ମଧ୍ୟ ପାପ । ତୋତେ ବନ୍ଧୁ ବୋଲି ତୋ ଆଗରେ ପ୍ର—ର ରୂପ ବର୍ଣ୍ଣନ କରିଥିଲି, ମୋ ପ୍ରେମ-ନିବେଦନାତ୍ମକ କବିତା ପଢ଼ି ତୋତେ ଶୁଣାଇଥିଲି, ତୁ କପଟ ସହାନୁଭୂତି ଦେଖାଇ ଭିତରେ ଭିତରେ ମୋ ହତ୍ୟାପାଇଁ କରୁଥିଲୁ ତୀକ୍ଷ୍ଣ ଛୁରୀକାକୁ ଆହୁରି ଶାଣିତ । ଦେଖ୍, ତୋ ଆଗେ ମୁଁ ମୋ ଯତ୍ନସଞ୍ଚିତ ସକଳ ଗୀତ ଦଗ୍ଧ କରୁଅଛି । ତୋ ଚରମବିଶ୍ୱାସ-ଘାତକତାର ସ୍ମାରକ ସ୍ୱରୂପ ଏ ଭସ୍ମକୁ ମୁଁ ଲଲାଟ-ଭୂଷଣ କରିବି । ଏ ଭସ୍ମର ଟୀକା ଜୀବନ୍ତ ଅଭିଶାପ ହୋଇ ଦିନେ ତୋତେ ଅବଶ୍ୟ ଗ୍ରାସ କରିବ ।”

ବନ୍ଧୁ ମୋଠାରୁ ଏତେଗୁଡ଼ାଏ ଉଷ୍ମା ପାଇଁ ପ୍ରସ୍ତୁତ ନ ଥିଲେ । ମନୁଷ୍ୟ ଯେ ଗୋଟିଏ ବାଳିକାକୁ ଏତେ-ଗୁଡ଼ାଏ ପ୍ରେମ କରିପାରେ ସେ ଏହା କଳ୍ପନା କରି-ପାରୁ ନ ଥିଲେ । ସେ ଥିଲେ ସଂସାରର ଜଣେ ଅତି ହସାଖୁସି ସାଧାରଣ ଲୋକ । ସେ ଅର୍ଦ୍ଧ ବିସ୍ମୟ ଓ ଅର୍ଦ୍ଧ ଉପହାସରେ ମୋ କଥାଗୁଡ଼ିକ ଶୁଣି ନୀରବରେ ମୋ କକ୍ଷ ତ୍ୟାଗକଲେ ।

ତାଙ୍କ ଭାଇ, ଜଣେ ପ୍ରବୀଣ ଅଧ୍ୟାପକ ଓ ପ୍ର—ର ଅଭିଭାବକଙ୍କୁ ନେଇ ସେ କଲେଜ ହଷ୍ଟେଲରୁ ଯେଉଁ-ଦିନ ନିର୍ବନ୍ଧ ଉତ୍ସବପାଇଁ ପୁରୀ ପ୍ରସ୍ଥାନ କଲେ, ସେ ଦିନର ପ୍ରତ୍ୟେକକ୍ଷଣ ମୋତେ ନବ ନବ ମରଣ ଯନ୍ତ୍ରଣାର ଶିକାର କରିଥିବାର ସ୍ମୃତି ମୋ ହୃଦୟ-ପଟରେ ଜ୍ୱଳନ୍ତ ସ୍ମୃତିରୂପେ ଜାଗରୁକ ରହିଅଛି ।

ନିମାଇଁଚରଣ ଦାସ ଓ ମୁଁ ବନ୍ଧୁଙ୍କ ଚରମ ବିଶ୍ୱାସଘାତକତା କଥା ଭାବି ଯୁଗପତ୍ ଘୃଣା ଓ କ୍ରୋଧରେ ମୁହ୍ୟମାନ ହୋଇଯାଇଥିଲୁଁ । ବନ୍ଧୁ ନିର୍ବନ୍ଧ କରିସାରି ଫେରିଲାପରେ ନିମାଇଁଚରଣ ବନ୍ଧୁଙ୍କ ନିକଟକୁ ଏପରି ଖଣ୍ଡିଏ ପତ୍ର ଲେଖିଥିଲେ, ଯାହାର ମର୍ମ ଦେଖି ବନ୍ଧୁ ଭୟାତୁର ହୋଇପଡ଼ିଥିଲେ କାରଣ ଜିଲ୍ଲାବାସୀଙ୍କ ସକଳ ସରକାରି ଚାକିରିର ଦାତା ଥିଲେ ନିମାଇଁଚରଣଙ୍କ ପିତା ।

ବନ୍ଧୁଙ୍କ ନିର୍ବନ୍ଧ ଉତ୍ସବ ପରେ ପରେ ହେଲା ମୋର ଟେଷ୍ଟ ପରୀକ୍ଷା । ମୁଁ ଇଂରେଜି ଓ ଓଡ଼ିଆକୁ ଛାଡ଼ିଦେଲେ ସବୁ ବିଷୟରେ ଅକୃତକାର୍ଯ୍ୟ (ଫେଲ) ହୋଇଯାଇଥିଲି । ମୋର ଇତିହାସ ଅଧ୍ୟାପକ ଦୃଢ଼ଭାବରେ ଦାବୀ କରିଥିଲେ ଯେ ମୋତେ ପରୀକ୍ଷାପାଇଁ ପଠା ନଯାଉ । କିନ୍ତୁ ଅନ୍ୟାନ୍ୟ ଅଧ୍ୟାପକଙ୍କ ସମେତ ମୋର ପ୍ରିନ୍ସିପାଲ କୌଣସି ଗୁରୁତର ଅସୁବିଧା ଯୋଗୁଁ ଏ ଅପ୍ରତ୍ୟାଶିତ ଘଟନା ଘଟିଥିବ ବୋଲି ବିଶ୍ୱାସ କରିଥିଲେ ଏବଂ ମୁଁ ପରୀକ୍ଷା ନ ଦେଲେ କଲେଜ ଇଂରେଜି ଅନର୍ସରେ ଗୋଟିଏ ପ୍ରଥମ ଶ୍ରେଣୀର ପ୍ରଥମ ଛାତ୍ର ହରାଇବ ବୋଲି କହି ମୋତେ ପରୀକ୍ଷାକୁ ପଠାଇବାର ସମ୍ମିଳିତ ସିଦ୍ଧାନ୍ତ କରିଥିଲେ । ଇତିହାସ ଅଧ୍ୟାପକ ମଧ୍ୟ ତାଙ୍କ ପ୍ରତିକୂଳ ମତକୁ ପ୍ରତ୍ୟାହାର କରିନେଇଥିଲେ । ମୁଁ ବି.ଏ. (ଅନର୍ସ) ପରୀକ୍ଷା ଦେବାକୁ ନିର୍ବାଚିତ ହୋଇଥିଲି ।

ଯେଉଁ ପ୍ରବୀଣ ଅଧ୍ୟାପକ ଜଣକ ବନ୍ଧୁଙ୍କ ନିର୍ବନ୍ଧକୁ ଯାଇଥିଲେ, ସେ ନିମାଇଁଚରଣଙ୍କ ପ୍ରତି ଓ ମୋ ପ୍ରତି ମଧ୍ୟ ଅତ୍ୟନ୍ତ ସ୍ନେହଶୀଳ ଥିଲେ । ମୋର ଟେଷ୍ଟ ପରୀକ୍ଷାରେ ଏତାଦୃଶ ଅପ୍ରତ୍ୟାଶିତ ବିପର୍ଯ୍ୟୟରେ ସେ ଏକାନ୍ତ ବିସ୍ମିତ ହୋଇ ନିମାଇଁଚରଣଙ୍କୁ ତହିଁର କାରଣ ପଚାରିଲେ ଏବଂ ନିମାଇଁ ଚରଣଙ୍କଠାରୁ ଆନୁପୂର୍ବିକ ଭାବରେ ସବୁ ତଥ୍ୟ ଅବଗତ ହେଲେ । ମୋତେ ପଚାରିବାରୁ ମୁଁ ମଧ୍ୟ ନିମାଇଁଚରଣଙ୍କ କଥାର ସମର୍ଥନ କରି ଅତି ଆକୁଳ ଭାବରେ ମୋ ମାନସିକ ଦଶାର ବର୍ଣ୍ଣନ କଲି । ସେ ଆମ ଗୁଣମଣି ବନ୍ଧୁଙ୍କୁ ଡାକି କହିଲେ ଯେ ହଷ୍ଟେଲରେ ତାଙ୍କର ଆଉ ନ ରହି ଆପାତତଃ ବିଶ୍ୱବିଦ୍ୟାଳୟ ପରୀକ୍ଷା ଶେଷ ହେବା ପର୍ଯ୍ୟନ୍ତ ଅନ୍ୟତ୍ର ଅବସ୍ଥାନ କରିବା ସମୁଚିତ – ନଚେତ୍

ତାଙ୍କୁ ଦେଖି ମୋ ମନ ବିଚଳିତ ହେବ ଓ ମୁଁ ପରୀକ୍ଷା ପାଇଁ ପ୍ରସ୍ତୁତ ହୋଇପାରିବ ନାହିଁ । ପରିଶେଷରେ ତାହାହିଁ ହେଲା । ବନ୍ଧୁ ହଷ୍ଟେଲ ଛାଡ଼ି ଅନ୍ୟତ୍ର ଚାଲିଗଲେ । ପ୍ରବୀଣ ଅଧ୍ୟାପକ ମହୋଦୟ ବି.ଏ. ପରୀକ୍ଷା ପାଇଁ ମୋର ଅଧୀତବ୍ୟ ମେଘଦୂତ, ଶକୁନ୍ତଳା, ଉତ୍ତରରାମଚରିତ, Palgrave's Golden Treasury of English Poetry (ଇଂରାଜୀ କବିତା ସଂଗ୍ରହ) ଆଦି ସବୁ ପ୍ରେମାତ୍ମକ ବହି ମୋଠାରୁ ଛଡ଼ାଇ ନେଲେ ଏବଂ କହିଲେ ଯେ ଅବଶିଷ୍ଟ ବହି-ଗୁଡ଼ିକ ମାତ୍ର ପଢ଼ି ମୋତେ ବି.ଏ. ଅନର୍ସ ପରୀକ୍ଷା ଦେବାକୁ ହେବ—ଅନର୍ସରେ ପ୍ରଥମ ଶ୍ରେଣୀ ଲାଭ ହେଲେ ଉତ୍ତମ, ନ ହେଲେ ମଧ୍ୟ ଉତ୍ତମ । ମୁଁ ଏସବୁ ପୁସ୍ତକର ପୃଷ୍ଠା ଉପରେ ସୁଦ୍ଧା ନେତ୍ରପାତ କରିନାହିଁ । କୌଣସିରୂପେ ବୁଡ଼ିଯାଉଥିବା ନୌକାକୁ ସମ୍ଭାଳି ନେଲାପରି ମୁଁ ଅଧୀତବ୍ୟ ବିଷୟମାନଙ୍କୁ ଆୟତ୍ତ କରି ବି. ଏ. (ଅନର୍ସ) ପରୀକ୍ଷା ଦେଲି । ପ୍ର—ଯେ ଜୀବନକୁ ଅନ୍ଧାର କରି ପରହସ୍ତଗତା ହେବାକୁ ଯାଉଛି ଏ ଚିନ୍ତା ପାଠ ଆୟତ୍ତ କଲାବେଳେ ମଧ୍ୟ ମୋତେ ସମୟେ ସମୟେ ପୂର୍ଣ୍ଣଭାବରେ ବିବ୍ରତ କରିପକାଉଥିଲା । ହିତୈଷୀପ୍ରବର ନିମାଇଁଚରଣ ନିରବଚ୍ଛିନ୍ନ ଭାବରେ ମୋ ଦଗ୍‌ଧଚିତ୍ତରେ ଆଶ୍ୱାସନାର ପ୍ରଲେପ ପ୍ରୟୋଗ କରୁଥିଲେ ଏବଂ ତାଙ୍କ ଯୋଗୁଁ ମୁଁ ଜୀବନକୁ ଦୁର୍ବହ ମନେ ନ କରି ଅଧ୍ୟୟନରେ ମନୋନିବେଶ କରିପାରୁ-ଥିଲି । ସେ ହିତୈଷୀ ଅଧ୍ୟାପକ ମଧ୍ୟ ଏ ଘୋର ଦୁର୍ବିପାକ ସମୟରେ ଆସି ମୋ ମନର ଅବସ୍ଥା ବାରମ୍ବାର ପର୍ଯ୍ୟବେକ୍ଷଣ କରୁଥିଲେ ଏବଂ ପରମେ-ଶ୍ୱରଙ୍କ ଉପରେ ପୂର୍ଣ୍ଣ ନିର୍ଭର ରଖିବାକୁ ଉପଦେଶ ଦେଉଥିଲେ ।

ଏ ଦୁଇ ହିତୈଷୀଙ୍କ ଅତନ୍ଦ୍ରିତ ଯତ୍ନ ଓ ଅବହିତ ପର୍ଯ୍ୟବେକ୍ଷଣ ଫଳରେ ମୁଁ ପରୀକ୍ଷା ଦେଇପାରିଲି । ନଚେତ୍ ମୁଁ ଯେପରି ଭାବପ୍ରବଣ ବ୍ୟକ୍ତି ତହିଁରେ ଅଧିରେ ବିକୃତମସ୍ତିଷ୍କ ନ ହୋଇ ପରୀକ୍ଷା ଦେବା ମୂଳରୁ ଅସମ୍ଭବ ହୋଇଥାନ୍ତା ।

ପରୀକ୍ଷାଫଳ ଆଶା ବା ଆକାଂକ୍ଷାନୁରୂପ ହେଲା । ଇଂରାଜୀ ଅନର୍ସରେ ମୁଁ କେବଳ ଓଡ଼ିଶାରେ ପ୍ରଥମ ସ୍ଥାନ ଲାଭକଲି । ବିହାର ଓଡ଼ିଶାରେ ପ୍ରଥମ ସ୍ଥାନ ମୋ ଭାଗ୍ୟରେ ଘଟିଲା ନାହିଁ । ମୋ ଉପରେ ଦୁଇଜଣ ଛାତ୍ର ରହିଗଲେ । ଆମ୍ଭ ସମସ୍ତଙ୍କର ହୋଇଥିଲା ଦ୍ୱିତୀୟ ଶ୍ରେଣୀ ।

ଏ ବିପର୍ଯ୍ୟୟର କାରଣ କେତେଜଣ ମାତ୍ର ଅନ୍ତରଙ୍ଗ ବ୍ୟକ୍ତିଙ୍କ ବ୍ୟତୀତ ବାହାରର କୌଣସି ବ୍ୟକ୍ତି ଜାଣିଲେ ନାହିଁ । ସମସ୍ତେ ନିରାଶ ହେଲେ । ମୋର ଦୁର୍ବିସହ ଦୁଃଖ ହେଲା ଯେତେ ପ୍ର—କୁ ହରାଇବା ଲାଗି, ତେତେ କେବେ ହେଲାନାହିଁ ଏ ପରୀକ୍ଷା ବିପର୍ଯ୍ୟୟ ଯୋଗୁଁ । ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇଥିଲେ ସୁଦ୍ଧା ପ୍ର—ପ୍ରସଙ୍ଗରେ ମୋ ନାମ ଉଚ୍ଚାରିତ ହେବାର ଆଉ ବାଟ ନ ଥିଲା । ତେଣୁ ସେଥିରେ ଲାଭ ବା କଅଣ ହୋଇଥାନ୍ତା ଭାବି ମୁଁ ଆଶ୍ୱସ୍ତି ଲାଭ କଲି । ପ୍ର—ବାଗ୍‌ଦତ୍ତା ନ ହୋଇ ମୁଁ ଯଦି ବି. ଏ. (ଅନର୍ସ) ପରୀକ୍ଷାରେ ଏପରି ଫଳ ଲାଭ କରିଥାନ୍ତି ତାହାହେଲେ ମୁଁ ବୋଧହୁଏ ଆଉ ଦେହ ଧରିପାରି ନ ଥାନ୍ତି ।

ଇଂରେଜୀରେ ଏମ୍.ଏ. ଅଧ୍ୟୟନ କରିବାକୁ ଆଉ ଇଚ୍ଛା ହେଲାନାହିଁ । ବି. ଏଲ୍. କ୍ଲାସରେ ନାମ ଲେଖାଇଲି । ନିମାଇଁଚରଣ ଦାସ ଓ ଆଉ ଜଣେ ଆଇ.ଏ. ଛାତ୍ରଙ୍କର ଗୃହଶିକ୍ଷକତା କାର୍ଯ୍ୟ ମୋର ଥାଏ । ପ୍ର—ବିନା ଏ ଜୀବନ ଆଉ କିପରି ରହିବ ଏହା ମାତ୍ର ଥାଏ ମୋର ଚିନ୍ତା । ନିମାଇଁଚରଣ ଦାସ ଥରେ ସକାଳ ସାତଟା ବେଳେ ଯେଉଁ ଆସନରେ ବସିବାର ଦେଖିଥିଲେ, ରାତି ୮ଟା ବେଳକୁ ଠିକ୍ ସେହି ଆସନରେ ମୋତେ ପୂର୍ବପରି ବସିଥିବାର ଦେଖି

ତାଙ୍କର ସନ୍ଦେହ ହେଲା । ସେ ପ୍ରଶ୍ନ କରି ମୋଠୁ ବୁଝିଲେ ଯେ ମୁଁ ପ୍ର— ଚିନ୍ତାରେ ଆତ୍ମବିସ୍ମୃତ ହୋଇ ଏକ ଆସନରେ ତେରଘଣ୍ଟା କାଳ ବସିରହୁଛି—ହୋଇନାହିଁ ଗାଧୁଆପାଧୁଆ—ହୋଇନାହିଁ ଖିଆପିଆ—ହଷ୍ଟେଲ ମେସ୍‌ର ପୂଝାରି ଡାକଦେଇ ନିଜ କାମରେ ଚାଲିଯାଇଛନ୍ତି । ଏହିପରି ଘଟନା ବହୁବହୁବାର ସେ କୋଠରୀରେ ଘଟିଥିଲା । କିନ୍ତୁ ଗୋଟିଏ କଥାରେ ଏସବୁ ସତ୍ତ୍ୱେ ମୁଁ ଆଦୌ ହେଳା କରିନାହିଁ—ତା ହେଉଛି ନିମାଇଁଚରଣଙ୍କର ଓ ଅନ୍ୟ ପିଲାଟିର ଅଧ୍ୟାପନା । ସେମାନେ କଲେଜରେ ଯେତେ ଯେତେ ପରୀକ୍ଷା ଦେଇଥିଲେ ସବୁ ପରୀକ୍ଷାରେ କୃତିତ୍ୱର ସହିତ କୃତକାର୍ଯ୍ୟ ହୋଇଥିଲେ । ଏହିପରି ଭାବରେ ନିମାଇଁଚରଣଙ୍କ ଟେଷ୍ଟ ପରୀକ୍ଷା ନିକଟବର୍ତ୍ତୀ ହେବାକୁ ଯାଉଥାଏ । ଦିନେ ପ୍ରୋକ୍ତ ହିତୈଷୀ ଅଧ୍ୟାପକ ମୋର କୌଣସି ଅପ୍ରତ୍ୟାଶିତ କାର୍ଯ୍ୟରୁ (ଅର୍ଥାତ୍ ତାଙ୍କ ଛାତିକୁ ଗୋଟାଏ ଚାପୁଡ଼ା ଦେବାରୁ) ଧରିନେଲେ ଯେ ପ୍ର— କଥା ଭାବି ଭାବି ମୁଁ ପାଗଳ ହୋଇଯାଇଛି । ମୋର ଆଉ ହଷ୍ଟେଲରେ ରହିବା ଅସମ୍ଭବ ହେଲା । ମୋତେ ସାଙ୍ଗେ ସାଙ୍ଗେ କଟକ ଚାନ୍ଦିନୀଚୌକରେ ଅବସ୍ଥିତ ମୋ ଜ୍ୟେଷ୍ଠଭ୍ରାତାଙ୍କ ବସାକୁ ଅପସାରିତ କରାଗଲା । ସେଠାରେ ମୋ ଜନନୀ ରହୁଥିଲେ । ଜନକ ଗ୍ରାମରୁ ଆସି ଉପସ୍ଥିତ ହେଲେ । ନିଜେ ଦୟାନିଧି ଦାସ, ବହୁ ହିତୈଷୀ ଅଧ୍ୟାପକ ଓ ବିଶିଷ୍ଟ ବ୍ୟକ୍ତି ମୋତେ ଦେଖିବାକୁ ଆସିଥିଲେ । ଉଣା ଅଧିକେ ସମସ୍ତେ ମୋ ଉନ୍ମାଦର କାରଣ ଅବଗତ ହୋଇ ଆହା ପଦ ଉଚ୍ଚାରଣ କରିଥିଲେ । ମୁଁ ସେ ଉନ୍ମାଦରେ ପ୍ର—କୁ କେନ୍ଦ୍ରକରି ସ୍ଥୂଳେନ୍ଦ୍ରିୟାଶ୍ରିତ ରାଜ୍ୟମାନଙ୍କ ଆଭାସ ଉପଭୋଗ କରିବାରେ ଲାଗିଲି ।

## ଏକାଦଶ ଅଧ୍ୟାୟ

ଉନ୍ମାଦ ଯୋଗୁଁ ମୋର ମସ୍ତିଷ୍କର କ୍ରିୟାତନ୍ତ୍ରମାନ ସମଧିକ ପ୍ରଖର ହୋଇପଡ଼ିବାରୁ ମୁଁ ପ୍ର— ପାଇଁ ଅତ୍ୟଧିକ ଆତୁର ହୋଇପଡ଼ିଥିଲି ଏବଂ ମୋର କଥୋପକଥନ କେବଳ ପ୍ର—ମୂଳକ ଥିଲା । ମୁଁ ଆଶୁ କବିତା ରଚନାକରି ତାର ରୂପ ଗୁଣ ଓ ତା ପାଇଁ ମୋ ଅନ୍ତରର ଆକୁଳ ଆହ୍ୱାନକୁ ରୂପାୟିତ କରୁଥିଲି । କେହି ପରିହାସରେ ସୁଦ୍ଧା ପ୍ର—ର ନିନ୍ଦା କରିଦେଲେ ମୁଁ ଉତ୍କ୍ଷିପ୍ତ ହୋଇଉଠୁଥିଲି । ମୋର ମନେ ପଡ଼ୁଛି, ଜଣେ ବନ୍ଧୁଙ୍କ ବାଳକପୁଅ ଯେ କି ବର୍ତ୍ତମାନ ଭାରତ ସରକାରଙ୍କର ଜଣେ ବଡ଼ ପାହ୍ୟାର କର୍ମଚାରୀ ଏହିପରି ଅସଙ୍ଗତ ଉପହାସ କରିବାରୁ ମୁଁ ତାକୁ ଆକ୍ରମଣ କରିବାକୁ ଏପରି ବେଗରେ ତା ଆଡ଼କୁ ଛୁଟିଲି ଯେ ସେ ଘରର ଛାତ ଉପରକୁ ଯାଇ ପାଖ ଚାଳଘର ଉପରକୁ ଡେଇଁବାରେ ସେ ଚାଳଘର ଛାତ ଭେଦକରି ଘର ମେଜିଆରେ ଯାଇ ଦାଖଲ ହୋଇଥିଲା । ପ୍ରୋକ୍ତ ହିତୈଷୀ ଅଧ୍ୟାପକ ଓ ଅନ୍ୟ କେତେକ ହିତୈଷୀ ବ୍ୟକ୍ତି ସମୟେ ସମୟେ ଆସି ମୋ ଉଦ୍ଦାମତାକୁ ଆୟତ୍ତକରିବା ଉଦ୍ଦେଶ୍ୟରେ ମୋତେ ବନ୍ଧନଯୁକ୍ତ କରୁଥିଲେ । ସମୟେ ସମୟେ ମୁଁ ବଗି ଗାଡ଼ି ଭଡ଼ା କରି କଲେଜ ହଷ୍ଟେଲକୁ ବାହାରିଯାଉଥିଲି ! ମୋତେ ସେଠାରୁ ଆଣି ବସାରେ ଛାଡ଼ି ଦିଆଯାଉଥିଲା । ମୁଁ ବେଳେବେଳେ ପ୍ର—କୁ

ଆବାହନ କରି ଗୀତ ଗାନକରୁଥିଲି । କେତେବେଳେ ବା ମୂକ ହୋଇ ତାରି କଥା ହିଁ ଭାବି ଭାବ-ବିହ୍ୱଳ ହେଉଥିଲି । ମୋର ଉନ୍ମାଦକୁ ଆରୋଗ୍ୟ କରିବା ଉଦ୍ଦେଶ୍ୟରେ ମୋତେ ନାନା ଔଷଧ ଦିଆଯାଉଥିଲା । କିନ୍ତୁ ତଦ୍ଦ୍ୱାରା କିଛି ଫଳ ହେଉ ନ ଥିଲା । ପ୍ରତିଦିନ ମୋତେ ଅଜସ୍ର ସ୍ନାନ କରି ଦିଆଯାଉଥିଲା, କିନ୍ତୁ ତଦ୍ଦ୍ୱାରା ମସ୍ତିଷ୍କର ଶାନ୍ତିବିଧାନ କରାଯାଇ ପାରୁ ନ ଥିଲା । ମୋ ଜନନୀ ମୋର ଏ ଦଶା ଦେଖି ଦୁଃଖରେ କାଠ ପାଲଟି ଯାଇଥିଲେ । ଜନକ ଗ୍ରାମକୁ ଯାଇ ମା ଦାରୁଣୀ ଠାକୁରାଣୀଙ୍କ ଶରଣାପନ୍ନ ହୋଇଥିଲେ । ମୋ ସେବାର ସକଳ ଭାର ଗ୍ରହଣ କରିଥିଲେ ଜନନୀ । ତତ୍କାଳୀନ ତାଙ୍କ ରୋରୁଦ୍ୟମାନ ମୁଖର କରୁଣ ସ୍ମୃତି ମୋର ଆଜି ମନେ ପଡ଼ୁଅଛି ।

ଏହାପରେ ପ୍ରାୟ ତିନିମାସ କାଳ ଉନ୍ମାଦଗ୍ରସ୍ତ ରହିଲାପରେ ମସ୍ତିଷ୍କର କେଉଁ ଅଜ୍ଞେୟ ପ୍ରକ୍ରିୟା ଯୋଗୁଁ ମୁଁ ଏକାବେଳକେ ମୂକ ହୋଇଗଲି । ଡାକ୍ତର ପରୀକ୍ଷାକରି ଦେଖିଲେ ଯେ ମୋର ଗତାନୁଗତିକ ଚିନ୍ତା-ଶକ୍ତି ବିଲୁପ୍ତ ହୋଇଅଛି । ମୁଁ କେବଳ ଖାଦ୍ୟଗ୍ରହଣ ଓ ମଳମୂତ୍ର ତ୍ୟାଗ ମାତ୍ର କରୁଥିଲି ଓ ନିଦ୍ରା ଯାଉଥିଲି । ସମୟେ ସମୟେ ମୋତେ ମନେହେଉଥିଲା, ମୁଁ ଏ ପୁରରେ ନାହିଁ—ଯେଉଁଠି ନିତ୍ୟ ମଳୟ ବହୁଛି—ଦିଗନ୍ତବିସ୍ତାରୀ ପଦ୍ମବନ ରହିଛି—ଅଲୌକିକ ବିହଙ୍ଗଙ୍କ ମଧୁମୟ ଗାନରେ ଦିଗବିଦିଗ ପରିପୂର୍ଣ୍ଣ ହୋଇଅଛି— ପ୍ର—ସମେତ ବହୁ ଅପୂର୍ବ ସୁନ୍ଦରୀ କୋକିଳବିନିନ୍ଦୀ ସ୍ୱରରେ ସଙ୍ଗୀତ ଗାନ କରୁଅଛନ୍ତି—ମୋ ରଚନାକୁ ଗାନ କରିବାକୁ ଏହି ସମୁତ୍ସୁକା ରୂପସୀ ଯୁବତୀମାନଙ୍କୁ ମୁଁ ଆଶୁ ରଚନାକରି ସ୍ୱକଣ୍ଠରେ ଗାନପୂର୍ବକ ସଙ୍ଗୀତସମ୍ଭାର ଯୋଗାଉଛି—ଏହାପରି ଏକ ଲୋକର ମୁଁ ନିବାସୀ ହୋଇଅଛି । ଏହାପରି ଭାବରେ ମୂକ ହୋଇ ଛଅ ମାସ ରହିଲାପରେ ଜଣେ ଆମେରିକାପ୍ରତ୍ୟାଗତ ବହୁ ଅଭିଜ୍ଞ ଡାକ୍ତରଙ୍କୁ ଡାକି ମୋ ଉନ୍ମାଦର ପରୀକ୍ଷା କରାଗଲା । ସେ ଗୋଟାଏ ବଡ଼ ବାଣ ଆଣାଇ ଫୁଟାଇଲେ । ତହିଁରେ ମୋର କର୍ଣ୍ଣ ପ୍ରଭାବିତ ହେଲାପରି ଜଣାଗଲା ନାହିଁ—ଗୋଟାଏ ଜଳନ୍ତା କୋଇଲା ଆଣି ମୋ ହାତରେ ରଖାଗଲା, ଫୋଟକା ହୋଇଗଲେ ସୁଦ୍ଧା ମୋ ମୁଖରେ କଷ୍ଟର ଚିହ୍ନ ଦେଖାଗଲା ନାହିଁ ଅଥବା ମୋର ପାଟି ଫିଟାଇ କାନ୍ଦିବାର ଯଥେଷ୍ଟ କାରଣ ଥିଲେ ସୁଦ୍ଧା ମୁଁ କାନ୍ଦିଲି ନାହିଁ । ଉକ୍ତ ଡାକ୍ତର ଅଭିମତ ଦେଇଗଲେ ଯେ ମୋର ମନ ଗୋଟିଏ ବିଷୟ ଅର୍ଥାତ୍ ପ୍ରେୟସୀ ଚିନ୍ତାରେ ପୂର୍ଣ୍ଣ ନିବିଷ୍ଟ ରହିଅଛି । ଅନ୍ୟ କୌଣସି ଅନୁଭୂତି ପାଇଁ ମସ୍ତିଷ୍କରେ ଅବକାଶ ନାହିଁ । ପ୍ରେମାସ୍ପଦର ବିନା ବିଲୋକନ ବା ସ୍ପର୍ଶନରେ ଏ ଉନ୍ମାଦ କଦାଚ ଆରୋଗ୍ୟ ହୋଇପାରିବନାହିଁ ।

ଡାକ୍ତରଙ୍କ ସୂଚିତ ଅମୋଘ ମହୌଷଧି ପ୍ରାପ୍ତିର ସମ୍ଭାବନା ନ ଥିବାରୁ ମୋର ଆତ୍ମୀୟମାନେ ମୋ ଆରୋଗ୍ୟର ସକଳ ଆଶା ପରିତ୍ୟାଗ କଲେ । ସେମାନଙ୍କ ମନରେ କି ଭାବଭାବାନ୍ତର ଖେଳୁଥିବ ଅନୁମେୟ ।

ଏହାପରେ ମୂକ ଅବସ୍ଥାରେ ମୋତେ ପ୍ରାୟ ଆହୁରି ତିନିମାସ କାଳ କଟାଇବାକୁ ହୋଇଥିଲା । ଖରାଦିନ—ଜନନୀ ଗୋଟିଏ କୋଠରୀରେ ଶୋଇ ପଡ଼ିଛନ୍ତି । ଦିନ ପ୍ରାୟ ୩ଟା ସମୟ । ଜ୍ୟେଷ୍ଠଭ୍ରାତାଙ୍କ କୋଠରୀ ମଧ୍ୟରୁ ତାଙ୍କ ପତ୍ନୀଙ୍କ କଥା ମୋର କର୍ଣ୍ଣଗୋଚର ହେଲା—ଅଥଚ ଗତ ଦଶମାସ ହେଲା ମୋ କର୍ଣ୍ଣ ଅନ୍ୟ କୌଣସି ଶବ୍ଦ—ଏପରିକି ଖୁବ୍ ବଡ଼ ବାଣର ଶବ୍ଦ ସୁଦ୍ଧା ଶୁଣିପାରୁ ନ ଥିଲା ।

ଭ୍ରାତୃଜାୟା ଭ୍ରାତାଙ୍କୁ କହିଲେ, "ଏ ଯେଉଁ ଗୁଣମଣି (ଅର୍ଥାତ୍ ମୁଁ) ପ୍ର—କୁ ଅଥଳ ସାଗରରେ ଭସାଇ ଦେଇଥିଲେ—ଯାହାହେଉ ସେ ବିଚାରୀ ବାହାହୋଇ କୂଳରେ ଲାଗିଗଲା ।"

ପ୍ର—ର ବିବାହର ସମ୍ଭାବନାରେ ବ୍ୟଥିତ ହୋଇ ମୁଁ ଉନ୍ମାଦଗ୍ରସ୍ତ ହୋଇଥିଲି । ବର୍ତ୍ତମାନ ପ୍ର—ବିବାହିତା—ଏ ସମ୍ବାଦ ଭିଦୁର ଭଳି ମୋ ଉରୋଦେଶରେ ବିଦ୍ଧ ହେଲା । କୋଠରୀ ଦ୍ୱାର ଭିତରପଟୁ ଦିଆ ହୋଇଥାଏ । ମୁଁ ବାହାରେ ଦାରଣ୍ଡାରେ ବସି ଉପରେ ଉଦ୍ଧୃତ ହୋଇଥିବା କଥା ଶୁଣିପାରିଲି । ମୋ ପାଖରୁ ୭ ହାତ ଦୂରରେ ଅଗଣାରେ ଗୋଟାଏ କୂଅ ଥିଲା । ଦଶ ମାସ ପରେ ହଠାତ୍ ମୋର ପ୍ର—ସଂକ୍ରାନ୍ତ ଦାରୁଣ ସମ୍ବାଦରେ ଚୈତନ୍ୟୋଦୟ ହେବାରୁ ମୁଁ ଚିନ୍ତାକଲି ଯେ ଏ ଜୀବନ ରହିବା ଆଦୌ ଶ୍ରେୟସ୍କର ନୁହେଁ । ଏହି କୂଅକୁ ଏହିକ୍ଷଣି ଡେଇଁ ଏ ଜୀବନରେ ତୁରନ୍ତ ଜଳାଞ୍ଜଳି ଦେବାକୁହିଁ ହେବ । ପ୍ର—ବିବର୍ଜିତ ଜୀବନ ମଧୁବିବର୍ଜିତ ମଧୁକୋଷ, ଚନ୍ଦ୍ରବିବର୍ଜିତ ରାକା ଓ ବସନ୍ତବିବର୍ଜିତ ସମ୍ବତ୍ସର ସହିତ ସମାନ । ଏଥିର କୌଣସି ଉପଯୋଗିତା ଥାଇ ନ ପାରେ ।

ଅଳ୍ପକ୍ଷଣ ଆଗରୁ ପୂର୍ଣ୍ଣଚିନ୍ତାବିବର୍ଜିତ ଓ ହଠାତ୍ ପ୍ରାପ୍ତଚୈତନ୍ୟ—ମୁଁ—ପ୍ରଥମେ କୂଅର ଫନ୍ଦ ଉପରେ ବସି ଅନ୍ତତଃ କୋଡ଼ିଏ ହାତ ତଳେ ଥିବା ପାଣିକୁ ଗୋଡ଼ ବଢ଼ାଇ ଡେଇଁପଡ଼ିଲି । ପ୍ରବଳ ଶବ୍ଦ ହେବାରୁ ଜନନୀ, ଜ୍ୟେଷ୍ଠଭ୍ରାତା ଓ ଅନ୍ୟାନ୍ୟମାନଙ୍କର ନିଦ୍ରାଭଙ୍ଗ ହେଲା । ମୁଁ କୂଅ ଭିତରେ ପଡ଼ିଛି ବୋଲି ସେମାନେ ଭାବିପାରି ନ ଥିଲେ—ସେମାନଙ୍କର ପ୍ରତୀତ ହୋଇଥିଲା ପିଜୁଳି ଗଛରେ ଚଢ଼ିଥିବା ଗୋଟାଏ ପାତିମାଙ୍କଡ଼ ବୋଧହୁଏ କୂଅରେ ପଡ଼ିଯାଇଅଛି । କିନ୍ତୁ କୂଅ ଭିତରକୁ ଚାହିଁବାରେ ସେମାନେ ପାଣି ଉପରେ ମୋତେ ଠିଆ ହୋଇଥିବାର ଦେଖିଲେ । ସାଇ ଭିତରେ କୋଳାହଳ ପଡ଼ିଗଲା । ବହୁତ ସ୍ତ୍ରୀ ଓ ପୁରୁଷ ଆସି ହାହାକାର କଲେ । ସେମାନଙ୍କ ଭିତରେ କୂଅ ବୁଡ଼ାଳି ଲୋକ ଥିଲେ ମଧ୍ୟ କୂଅ ଭିତରେ ପଶିବାକୁ କେହି ଭରସି ପାରିଲେ ନାହିଁ—କାରଣ ସେମାନଙ୍କର ଭ୍ରାନ୍ତି ହେଲା କାଳେ ପାଗଳାମିଯୋଗୁଁ ମୁଁ ସେମାନଙ୍କ ସଙ୍ଗେ ଭିଡ଼ାଓଟରି ଲଗାଇ ସେମାନଙ୍କ ଜୀବନକୁ ମଧ୍ୟ ବିପନ୍ନ କରିପକାଇବି । ମୁଁ କୂଅର ପାଣି ଉପରେ ଠିଆହୋଇ ରହିବାର ପ୍ରାୟ ୪୫ ମିନିଟ ପର୍ଯ୍ୟନ୍ତ କିଛି ସିଦ୍ଧାନ୍ତ ହୋଇପାରିଲାନାହିଁ । ଶେଷରେ ଦୁଇଜଣ ସ୍ତ୍ରୀ ଲୋକ କୂଅ ଦଉଡ଼ିକୁ କୂଅ ଭିତରକୁ ଗଳାଇଲେ ଏବଂ ମୋ ନାମ ଧରି ମୋତେ ଡାକି କହିଲେ ଯେ ଦଉଡ଼ିର ଫାନ୍ଦକୁ ଟାଣିକରି ଧର—ଆମ୍ଭେମାନେ ତୁମ୍ଭଙ୍କୁ ଟାଣି ଆଣିବୁ । ମୋ ମନରେ ଫାନ୍ଦକୁ ଟାଣ କରି ଧରିବାକୁ ଯେ କାହିଁକି ଇଚ୍ଛା ହେଲା ମୁଁ ଆଜି ମଧ୍ୟ ଅବଧାରଣ କରିପାରୁନାହିଁ । କିନ୍ତୁ ମୋର ଗତାନୁଗତିକ ଚିନ୍ତାଶକ୍ତି ନ ଥାଇ ମଧ୍ୟ ମୁଁ ସେ ସ୍ତ୍ରୀଲୋକଙ୍କ କଥା ମାନିଲି । ଫାନ୍ଦକୁ ଦୁଇ ହାତରେ ଯାପୁଟିକରି ଧରିଲି । ସେମାନେ ମୋତେ ଉଠାଇବାରେ ଲାଗିଲେ । ମଝିରେ କେଉଁଠି ଯଦି ମୁଠା ହୁଗୁଳା କରିଦେଇ ମୁଁ ଦଉଡ଼ି ଛାଡ଼ି ଦେଇଥାନ୍ତି, କୂଅନଦରେ ବାଡ଼େଇହୋଇ ମୋ ମୁଣ୍ଡ ଫାଟି ଯାଇଥାନ୍ତା, ଓ ମୁଁ ପୁଣି ପାଣି ଉପରେ ପଡ଼ି ନଷ୍ଟପ୍ରାଣ ହେବାର ବାଟ ଫିଟିଯାଇଥାନ୍ତା । କିନ୍ତୁ ମୋର ଗତାନୁଗତିକ ଚିନ୍ତାଶକ୍ତି ନ ଥାଇ ମଧ୍ୟ ମୁଁ କେଜାଣି କପରି ଆଣ୍ଟରେ ଫାନ୍ଦକୁ ଧରିଲି ଏବଂ ସେ ସ୍ତ୍ରୀଲୋକ ଦୁହେଁ ମୋତେ କୂଅ ଭିତରୁ ଦଉଡ଼ି ସାହାଯ୍ୟରେ ଟେକିଆଣି କୂଅମୂଳରେ ଥୋଇଦେଲେ । ସମବେତ ଲୋକମାନେ ଦେଖି ଅତ୍ୟନ୍ତ ବିସ୍ମୟାଭିଭୂତ ହୋଇଗଲେ ଯେ, କୋଡ଼ିଏ ହାତ ଉପରୁ ପ୍ରବଳ ବେଗରେ ପାଣି ଉପରେ ପଡ଼ିଥିଲେ ସୁଦ୍ଧା କେବଳ ମୋର ତଳିପା ମାତ୍ର ତିନ୍ତି ଅଛି—ପାଦ ଉପର ଶୁଖିଲା ରହିଛି । ପଇଁଚାଳିଶ ମିନିଟକାଳ କୌଣସି ଅଦୃଶ୍ୟ-ଶକ୍ତି ମୋତେ ଜଳ ଉପରେ ତକ୍ତ ଟେକିଧରି ରଖିଅଛି—ଜଳ ମଧ୍ୟରେ ବୁଡ଼ି ପାଟି, କାନ, ନାକଆଦିରେ ପାଣି ପଶିବାଦ୍ୱାରା ଆକଟା ହୋଇ ମରିବାର ବାଟ ରୁଦ୍ଧ ଦେଇଅଛି । ମୋ ପ୍ରାଣରକ୍ଷା ସଂକ୍ରାନ୍ତ ଏ ଅଲୌକିକ ବ୍ୟାପାର ସହଜରେ ବିଶ୍ୱାସହେବାର ନୁହେଁ,

କିନ୍ତୁ ମୁଁ ବିନା ଅନ୍ତରଞ୍ଜନରେ ଏଠାରେ ଅବିକୃତ ସତ୍ୟହିଁ ଲିପିବଦ୍ଧ କରୁଅଛି । ଜନ୍ମମରଣାଦି ସକଳ ବ୍ୟାପାରର କର୍ତ୍ତା ତଥା ନିୟନ୍ତା ସେହି ନିତ୍ୟଯୁଗଳ ସୀତାରାମ—ଲକ୍ଷ୍ମୀନାରାୟଣ । କୂପଗର୍ଭଗତ ହୋଇ ମଧ୍ୟ ମୁଁ ଯେ ନିହତ ହେବିନାହିଁ—ଜୀବିତ ରହି ତାଙ୍କର ଅନ୍ୟ କୌଣସି ଅଭିପ୍ରାୟ ସିଦ୍ଧ କରିବି, ତାଙ୍କ ଦୁର୍ଜ୍ଞେୟ ବିଧାନରେ ତାହାହିଁ ବ୍ୟବସ୍ଥିତ ହୋଇଥିଲା । ପ୍ରେମପାଇଁ ଯେଉଁ ଚରମ ତ୍ୟାଗ କରାଯାଇପାରେ, ତାହା ଅଭିଜ୍ଞବିବରେ ମୁଁ କରିସାରିଲାପରେ ମୋତେ ଜୀବନରେ ରଖି ସେ ଦୁହେଁ ତାଙ୍କର ଅପାର କରୁଣାରେ ମୋ ଜୀବନରେ ଆଉ ଗୋଟିଏ ଅଧ୍ୟାୟ ଆରମ୍ଭ କଲେ ।

ସେହିଦିନର ସନ୍ଧ୍ୟା ସାତଘଣ୍ଟା ବେଳକୁ ମୁଁ ପୂର୍ଣ୍ଣାରୋଗ୍ୟ ବ୍ୟକ୍ତିଭଳି ବ୍ୟବହାର କଲି । ମୋର ଉନ୍ମାଦକୁ ମୁଁ କୂଅ ଭିତରେ ରଖିଦେଇ ଆସିଲି ବୋଲି ସମସ୍ତେ କହିବାରେ ଲାଗିଲେ । ମୋତେ ଜାଣୁଥିବା ମହଲରେ ଆନନ୍ଦର ଜୁଆର ଖେଳିଗଲା ।

ନିତ୍ୟଯୁଗଳ ମୋତେ ଆପାତତଃ ମରଣଜୟୀ କରିଦେଇ ସଂସାର ରଙ୍ଗମଞ୍ଚରେ ଅନ୍ୟ ଭୂମିକାରେ ଅବତୀର୍ଣ୍ଣ କରାଇଦେଲେ ।

ମୁଁ ଅବଗତ ହେଲି ଯେ ପ୍ର— ମୋର ଯେଉଁ ବନ୍ଧୁଙ୍କୁ ବାଗ୍‌ଦତ୍ତା ହୋଇଥିଲା ସେ ଗୁଣମଣି ଯୌତୁକ ବାବଦରେ ବହୁ ଧନ ଦାବୀ କରିବାରୁ ପ୍ର—ସହିତ ତାଙ୍କର ବିବାହ ହୋଇପାରିଲା ନାହିଁ । ଭଗବାନଙ୍କୁ ସାକ୍ଷୀ ରଖି କରାଯାଇଥିବା ସତ୍ୟ ଧନଦ୍ୱାରା ପରାଜିତ ହେଲା । ପ୍ର— ର ଅଭିଭାବକ ମଧ୍ୟ ତାକୁ ଜଣେ ଓଡ଼ିଆପଡ଼ା ଧନିକ ଯୁବକ କରରେ ଅର୍ପଣକରି ଏ ସଂସାରରେ ଧନର ମହିମା କେଡ଼େ ଅପ୍ରତିହତ କାର୍ଯ୍ୟତଃ ତାହା ଉଦ୍‌ଘୋଷିତ କରିଥିଲେ । କିନ୍ତୁ ଏ ଯୁବକଙ୍କଠାରେ ହୃଦୟବତ୍ତା ଓ ଉଦାରତା ଥିଲା—ଯାହାକି ପ୍ରଚୁର ବିଦ୍ୟାର ଅପେକ୍ଷା ରଖେନାହିଁ । ମୋ ଆରୋଗ୍ୟର ପ୍ରାୟ ୧୦ ବର୍ଷ ପରେ ସେ ଆପଣାଛାଏଁ ମୋତେ ନିଜ ପରିଚୟ ଦେଇ ମୋ ସହିତ ବନ୍ଧୁତା କରିଥିଲେ ଓ ପ୍ର—ଗର୍ଭଜାତ ତାଙ୍କ ଏକମାତ୍ର ସନ୍ତାନ (ପୁତ୍ର)କୁ ସମୟେ ସମୟେ ମୁଁ ନିଜ ପାଖରେ ରଖିବାକୁ ସୁବିଧା କରିଦେଉଥିଲେ । ପ୍ର— ତା ବିବାହର ପ୍ରାୟ ଏକବର୍ଷ ପରେ ଏହି ଆୟୁଷ୍ମାନଟିକୁ ଧରାବକ୍ଷରେ ତାର ଜୀବନ୍ତ ସ୍ମାରକରୂପେ ରଖିଦେଇ ଅମରଧାମକୁ ପ୍ରୟାଣ କରିଥିଲା । ମୋ ଆରୋଗ୍ୟର କେତେମାସ ପରେ ମୁଁ ପୁରୀ ଜିଲ୍ଲାର ଓଲସିଂହ ହାଇସ୍କୁଲରେ ଚାକିରି କରୁଥିବାବେଳେ ତା ପରଲୋକଗମନ ସମ୍ବାଦ ସେଠାରେ ପାଇଥିଲି । ତାକୁ ଯେଉଁ ଘଟିଥିବା ନାଡ଼ିକରେ ଯବନିକାପାତ ହୋଇଥିଲା । ଏ ଆୟୁଷ୍ମାନ୍‌ଟି ତେତେବେଳେ ସୂତିକାଗାରରେ ମାତ୍ର ରହିଥିଲା । ଏବେ ପ୍ରଭୁଙ୍କ କୃପାରୁ ସେ ଓଡ଼ିଶା ସରକାରଙ୍କ ଜଣେ ଉଚ୍ଚପାହ୍ୟାର କର୍ମଚାରୀ । ପ୍ର—ର ସ୍ୱାମୀ ମଧ୍ୟ ନିକଟରେ (୧୯୫୯) ସ୍ୱର୍ଗାରୋହଣ କରିଅଛନ୍ତି । ସେ ମୋତେ ଥଟ୍ଟାରେ 'ପୀରିତି ପଥ ଖସଡ଼ା' ବୋଲି ସମ୍ବୋଧନ କରୁଥିଲେ । ତାଙ୍କର ମୋ ପ୍ରତି ଅକପଟ ଅନୁରକ୍ତି ଥିଲା । ତାଙ୍କ ଆୟୁଷ୍ମାନ୍ ଜ୍ୟେଷ୍ଠପୁତ୍ର ମଧ୍ୟ ମୋ ପ୍ରତି ସର୍ବଦା ଭକ୍ତିବିନମ୍ର । ପ୍ର—ର ପରଲୋକପ୍ରାପ୍ତିର ଅନେକ ବର୍ଷ ପରେ ବାଳକ ଥିବା ଅବସ୍ଥାରେ ସେ ମୋର ସଙ୍ଗୀହୋଇ ପ୍ଲାଟଫର୍ମରେ ସେ ତା ଜନନୀର ଆତ୍ମାକୁ ଡାକୁଥିଲା ଏବଂ ମୋତେ କହୁଥିଲା ଯେ, ତା ଆଖି ଆଗରେ ସେ ଜଣେ ଅତୀବ ସୁନ୍ଦରୀ ସ୍ତ୍ରୀକୁ ହସ ହସ ମୁହଁରେ ଠିଆ ହେବାର ଦେଖିପାରୁଅଛି । ମୋତେ କିନ୍ତୁ ଏ ଦୃଶ୍ୟ ଦେଖାଯାଉ ନ ଥିଲା । ଅଶରୀରୀ—ପ୍ର—ରୂପ ଦେଖିଥିଲେ ମୁଁ ହତଚେତନ ବା ହତପ୍ରାଣ ହୋଇଥାନ୍ତି ବୋଲି ନିଶ୍ଚିତ ବୋଧହୁଏ ମୋ ଚକ୍ଷୁକୁ ସେ ଦୃଶ୍ୟ ଦେଖିବାର ଶକ୍ତିରୁ ବଞ୍ଚିତ କରିଦେଇଥିଲା ।

# ଦ୍ୱାଦଶ ଅଧ୍ୟାୟ

ମୋର ପୂର୍ଣ୍ଣାରୋଗ୍ୟ ପରେ ମୋ ଚିତ୍ତ ଉପରେ ଅତୀବ ଗଭୀର ରେଖାପାତ କରିଥିଲା ଆଉ ଗୋଟିଏ ଘଟଣା ନିତାନ୍ତ ଅପ୍ରତ୍ୟାଶିତ ଭାବରେ ଘଟିଥିଲା । ତାହା ହେଉଛି ବନ୍ଧୁ ନିମାଇଁଚରଣଙ୍କ ଅତ୍ୟନ୍ତ ଶୋଚନୀୟ ଅକାଳ ମୃତ୍ୟୁ । ସେ ଇଂରାଜୀ ଅନର୍ସ ସହିତ ବି. ଏ. ପରୀକ୍ଷା ଦେବାପାଇଁ ଟେଷ୍ଟ ପରୀକ୍ଷାରେ ନିର୍ବାଚିତ ହୋଇଥିଲେ, କିନ୍ତୁ ଶେଷ ପରୀକ୍ଷା ଦେବା ପୂର୍ବରୁ ମୃତ୍ୟୁ-ଧାମରୁ ତାଙ୍କ ନିକଟରେ ଅଲଙ୍ଘ୍ୟ ଆହ୍ୱାନ ଆସି ଉପସ୍ଥିତ ହେଲା । ମୁଖରେ ସାମାନ୍ୟ ଗୋଟିଏ ବିଷବ୍ରଣ ତାଙ୍କ ଅକାଳ ପ୍ରୟାଣର ହେତୁ ହେଲା । ସେହି ବର୍ଷ ତାଙ୍କର ବିବାହ ହୋଇଥିଲା ଏବଂ ତରୁଣୀ ପତ୍ନୀ ଅନ୍ତଃସତ୍ତ୍ୱା ଥିଲେ । ବୃଦ୍ଧ ଜନକ, ବୃଦ୍ଧା ଜନନୀ ଓ ଯୁବତୀ ଅଙ୍କଲକ୍ଷ୍ମୀଙ୍କୁ ଶୋକସାଗରରେ ଭସାଇଦେଇ ସେ ମୃତ୍ୟୁପଥରେ ଯାତ୍ରୀ ହେଲେ । ଦୟାନିଧି ଦାସ ଓ ତିଲୋତ୍ତମାଙ୍କ ଆଶାସୌଧ ଚୂର୍ଣ୍ଣୀଭୂତ ହୋଇଗଲା । ଅନ୍ତଃସତ୍ତ୍ୱା ନବବଧୂଙ୍କ ବୈଧବ୍ୟ ଦେଖି ସେ ଦୁହେଁ ଭଗ୍ନହୃଦୟ ହୋଇପଡ଼ିଲେ । ଜଣେ କଲେକ୍ଟରଙ୍କର ଏକମାତ୍ର ପୁତ୍ର—ନବବିବାହିତ—ବି. ଏ. ପାସ୍‌ପରେ ମନୋନୟନଦ୍ୱାରା ଆଇ. ସି. ଏସ୍. ହେବା ପୂର୍ଣ୍ଣ ନିଶ୍ଚିତ—ଏଥିରୁ ବଳି ଯୁବକ ଆଉ କି ଭାଗ୍ୟର ଅଧିକାରୀ ହୋଇପାରେ । ନିମାଇଁଚରଣଙ୍କ ପରି ତତ୍କାଳୀନ ଓଡ଼ିଶାରେ ତାଙ୍କ ସମସାମୟିକମାନଙ୍କ ମଧ୍ୟରେ ଭାଗ୍ୟବନ୍ତ ଆଉ ଜଣେହେଲେ କେହି ନ ଥିଲେ । ଅଥଚ ଏ ଭାଗ୍ୟର ଭୋଗରୁ ବିଧାତା ତାଙ୍କ ବିଚିତ୍ର ବିଧାନରେ ତାଙ୍କୁ ବଞ୍ଚିତ କରିଦେଇ ଲୋକାନ୍ତରିତ କରିଦେଲେ । ପ୍ର— ତେତେବେଳକୁ ଲୋକାନ୍ତରିତ ହୋଇ ନ ଥିଲେ ସୁଦ୍ଧା ପରହସ୍ତଗତା ହୋଇସାରିଥାଏ । ପ୍ର—ଠାରୁ ମୋର ଚିର ବିଚ୍ଛେଦ ଓ ଅପମୃତ୍ୟୁଦ୍ୱାରା ମୋଠାରୁ ନିମାଇଁଚରଣଙ୍କର ଚିରାପସାରଣ ମୋତେ ବିହ୍ୱଳ କରିପକାଇଲା । ଉନ୍ମାଦରୁ ପୂର୍ଣ୍ଣାରୋଗ୍ୟ ଲାଭ କରିଥିବାରୁ ମୋ ଜନକ ଜନନୀ ନିମାଇଁଚରଣଙ୍କ ପାଇଁ ଦୁଃଖାଭିଭୂତ ହୋଇ ସ୍ୱାସ୍ଥ୍ୟକୁ ପୁନଃବିପନ୍ନ କରିବାକୁ ବାରଣ କରିଥିଲେ । କିନ୍ତୁ ଭାଗ୍ୟଚକ୍ରର ଦାରୁଣ ଆବର୍ତ୍ତନ ଦେଖି ମୁଁ ପୂରାପୂରି ଚକିତ ହୋଇ-ଯାଇଥିଲି । ନିମାଇଁଚରଣଙ୍କ ତୁଲ୍ୟ ଦୁଃଖର ସାଥୀ ସହୃଦୟ ବୟସ୍ୟ ଏ ଜୀବନରେ ଆଉ କେହି ହୋଇ-ପାରିବନାହିଁ ଭାବି ମୁଁ ନିଜକୁ ନିଃସ୍ୱ ମନେକଲି । ପ୍ର—ବିଚ୍ଛେଦର କଷଣ ଶତଗୁଣିତ ହୋଇ ମୋତେ ଅଭିଭୂତ କଲା । ମୋ ହୃଦୟ ଭଳି କଷଣକର୍ଷିତ ହୃଦୟ ଖୁବ୍ କମ୍ ଲୋକଙ୍କର ଥିବ । ମୋର ଉପଲବ୍ଧି ହୋଇଅଛି ଯେ ମୋତେ କବି କରି ଗଢ଼ିବା ନିମନ୍ତେ ବିଧାତା ବହୁବିଚ୍ଛେଦରେ ମୋ ହୃଦୟକୁ ଦୀର୍ଣ୍ଣ କରି ଆସୁଅଛନ୍ତି । ରକ୍ତାକ୍ତ ହୃଦୟ ହିଁ କବିତା-ଲତିକାର ପ୍ରକୃଷ୍ଟ ଆଲବାଳ । ଏହାପରି ଗୋଟିଏ ହୃଦୟକୁ ଯେନି କୌଣସି ପ୍ରକାରେ ମୋତେ ସଂସାରପଥରେ ଅଗ୍ରଗତି କରିବାକୁ ହିଁ ପଡ଼ିବ ଏ ଚିନ୍ତା ଦିନକୁ ଦିନ ମୋ ମନରେ ଦୃଢ଼ୀଭୂତ ହୋଇପଡ଼ିଲା । ସେ ସମୟର ବର୍ଷେ ଦେଢ଼ ବର୍ଷର ଭ୍ରାନ୍ତିକର ଘଟଣାମାନଙ୍କର କ୍ଷିପ୍ରଗତି ଦେଖି ମୁଁ ଅବାକ୍ ହୋଇପଡ଼ିଥିଲି । ଆଉ ଉଚ୍ଚ ଶିକ୍ଷା ଲାଭକରି ଜୀବନରେ ବଡ଼ ହେବାକୁ ଧନପ୍ରାପ୍ତି ହେବାର ବାଟ ଥିଲା ବା କେଉଁଠି ? ଶରୀର କ୍ଷୀଣ, ହୃଦୟ ଭଗ୍ନ ଓ ଉଚ୍ଚାଶା ଛିନ୍ନ ହୋଇଥିଲା । ପ୍ର— ଓ ନିମାଇଁଚରଣ ବି ଦୂର ହେବାରୁ ଅନ୍ତର ହୋଇଥିଲା ଏକାନ୍ତ ବିଧୁର । ଅବସ୍ଥା ଏତାଦୃଶ ଥିବା ସମୟରେ ପୁରୀଜିଲ୍ଲା ଓଲସିଂହ ଉଚ୍ଚ ଇଂରାଜୀ ବିଦ୍ୟାଳୟର ସହକାରୀ ପ୍ରଧାନ ଶିକ୍ଷକ ପଦ ଖାଲି ପଡ଼ିଛି ବୋଲି ସମ୍ବାଦପତ୍ରମାନଙ୍କରେ ବିଜ୍ଞାପନ ପ୍ରକାଶିତ ହେଲା । କେତେକ ବନ୍ଧୁଙ୍କ ପରାମର୍ଶରେ ମୁଁ ସେ ପଦ ପାଇଁ ପ୍ରାର୍ଥୀ ହୋଇ

ଅବେଦନପତ୍ର ପଠାଇଲି ଏବଂ ସେ ପଦ ମୋତେ ପ୍ରଦତ୍ତ ହେଲା ବୋଲି କେତେକ ଦିବସ ପରେ ବିଦ୍ୟାଳୟର ସେକ୍ରେଟେରୀ ଜମିଦାର ଶ୍ରୀ ଦାଶରଥି ପଟ୍ଟନାୟକଙ୍କଠାରୁ ପତ୍ର ପାଇଲି ।

ବ୍ରିଟିଶ ପୂର୍ବ ଯୁଗରେ ରଚିତ ଓଡ଼ିଆ ଜାତୀୟ ସାହିତ୍ୟର ସମୁଦ୍ଧାର ନିମନ୍ତେ କଲେଜରେ ଅଧ୍ୟୟନ କରୁଥିବା ସମୟରୁ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସାହଚର୍ଯ୍ୟ କରି ମୁଁ କିଛି କାର୍ଯ୍ୟ କରିଥିଲି । ଡକ୍ଟର ମହାନ୍ତିଙ୍କୁ କେନ୍ଦ୍ର କରି ଗୋଟିଏ ସାହିତ୍ୟିକ ଗୋଷ୍ଠୀ (ପରେ ପ୍ରାଚୀ ସମିତି ନାମରେ ସୁପରିଚିତ) ସଂଗଠିତ ହୋଇଆସୁଥିଲା । ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି, ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚଉଧୁରୀ, ଅଧ୍ୟାପକ ଗୁରୁଚରଣ ମହାନ୍ତି, ଡକ୍ଟର କରୁଣାକର କର ଓ ମୁଁ ଏଥିରେ ମୁଖ୍ୟ ବ୍ୟକ୍ତି ଥିଲୁଁ । ଉକ୍ତାଦରୁ ମୋର ଆରୋଗ୍ୟ ପରେ ମୁଁ ଏଥିରେ ପୂର୍ଣ୍ଣପ୍ରାଣରେ ପୁନର୍ବାର ଯୋଗଦାନ କରିଥିଲି । ପ୍ରାଚୀନ ତାଳପତ୍ର ପୋଥି ସଂଗ୍ରହକରି ପ୍ରକାଶିତ ଗ୍ରନ୍ଥମାନଙ୍କର ପାଠ ସଂଶୋଧନ ଓ ଅପ୍ରକାଶିତ ଗ୍ରନ୍ଥମାନଙ୍କର ପ୍ରକାଶ ଆମ୍ଭମାନଙ୍କର ଲକ୍ଷ୍ୟ ଥିଲା ।

ମୁଁ ଓଲସିଂହ ଉଚ୍ଚ ଇଂରାଜୀ ବିଦ୍ୟାଳୟର ସହକାରୀ ପ୍ରଧାନ ଶିକ୍ଷକ ହୋଇ ଜୀବିକାର୍ଜନ ଉଦ୍ଦେଶ୍ୟରେ ପ୍ରୟାଣ କରୁଥିବାରୁ ଏ ଗୋଷ୍ଠୀର କାର୍ଯ୍ୟପ୍ରତି ମୁଁ ଯେପରି ସଜାଗ ରହେ ଏହି ମର୍ମରେ ଆମ୍ଭମାନଙ୍କ ମଧ୍ୟରେ ପରାମର୍ଶ ହୋଇଥିଲା ।

୧୯୨୮ ମସିହାର ଆରମ୍ଭରୁ ୧୯୨୯ ମସିହାର ପ୍ରାୟ ଅର୍ଦ୍ଧ ପର୍ଯ୍ୟନ୍ତ ମୁଁ ଓଲସିଂହ ସ୍କୁଲରେ ଶିକ୍ଷକତା କରିଥିଲି । ଶିକ୍ଷକ ଓ ଛାତ୍ରଙ୍କ ମଧ୍ୟରେ ମୋ ବିଦ୍‌ବତ୍ତା ବିଷୟରେ ସମୁଚ୍ଚ ଧାରଣା ରହିଥିଲା । ମୋ ଅଧ୍ୟାପନାରେ ଛାତ୍ରମାନେ ଅତ୍ୟନ୍ତ ପ୍ରୀତ ଥିଲେ । ମୁଁ ଅନେକ ସମୟରେ ବ୍ରିଟିଶ ପୂର୍ବ ଯୁଗର ଜାତୀୟ ସାହିତ୍ୟର ଗୌରବ ବିଷୟ କହି ସେମାନଙ୍କୁ ଉଦ୍‌ବୁଦ୍ଧ କରୁଥିଲି ଏବଂ ଏହି ପ୍ରକ୍ରିୟାରେ ସେମାନଙ୍କ ଅନ୍ତର୍ନିହିତ ଦେଶପ୍ରୀତି ସନ୍ଦୀପିତ ହେଉଥିଲା । ତାଳପତ୍ର ପୋଥିର ମାହାତ୍ମ୍ୟ ସହିତ ପରିଚିତ କରିବାରେ ଅଧିକାଂଶ ଛାତ୍ର ନିଜ ନିଜ ଘରୁ ଦୁର୍ଲ୍ଲଭ ଓ ଅପ୍ରକାଶିତ (ତାଳପତ୍ର ଲିଖିତ) ଗ୍ରନ୍ଥମାନ ଆଣି ଉପାୟନ ଭାବରେ ଦେଉଥିଲେ । ଓଲସିଂହ ଅଞ୍ଚଳରେ ବହୁତ ଖାନ୍‌ଦାନ ପରିବାର ଅଛନ୍ତି । ପ୍ରାଚୀନ ଧରଣର ଆଣ୍ଟୁଘର ଥିବାରୁ ଶୁରି ପାଞ୍ଚ ପୁରୁଷ ବା ତତୋଧିକକାଳ ହେଲା ସେମାନଙ୍କର ଘରପୋଡ଼ି ହୋଇନାହିଁ । ତେଣୁ ଦୁଇଶହ ଅଢ଼େଇଶ ବର୍ଷ ତଳେ ଲେଖା ହୋଇଥିବା ବହୁ ଓଡ଼ିଆ ବା ସଂସ୍କୃତ ଗ୍ରନ୍ଥ ସେମାନଙ୍କ ଘରମାନଙ୍କରେ ପେଡ଼ି ପେଡ଼ି ହୋଇ ସାଇତା ହୋଇଅଛି । ପିଲାମାନେ ଅପଣା ଆପଣା ଘରର ପେଡ଼ି ଫିଟାଇ ସଦୃଚ୍ଛାକ୍ରମେ ପୋଥିମାନ ଆଣି ମୋତେ ଦେଉଥିଲେ । ମୁଁ କୋମଳ ମଧୁର ବଚନ ମାତ୍ର କହିବାରେ ସେମାନେ କୃତକୃତାର୍ଥ ହୋଇ-ଯାଉଥିଲେ । ମୋଠାରୁ ଅନ୍ୟ କୌଣସି ପ୍ରାପ୍ୟ ସେମାନେ କାମନା କରୁ ନ ଥିଲେ । ଆଜି ଊର୍ଦ୍ଧ୍ୱ ୩୨ ବର୍ଷର ବ୍ୟବଧାନ ପରେ ସେ ସରଳବିଶ୍ୱାସୀ, ଅକପଟହୃଦୟ, ବାଳକଟିମାନଙ୍କର ମୁଖ ମୋ ଅନ୍ତଶ୍ଚକ୍ଷୁରେ ପ୍ରତିଭାତ ହେଉଅଛି । ଜୀବନର ଦୌଡ଼ରେ ସେମାନଙ୍କ ମଧ୍ୟରୁ କିଏ କୁଆଡ଼େ ପଛରେ ପଡ଼ି ଅନ୍ଧାରରେ ନିଭିଗଲେଣି, କିନ୍ତୁ ଦେଶପ୍ରେମୀ ଶିକ୍ଷକଙ୍କୁ ଆନନ୍ଦ ଦେବାପାଇଁ ସେମାନେ ମୋ ହାତରେ ଆଣି ଓଡ଼ିଆ ସାହିତ୍ୟର ବହୁ ଅମୂଲ୍ୟ ସମ୍ପଦ ଅର୍ପଣ କରିଥିଲେ । ମୁଁ ସେସବୁକୁ ଡକ୍ଟର ମହାନ୍ତି ଓ ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚଉଧୁରୀଙ୍କ ନିକଟକୁ କଟକ ପଠାଇ ଦେଉଥିଲି ଓ ପ୍ରାଚୀ ସମିତି ପାଇଁ ଏ ସବୁର ଉପଯୋଗିତା ସେମାନେ ଉପଲବ୍ଧି-କରି ପରମପ୍ରୀତ ହେଉଥିଲେ । ଦୁହେଁ ଉଲ୍ଲସିତ ହୋଇ ଥରେ ଓଲସିଂହ ବିଦ୍ୟାଳୟରେ ପଦାର୍ପଣ

କରିଥିଲେ ଏବଂ ସେ ଦୁହିଁଙ୍କ ତୁଲ୍ୟ ଅତି ସମ୍ମାନିତ ଦୁର୍ଲ୍ଲଭଦର୍ଶନ ବ୍ୟକ୍ତି ସେଠାରୁ ଆସିଥିବାରୁ ବିଦ୍ୟାଳୟର କର୍ତ୍ତାମାନେ ଅତ୍ୟନ୍ତ ଆପ୍ୟାୟିତ ହୋଇଥିଲେ । ତାଳପତ୍ର ପୋଥିମାନଙ୍କରେ ଉତ୍କଳର ଅଜ୍ଞାତ ଓ ଅମୂଲ୍ୟ କେତେ ସାହିତ୍ୟରତ୍ନ ଯେ ଲିପିବଦ୍ଧ ରହିଅଛି ଏହା ସେମାନଙ୍କ ଭାଷଣରୁ ଅବଗତ ହୋଇ ସ୍ଥାନୀୟ ଜନତା ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ ।

ମୁଁ ଛାତ୍ରାବାସରେ ଅଧୀକ୍ଷରୂପେ ଗୋଟିଏ ସ୍ୱତନ୍ତ୍ର କୋଠରୀରେ ରହୁଥିଲି । ସେ କୋଠରୀ ପ୍ରାଚୀନ ପୋଥି-ସଂଗ୍ରହର ଗୋଟାଏ ପେଣ୍ଠରୂପେ ପରିଚିତ ହୋଇଥିଲା ଏବଂ ବହୁ ଯୁବକ ଛାତ୍ର ମୋର ସାହିତ୍ୟପ୍ରାଣତା ଦେଖି ମୋ ପ୍ରତି ସାତିଶୟ ଭକ୍ତିଶୀଳ ଓ ଅନୁରକ୍ତ ହୋଇ-ପଡ଼ିଥିଲେ । ରଘୁନାଥ ହରିଚନ୍ଦନଙ୍କ ଲୀଳାବତୀ, ଦେନଇ ଦାସଙ୍କ ୩୨ ଛାନ୍ଦ ବିଶିଷ୍ଟ ବୃହତ୍ ଗୋପୀଭାଷା, ଦୀନବନ୍ଧୁ ଖାଡ଼ଙ୍ଗାଙ୍କ ଓଡ଼ିଆ ଭାଗବତ, କାର୍ତ୍ତିକ ଦାସଙ୍କ ରୁକ୍ମିଣୀ ବିଭା, ଅର୍ଜୁନ ଦାସଙ୍କ ରାମବିଭା, ଦୀନକୃଷ୍ଣ ଦାସଙ୍କ ଜଗମୋହନ ଛାନ୍ଦ, ଚଉତିଶା ମଧୁଚନ୍ଦ୍ରର ଚଉତିଶାସମ୍ଭାର ଆଦି ଓଡ଼ିଆ ସାହିତ୍ୟର ବହୁ ମହାର୍ଘ ସମ୍ଭାର ପ୍ରଥମେ ସେ ଅଞ୍ଚଳରୁ ମୋର ଅନୁରକ୍ତ ଛାତ୍ର-ମାନଙ୍କଦ୍ୱାରା ସଂଗୃହୀତ ହୋଇ ପରେ ଯଥାକାଳରେ ପ୍ରାଚୀ ସମିତିଦ୍ୱାରା ପ୍ରକାଶିତ ହୋଇଥିଲା । ଓଲସିଂହ ଅଞ୍ଚଳରୁ ଆନୀତ ଆହୁରି ଅନେକ ଗ୍ରନ୍ଥ ଏ ପର୍ଯ୍ୟନ୍ତ ମଧ୍ୟ ଲୋକଲୋଚନ ଗୋଚରକୁ ଆସିପାରିନାହିଁ । ଓଡ଼ିଶାର ପୁରୀଜିଲ୍ଲାର ଖୋର୍ଦ୍ଧା ଅଞ୍ଚଳ ପ୍ରାଚୀନ ତାଳପତ୍ର ପୋଥିରେ ଅତ୍ୟନ୍ତ ସମୃଦ୍ଧ, କାରଣ ଖୋର୍ଦ୍ଧା ଓଡ଼ିଶା ଗଜପତିଙ୍କର ବହୁଦିନ ରାଜଧାନୀ ଥାଇ ଉତ୍କଳୀୟ କୃଷ୍ଟିର ଗୋଟିଏ ପ୍ରଧାନ କେନ୍ଦ୍ରରେ ପରିଣତ ହୋଇଥିଲା । ଖୋର୍ଦ୍ଧା (ଯହିଁର କି ଓଲସିଂହ ଅନ୍ତର୍ଗତ) ଅଞ୍ଚଳରେ ନିୟମିତ ପ୍ରତ୍ନତାତ୍ତ୍ୱିକ ଅନୁସନ୍ଧାନ ଚଳାଇଲେ ବହୁ ଅମୂଲ୍ୟ ତାଳପତ୍ର ପୋଥି ଓ ଅନ୍ୟାନ୍ୟ ବହୁ ପ୍ରତ୍ନ ସାମଗ୍ରୀ ଜାତିର କରଗତ ହୋଇପାରନ୍ତା । ବିଶେଷ କରି ଓଲସିଂହ ଅଞ୍ଚଳରେ ଯହିଁରେ କି ଖାନ୍‌ଦାନ ଘରମାନଙ୍କରେ ପୁରୁଷ ପୁରୁଷ ଧରି ଅଗ୍ନିକାଣ୍ଡ ଘଟିନାହିଁ ଅସଂଖ୍ୟ ଅଜ୍ଞାତ ତାଳପତ୍ର ପୋଥି ଏବେ ମଧ୍ୟ ରହିଅଛି ବୋଲି ମୋର ଦୃଢ଼ ପ୍ରତୀତି । ମୁଁ ଯାହା ଆରମ୍ଭ ମାତ୍ର କରିଥିଲି ଅନୁକୂଳ ସମୟରେ ଓଡ଼ିଆ ଜାତି ତାହା ସମ୍ପୂର୍ଣ୍ଣ କରୁ । ତାହାହେଲେ ଓଡ଼ିଆ ସାହିତ୍ୟ ଇତିହାସର ବହୁ ଶୂନ୍ୟସ୍ଥାନ ପରିପୂରଣ ହେବ ଏବଂ ବହୁ ତମସାଚ୍ଛନ୍ନ ସ୍ଥାନ ଆଲୋକୋଦ୍‌ଭାସିତ ହେବ । ବଢ଼ି, ଘରପୋଡ଼ି ଆଦି ବିପତ୍ତିରେ ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳରେ ବିଲୁପ୍ତ ପୋଥିର ପ୍ରତିଲିପି ଏହି ଖୋର୍ଦ୍ଧା ଓଲସିଂହ ଅଞ୍ଚଳରେହିଁ ସଯତ୍ନ ଗଚ୍ଛିତହୋଇ ରହିଅଛି ।

ଜାତୀୟ ସାହିତ୍ୟକୁ ସଂରକ୍ଷା କରିବାପାଇଁ ପ୍ରତ୍ୟକ୍ଷ ସଂଗ୍ରାମ କରିବାକୁ ସୀତାରାମ ମୋତେ ସୃଷ୍ଟି କରି-ଅଛନ୍ତି । ତେଣୁ ଓଲସିଂହର କ୍ଷୁଦ୍ର ପରିସର ତ୍ୟାଗକରି ଆହୁରି ପ୍ରଶସ୍ତ ରଙ୍ଗମଞ୍ଚକୁ ଯିବାପାଇଁ ମୋତେ ପରୋକ୍ଷ-ଭାବରେ ଆହ୍ୱାନ ଆସିଲା । ତେତେବେଳକୁ ମୁଁ ପ୍ରାଚୀ ସମିତିକୁ ଶହ ଶହ ଦୁର୍ଲ୍ଲଭ ପୋଥି ଯୋଗାଇ ତାକୁ ପୋଥିସମ୍ଭାରରେ ସମଧିକ ସମୃଦ୍ଧ କରିସାରିଥିଲି ।

ଏ ସଂସାରରେ କୌଣସି କ୍ଷେତ୍ରରେ କାର୍ଯ୍ୟ କଲେ ଓ ଯଶସ୍ୱୀ ହେଲେ କେତେକ ବ୍ୟକ୍ତିଙ୍କ ମନରେ ଅସହିଷ୍ଣୁତାମୂଳକ ପ୍ରତିଦ୍ୱନ୍ଦ୍ୱୀ ଭାବ ଛୁଏଁ ଛୁଏଁ ଉଦ୍ରେକ ହୋଇଥାଏ । ତେଣୁ ଏ ବିଷୟରେ ସର୍ବଦା ସାବଧାନ ରହି ପ୍ରତିଦ୍ୱନ୍ଦ୍ୱୀମାନଙ୍କ ଅସହିଷ୍ଣୁ ଭାବକୁ ନିରସ୍ତ କରିବା ଉଚିତ । ଆଜି ୧୯୫୯ ମସିହାରେ ମୁଁ ଏହି ଯେଉଁ ସାବଧାନ ବାଣୀ ଉଚ୍ଚାରଣ କରୁଅଛି, ଏହାର ମର୍ମ ସମ୍ୟକଭାବରେ ଉପଲବ୍ଧି କରିବାକୁ ମୋତେ ବହୁତ ସମୟ ଲାଗିଅଛି । ୧୯୨୯ ମସିହାରେ ମୁଁ ସଂସାରର ରୀତି ବିଷୟରେ ଆଦୌ ଅଭିଜ୍ଞ ନ ଥିଲି । ଆଦର୍ଶବାଦରେ ଗୃଳିତ ହୋଇ ପାରିପାର୍ଶ୍ୱିକ ବାସ୍ତବ ସ୍ଥିତି ପ୍ରତି ଆଦୌ ସଜାଗ ହେଉ ନ ଥିଲି । ଫଳତଃ ଗୁଡ଼ାଏ ପରିହାର୍ଯ୍ୟ ଘଟଣା ବରଣକରି

ଆଣୁଥିଲା ଯାହାକି ବ୍ୟକ୍ତିବିଶେଷର ଆଦର୍ଶବାଦର ଦୌଡ଼ ସହିତ ତାଳ ଦେଇ ଗତି କରିପାରୁ ନ ଥିବା ପାରିପାର୍ଶ୍ୱିକ ସଂସାରର ସୃଷ୍ଟି ।

ସାମାନ୍ୟ ଶିକ୍ଷକ ହୋଇ ବିଶେଷ ଗୁଡ଼ାଏ ବିଦ୍ୱାନ ଓ ପ୍ରଖ୍ୟାତ ହେବା ସ୍ୱତଃହିଁ କେତେକ ସମାନ ସ୍ଥିତିର ଲୋକଙ୍କ ମନରେ ଈର୍ଷା ଓ ଅସହିଷ୍ଣୁଭାବ ଜାତ କରିଥିଲା । ବିଦ୍ୟାଳୟକୁ ଗଢ଼ି ଆଣିଥିବା ଆଇ. ଏ. ପଢ଼ା ପ୍ରଧାନଶିକ୍ଷକଙ୍କ ସହିତ ମତଭେଦ ଏଡ଼ି ପାରିଲି ନାହିଁ ।

ସେ ଯେଉଁ ଖାତରେ ହଷ୍ଟେଲନିବାସୀ ପିଲାମାନଙ୍କୁ ଚଳାଇ ଆଣିଥିଲେ ମୁଁ ସେ ଖାତକୁ ମୋର ଅସ୍ଥାୟୀ ପ୍ରଧାନଶିକ୍ଷକ ଥିବା ସମୟରେ ବଦଳାଇ ଦେଲି ଓ ଉତ୍କଳମଣି ଗୋପବନ୍ଧୁଙ୍କ ପ୍ରତିଷ୍ଠିତ ସତ୍ୟବାଦୀ ସ୍କୁଲର ଚାଲିଚଳଣମାନ ପ୍ରବର୍ତ୍ତିତ କରିଦେଲି ।

ଓଲସିଂହର ଅର୍ଦ୍ଧେକ ମାତ୍ର ଛାତ୍ର ଏଥିପାଇଁ ପ୍ରସ୍ତୁତ ଥିଲେ । ଅନ୍ୟ ଅର୍ଦ୍ଧେକ ସ୍ଥାୟୀ ପ୍ରଧାନ ଶିକ୍ଷକଙ୍କ ପୁରାତନ ଖାତକୁ ଝୁରିହେଲେ ।

ନୂତନ ଖାତର ପ୍ରବର୍ତ୍ତନ ଯୋଗୁଁ ମୋତେ ଗୁଡ଼ାଏ ପ୍ରଭାବଶାଳୀ ବ୍ୟକ୍ତିଙ୍କ ସନ୍ତାନମାନଙ୍କ ଉପରେ କଠୋର ହେବାକୁ ପଡ଼ିଥିଲା । କ୍ରମେ ଆଦର୍ଶର ଫରକ ଯୋଗୁ ବିଦ୍ୟାଳୟର ଛାତ୍ରମାନଙ୍କ ମଧ୍ୟରେ ବିଭେଦ ଉପସ୍ଥିତ ହେଲା ।

ସ୍ଥାନୀୟ ଜନମତ ବିଦ୍ୟାଳୟର ଚିରାଚରିତ ଖାତରେ ବିପ୍ଳବାତ୍ମକ ପରିବର୍ତ୍ତନ ଆନୟନ ନିମନ୍ତେ ପୂରା ପ୍ରସ୍ତୁତ ନ ଥିଲା ।

ପୁରାତନ ଓ ନୂତନ ପ୍ରବର୍ତ୍ତିତ ଖାତ ମଧ୍ୟରେ କେହି ସାଲିସ ଆଣିପାରିଲେ ନାହିଁ । ମୋ ଆଦର୍ଶ ଗ୍ରହଣ କରିଥିବା ଛାତ୍ରମାନେ ମୁଖ୍ୟତଃ ବିଦ୍ୟାଳୟର ଉପର ଚାରି ଶ୍ରେଣୀର ଅଧିବାସୀ ଥିଲେ । ସ୍ଥାୟୀ ପ୍ରଧାନ-ଶିକ୍ଷକଙ୍କ ଅନୁଗାମୀ ଛାତ୍ରମାନେ ସେମାନଙ୍କ ବିରୋଧୀ ହୋଇପଡ଼ିଲେ ଏବଂ ସତ୍ୟବାଦୀ ସ୍କୁଲର ଖାତମାନ ସେମାନଙ୍କୁ ନ ସୁହାଇବାରୁ ମୋ ବିରୁଦ୍ଧରେ ପ୍ରଭାବଶାଳୀ ମହଲରେ ଜନମତ ସୃଷ୍ଟିକଲେ । ମୋ ପ୍ରବର୍ତ୍ତିତ ଆଦର୍ଶର ସପକ୍ଷରେ ଲଢ଼ୁଥିବା ଛାତ୍ରମାନେ ମଧ୍ୟ ବିଦ୍ୟାଳୟର ପୁରୁଣା ଖାତକୁ ଗ୍ରହଣ କରିବାକୁ ରାଜି ନ ହୋଇ ସ୍ଥାନୀୟ ଜନମତକୁ ବିକ୍ଷୁବ୍ଧ ଓ ବିଭାଜିତ କରିପକାଇଲେ ।

ତେଣୁ ବିଦ୍ୟାଳୟ ପରିଚାଳନା କମିଟିଙ୍କ ସିଦ୍ଧାନ୍ତରେ ମୋତେ ଆଗ ବିଦ୍ୟାଳୟ ତ୍ୟାଗ କରିବାକୁ ହୋଇଥିଲା । ଯେଉଁ ବ୍ୟକ୍ତି ସ୍ଥାୟୀ ପ୍ରଧାନଶିକ୍ଷକ ହୋଇଥାନ୍ତେ ସେ ସ୍ଥାୟୀ ହୋଇପାରିଲେ ନାହିଁ । ପରେ ସେ ତାଙ୍କ ଶିକ୍ଷାଗତ ଯୋଗ୍ୟତା ଯୋଗୁ ଗୋଟିଏ ମାଇନର ସ୍କୁଲର ହେଡ଼ମାଷ୍ଟର ହୋଇ ଜୀବନଯାପନ କଲେ । ମୋ ଆଦର୍ଶ ଗ୍ରହଣ କରିଥିବା କେତେକ ଛାତ୍ର ବିଦ୍ୟାଳୟ ଛାଡ଼ିଦେଲେ ।

ମୁଁ ଶିକ୍ଷାବିଭାଗର ଭୁଙ୍ଗ କର୍ତ୍ତାଙ୍କ ନିକଟରେ କମିଟି ସିଦ୍ଧାନ୍ତ ବିରୁଦ୍ଧରେ ଆବେଦନ କରି ଅସମାନ ସଂଗ୍ରାମରେ ପ୍ରବୃତ୍ତ ହୋଇଥିଲି । ତଥାପି ଭୁଙ୍ଗ କର୍ତ୍ତା ମୋ ଆବେଦନ ଫଳରେ ସ୍କୁଲର ସରକାରି ମଞ୍ଜୁରି ପ୍ରତ୍ୟାହାର କରିନେବାର ପ୍ରକାଶ୍ୟ ସୂଚନା ବିଦ୍ୟାଳୟ କର୍ତ୍ତୃପକ୍ଷଙ୍କୁ ଦେଇଥିଲେ, କିନ୍ତୁ କଟକର ଜଣେ ଦି'ଜଣ ରାୟବାହାଦୁରଙ୍କ ସାଲିସ ଉଦ୍ୟମ ଫଳରୁ ମୋର ବାକିଆ ବେତନତକ କର୍ତ୍ତୃପକ୍ଷ କଟକଠାରେ ମୋ ନିକଟରେ ପହଞ୍ଚାଇ ଦେଇଥିଲେ । ତାଛଡ଼ା ଅନ୍ୟ ବିଶେଷ ଫଳ ବା ହୁଅନ୍ତା କଅଣ ? ଏ ସଂସାରଟା ଯେ ଧନିକଙ୍କର !!! କ୍ଷମତା ପ୍ରଭାବରି ହିଁ ଯେ ଆୟତ୍ତାଧୀନ ।

ଘଟନାର ଏତାଦୃଶ ପର୍ଯ୍ୟାୟ ମୋତେ ସାହିତ୍ୟ-ପାଇଁ ସଂଗ୍ରାମ ଚଳାଇବାକୁ ପ୍ରଶସ୍ତତର କ୍ଷେତ୍ରକୁ ଟାଣି ଆଣିଲା । ଆପାତ ଦୃଷ୍ଟିକୁ ମୋର ଏ କ୍ଷେତ୍ର ପରିବର୍ତ୍ତନ ମାନବକୃତଭଳି ପ୍ରତୀୟମାନ ହେଉଥିଲେ ସୁଦ୍ଧା ଦୈବର ଅଦୃଶ୍ୟ ହସ୍ତ ଓଲସିଂହରୁ ମୋର ପ୍ରତିଭାକୁ କ୍ଷିପ୍ର କରିବା ମାନସରେ ସେଠାରେ ଏ କାଣ୍ଡ ସର୍ଜନା କରି-ଥିଲା ।

# ତ୍ରୟୋଦଶ ଅଧ୍ୟାୟ

ମୁଁ ଓଳସିଂହରୁ ବିଦାୟ ନେବାବେଳକୁ ଏଣେ କଟକରେ ପ୍ରାଚୀ ସମିତି ସୁଦୃଢ଼ ହୋଇ ସଂସ୍ଥାପିତ ହୋଇସାରିଥିଲା । କଲିକତାର ପ୍ରସିଦ୍ଧ ଧନିକ ଓଡ଼ିଆ ବ୍ୟବସାୟୀ ସ୍ୱର୍ଗତ ଭାସ୍କରଚନ୍ଦ୍ର ଭୂୟାଁ, ସ୍ୱର୍ଗତ ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚଉଧୁରୀଙ୍କ ଭଗ୍ନୀପତି ଥିଲେ ଏବଂ ସେ ପ୍ରାଚୀ ସମିତିକୁ ପଚିଶ ହଜାର ପର୍ଯ୍ୟନ୍ତ ଟଙ୍କା ଦାନ କରିବାରୁ ପ୍ରାଚୀ ପ୍ରେସ ବୋଲି ଗୋଟିଏ ପ୍ରେସ କଟକ ଗଣେଶଘାଟ ଗଳିର ଗୋଟାଏ ଦୋମହଲା ପକ୍କା ଘରେ ପ୍ରତିଷ୍ଠିତ ହୋଇଥିଲା । ପ୍ରେସ ପାଇଁ ମେନେଜର ଜଣେ ନିଯୁକ୍ତ ହୋଇଥିଲେ ଓ ବିଭିନ୍ନ ବିଭାଗର କର୍ମଚାରୀଙ୍କୁ ନେଇ ପ୍ରେସ ଚାଲୁ ହୋଇଥିଲା । ଏହା ବ୍ୟତୀତ ତିନି ଚାରିଜଣ ପଣ୍ଡିତ ପୋଥି ଉତାରିବାକୁ ନିଯୁକ୍ତ ହୋଇଥିଲେ । ମୁଁ ପ୍ରାଚୀ ଅନୁଷ୍ଠାନ ରେଜିଷ୍ଟ୍ରିଭୁକ୍ତ ହେବା ସମୟରୁ ତାହାଁର ସେକ୍ରେଟେରୀ ବୋଲି ଉଦ୍‌ଘୋଷିତ ହୋଇଥିଲି । ସେ ପଦର ଦାୟିତ୍ୱ ମୋତେ ଗ୍ରହଣ କରିବାକୁ ହେଲା । ମୁଁ ସେହି ପକ୍କାର ଉପର ମହଲରେ ଅବସ୍ଥାପିତ ରହି ସମିତି ବିଭାଗ ଓ ପ୍ରେସ ବିଭାଗ ଏ ଉଭୟ ବିଭାଗର ଅଧ୍ୟକ୍ଷ କାର୍ଯ୍ୟ ତୁଲାଇଲି । ମୋର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସମିତି ତଥା ପ୍ରେସ୍ ଉଭୟ ବିଭାଗର ସମସ୍ତ କାର୍ଯ୍ୟ ପରିଚାଳିତ ହେଉଥିଲା । ମୋର କାର୍ଯ୍ୟଭାର ଗ୍ରହଣ କରିବାର ବର୍ଷ ୧୯୩୦ । ମୋ ଚଳିବା ଭଳି ମାସ ତିରିଶି ଟଙ୍କା ନାମମାତ୍ର ଭତ୍ତା ଗ୍ରହଣକରି ମୁଁ ପ୍ରାଚୀ ଅନୁଷ୍ଠାନର ଅବୈତନିକ ସଂପାଦକ ରହିଥିଲି । ମୋର ଚଳାଚଳ ନିମନ୍ତେ କୁଜଙ୍ଗନିବାସୀ ମାୟାଧର ମହାନ୍ତି ନାମକ ଜଣେ ସେବକକୁ ମୁଁ ପାଖରେ ରଖିଥାଏ । ମଝିରେ ଅଳ୍ପ କିଛିକାଳ ଛଡ଼ା ସେ ଏ ପର୍ଯ୍ୟନ୍ତ (୧୯୫୯) ମଧ୍ୟ ମୋ ପାଖରେ ରହିଅଛି ।

ରେଭେନ୍ସା କଲେଜ ପୂର୍ବପଟ ହଷ୍ଟେଲର ଅଧ୍ୟକ୍ଷ ଥାଇ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ଓଡ଼ିଆ ଜାତୀୟ ସାହିତ୍ୟ ଅର୍ଥାତ୍ ବ୍ରିଟିଶ ପ୍ରଭାବ ବିବର୍ଜିତ ସାହିତ୍ୟର ପୂର୍ଣ୍ଣ ସମୁଦ୍ଧାର ଘଟାଇ ଇଂରାଜୀଶିକ୍ଷିତ ବ୍ୟକ୍ତିମାନଙ୍କ ମଧ୍ୟରେ ତାହା ଯେପରି ଯଥୋପଯୁକ୍ତ ସମ୍ମାନପ୍ରାପ୍ତ ହୁଏ ଓ ତାହାଁର ଖ୍ୟାତି ଯେପରି ବିଶ୍ୱବିସ୍ତାରୀ ହୁଏ, ତନ୍ନିମନ୍ତେ ଆମ୍ଭମାନଙ୍କୁ ଅର୍ଥାତ୍ ସ୍ୱର୍ଗତ ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚଉଧୁରୀ, ଅଧ୍ୟାପକ ଗୁରୁଚରଣ ମହାନ୍ତି, ଡକ୍ଟର କରୁଣାକର କର ଆଦିଙ୍କୁ ନେଇ ପ୍ରାଚୀ ସମିତିର ମୂଳପତ୍ତନ କରିଥିଲେ । ଗୋଟାଏ ପ୍ରେସ ସ୍ୱତନ୍ତ୍ର ଭାବରେ ରହି ଲୋପୋନ୍ମୁଖ ଜାତୀୟ ସାହିତ୍ୟ ମୁଦ୍ରିତ ହେବାରୁ ପ୍ରାଚୀ ସମିତିର ଅଟ୍ଟାଳିକା ଆସ୍ତେ ଆସ୍ତେ ଯୁବକମାନଙ୍କର ମିଳନସ୍ଥଳୀ ହୋଇପଡ଼ିଲା ଓ ସମଗ୍ର ଦେଶବ୍ୟାପୀ ପ୍ରାଚୀ ଅନୁଷ୍ଠାନର ଖ୍ୟାତି ବ୍ୟାପ୍ତ ହେବାରେ ଲାଗିଲା । ମୁଁ କେନ୍ଦ୍ରରେ ରହି ଅନୁଷ୍ଠାନର ମୁଖପାତ୍ର ରୂପେ କାର୍ଯ୍ୟ କରିବାରେ ଲାଗିଲି । ବିଶ୍ୱବିଦ୍ୟାଳୟର ଛାତ୍ରରୂପେ ମୋର ଭୂୟସୀ ଯଶ ରହିଥିଲା । ଓଡ଼ିଆ ତଥା ଇଂରାଜୀ ସାହିତ୍ୟରେ ମୋର ବିପୁଳ ଦଖଲ ସମସ୍ତଙ୍କୁ ବହୁ ଆଶାନ୍ୱିତ କରିଥିଲା ଯେ ଜାତୀୟ ସାହିତ୍ୟର ମହାର୍ଘ ଧନ ମୋର ଲେଖନୀ ବଳରେ ବିଶ୍ୱବିଶ୍ରୁତ ହୋଇପାରିବ । କ୍ରମେ କ୍ରମେ ଡକ୍ଟର ମହାନ୍ତିଙ୍କ ସମ୍ପାଦିତ ସଟୀକ ବିଦଗ୍ଧଚିନ୍ତାମଣି, ଉଷାଭିଳାଷ, ରୁକ୍ମିଣୀବିଭା, ମଥୁରାମଙ୍ଗଳ, ପଞ୍ଚସଖା ସାହିତ୍ୟ, ମହିମାଧର୍ମ ସାହିତ୍ୟ ପ୍ରଭୃତି ଗ୍ରନ୍ଥ ପ୍ରକାଶ ପାଇଲା ଏବଂ ସେ ସବୁର ମାଧ୍ୟମରେ ଦେଶବ୍ୟାପୀ ନବୀନ ଆଲୋକର ଜୁଆର ଖେଳିଗଲା । ମୁଁ ମଧ୍ୟ ଶଶିରେଖା, ଚଉତିଶା ମଧୁଚନ୍ଦ୍ର ଆଦି ଗ୍ରନ୍ଥ ସମ୍ପାଦନ କଲି । ପ୍ରାଚୀନ ସାହିତ୍ୟର ସଂରକ୍ଷଣନିମନ୍ତେ

ଏ ବିଧିବଦ୍ଧ ଉଦ୍ୟମ ଅର୍ବାଚୀନ ବା ଅନୁକରଣସର୍ବସ୍ୱ ତଥାକଥିତ ଆଧୁନିକ ସାହିତ୍ୟର ପୁରୋଧା ବିଶ୍ୱନାଥ କରଙ୍କର ଅସହ୍ୟ ହେଉଥାଏ । ସେ ତତ୍କାଳୀନ ମୁଖ୍ୟ ମାସିକ ପତ୍ରିକା ଉତ୍କଳ ସାହିତ୍ୟରେ ବ୍ୟଙ୍ଗକରି ଲେଖି-ଥିଲେ, ବିନା ଧୂମରେ ପ୍ରାଚୀ ଅନୁଷ୍ଠାନ ବସ୍ତ୍ରବୟନର ଉଦ୍ୟମ କରୁଅଛି । ସେ ଗୃହୁଁଥିଲେ ଜାତୀୟ ପ୍ରାଚୀନ ସାହିତ୍ୟର କବର ଉପରେ ସେ ତୋଳିଥାନ୍ତେ ଅର୍ବାଚୀନ ଅନୁକରଣସର୍ବସ୍ୱ ସାରସ୍ୱତ ସୃଷ୍ଟି । ପ୍ରାଚୀ ଉଦ୍ୟମ ତାଙ୍କୁ ଶଯ୍ୟାସ୍ଥିତ କଣ୍ଟକତୁଲ୍ୟ ପ୍ରତୀୟମାନ ହେଉଥିଲା । ସେ ଥିଲେ ବ୍ରାହ୍ମଧର୍ମାବଲମ୍ବୀ । ବଙ୍ଗରେ ବ୍ରହ୍ମଧର୍ମ ସହିତ ଯେଉଁ ଯେଉଁ ବ୍ୟକ୍ତି ବା ଯାହା ଯାହା ସଂପର୍କିତ ସେମାନଙ୍କୁ ଓ ସେସବୁକୁ ଆଣି ପ୍ରତିଷ୍ଠାପନ୍ନ କରାଇବା ତାଙ୍କ ଜୀବନର ବ୍ରତ ଥିଲା । ରବୀନ୍ଦ୍ରନାଥ ଠାକୁର ଯଦି ବ୍ରାହ୍ମ ହୋଇ ନ ଥାନ୍ତେ ତେବେ ସେ "ସବୁଜ" କବିତାକୁ ଓଡ଼ିଶାରେ ଓଡ଼ିଆ ହରପରେ ପ୍ରବର୍ତ୍ତିତ-କରି ଏହାପାଇଁ ଗୋଟାଏ ସ୍ୱତନ୍ତ୍ର ଅସ୍ତିତ୍ୱର ବାଟ ପରିଷ୍କାର କରିବାକୁ ଯାଇ ନ ଥାନ୍ତେ ।

ମୋ ଶୈଶବ ତଥା ଯୌବନ କାଳରେ ସାହିତ୍ୟ କ୍ଷେତ୍ରରେ ବିଶ୍ୱନାଥ କରଙ୍କୁ କଥାରେ କହିଲାଭଳି ଗର୍ଭିଣୀ ଗାଈ ମଧ୍ୟ ବାଟ ଛାଡ଼ୁଥିଲା । ତାଙ୍କର ଗୁଡ଼ାଏ ଅକାରଣ ସ୍ତାବକ ବା ଅନ୍ଧସ୍ତାବକର ଅଭାବ ନ ଥିଲା । ବିଶ୍ୱନାଥ କର ଜାତୀୟ ସାହିତ୍ୟକୁ କିପରି ବିନଷ୍ଟ କରୁଥିଲେ ତାହା ଉପଲବ୍ଧି କରିବାକୁ କାହାର ଅନ୍ତର୍ଦୃଷ୍ଟି ନ ଥିଲା ।

ମୋର ମନେଅଛି ମୁଁ ପ୍ରାଚୀ ଅନୁଷ୍ଠାନରେ ପ୍ରଥମେ ଯୋଗ ଦେଇଥିବା ସମୟରେ ଉତ୍କଳ ସାହିତ୍ୟ ସମାଜ ଅନୁଷ୍ଠାନର ବାର୍ଷିକ ଉତ୍ସବ ଅନୁଷ୍ଠିତ ହେଉଥିଲା । ମୁକୁର ପତ୍ରିକାର ସମ୍ପାଦକ ସ୍ୱର୍ଗତ ସ୍ୱନାମଧନ୍ୟ ବ୍ରଜସୁନ୍ଦର ଦାସ ତହିଁର ପୁରୋଧା ଥିଲେ । ଦର୍ଶକ ଭାବରେ ମୁଁ ସେ ସଭାରେ ଉପସ୍ଥିତ ଥିଲି । ବିଶ୍ୱନାଥ କରଙ୍କର ଜଣେ ନାମଜାଦା ଭକ୍ତ ପଣ୍ଡିତ କୁଳମଣି ଦାସ ଏ ଉତ୍ସବ ପାଇଁ ଆବାହନ ସଙ୍ଗୀତ ରଚନା କରିଥିଲେ । ସେ ସଙ୍ଗୀତ ଛପାହୋଇ ଦର୍ଶକ-ମାନଙ୍କ ମଧ୍ୟରେ ବଣ୍ଟା ଯାଇଥିଲା । ଗାନ ହେବା ପୂର୍ବରୁ ମୋ ହାବୁଡ଼ରେ ପଡ଼ିଲା ଯେ ତହିଁରେ ପ୍ରାଚୀ ଉଦ୍ୟମକୁ ଲକ୍ଷ୍ୟକରି ଲେଖା ହୋଇଅଛି ।

ତରୁଣ ଅରୁଣ ବଦନ
ଜୀର୍ଣ୍ଣମୁଖା ପିନ୍ଧି ହସିବ କି ଶୋଭନ ?

ଅର୍ଥାତ୍ ଦେଶରେ ଯୁବଶକ୍ତି ବଙ୍ଗର ବ୍ରାହ୍ମରାଜ୍ୟରୁ ବିଶ୍ୱନାଥ କରଙ୍କ ଦ୍ୱାରା ଆନୀତ ନୂଆ କବିତାରେ ସିନା ମଜଗୁଲ ରହନ୍ତେ, ସେମାନେ ବ୍ରିଟିଶ ପୂର୍ବ ଯୁଗର ଜୀର୍ଣ୍ଣ କବିତା ପଢ଼ି ତହିଁର ଚର୍ଚ୍ଚାରେ ମାତିଲେ ଲାଭ କଅଣ ହେବ ? ବରଂ ଯୁବକମାନଙ୍କ ତାରୁଣ୍ୟକୁ ଏହା ଅପମାନ ।

ସଭାରେ ମୋ ନିକଟରେ ଜଣକେତେ ଯୁବକ ବସିଥିଲେ । ସେମାନଙ୍କୁ ମୁଁ କବିତାର ମର୍ମ ବୁଝାଇ ଦେବାରୁ ସେମାନେ ତାତିଉଠିଲେ । ମୁଁ ଠିଆ ହୋଇ-ପଡ଼ି ଏ ପଂକ୍ତିମାନଙ୍କ ପ୍ରତି ପୁରୋଧାଙ୍କର ତୀବ୍ର ଦୃଷ୍ଟି ଆକର୍ଷଣ କଲି ଓ ସଭା ଆଗରେ ଏହା ପ୍ରାଚୀନ ସାହିତ୍ୟ-ସେବା ପ୍ରତି ଘୋର ଆକ୍ଷେପ ବୋଲି ପ୍ରତିପାଦିତ କଲି । ମୋ ସଙ୍ଗୀ ଯୁବକମାନେ ମଧ୍ୟ ଅନୁରୂପ ଆପତ୍ତି କଲେ । ପୁରୋଧା ମହାଶୟ ସବୁ କଥା ବିଚାରକରି ରାୟ ଦେଲେ ଯେ ସଭାରେ ଗାନ ହେବାକୁ ଲେଖା ଯାଇଥିବା କବିତା ଆକ୍ଷେପର ଅତୀତ ହୋଇଥିବା ବାଞ୍ଛନୀୟ । ସଭାରେ ଉପସ୍ଥିତ ଜଣେ ମାତ୍ର ବ୍ୟକ୍ତି ଯଦି ଆନୁଷ୍ଠାନିକ ଗୀତ ବିରୁଦ୍ଧରେ ସଙ୍ଗତ ଆପତ୍ତି ଉଠାନ୍ତି ତାହାହେଲେ ସେ ଗୀତର ଗାନ ବନ୍ଦ ରଖାଯିବ । ବକ୍ତା ହରିଚ୍ଛନ୍ଦଚରଣ ପଟ୍ଟନାୟକଙ୍କ ଆପତ୍ତି ମୋ ମତରେ ସଙ୍ଗତ ଅଟେ ।

ବିଶ୍ୱନାଥ କରଙ୍କ ପନ୍ଥୀ ବୃଦ୍ଧ ସାହିତ୍ୟିକମାନଙ୍କ ମୁହଁ ଟିକିଟିକିଏ ହୋଇଗଲା । ବିପୁଳ କରତାଳି ମଧ୍ୟରେ ପୁରୋଧାଙ୍କ ଘୋଷଣା ଗୃହୀତ ହେଲା । ସେ ଗୀତ ଗାନ ହୋଇ ପାରିଲା ନାହିଁ ।

ଏହାପରେ ପ୍ରାଚୀ ଆନ୍ଦୋଳନ ବଙ୍ଗାନୁକରଣ ପନ୍ଥୀମାନଙ୍କର ହୃଦ୍‌ଦାହ ସୃଷ୍ଟି କରି ଆଗେଇ ଚାଲିଥାଏ । ପ୍ରାଚୀ ପ୍ରେସର ମୁଦ୍ରଣ ପରିପାଟୀ ମଧ୍ୟ ଉଲ୍ଲେଖଯୋଗ୍ୟ ଥିଲା । କଟକର ବହୁ ପ୍ରେସଙ୍କଠାରୁ ଏହା ଉତ୍କୃଷ୍ଟ ଥିଲା ଏବଂ ଏଥିଯୋଗୁଁ ଏହା ସୁପ୍ରତିଷ୍ଠିତ ଅନେକ ପ୍ରେସଙ୍କର ଈର୍ଷାର ପାତ୍ର ହୋଇଥିଲା ।

ପ୍ରାଚୀ ଅନୁଷ୍ଠାନ ସଂସ୍ଥାପିତ ହେବାର ବହୁବର୍ଷ ତଳେ ଯେତେବେଳେ ବ୍ରିଟିଶ ପୂର୍ବ ଯୁଗ ସାହିତ୍ୟକୁ ଦାବିଦେଇ ରାଧାନାଥ ରାୟୀବଙ୍କ ପ୍ରବର୍ତ୍ତିତ ଆଧୁନିକ ଯୁଗ ସାହିତ୍ୟକୁ ପ୍ରାଧାନ୍ୟ ଦେବାର ଉଦ୍ୟମ ହୋଇଥିଲା, ସେତେବେଳେ ଓଡ଼ିଶାର ଅନ୍ତରାତ୍ମାର ବିଦ୍ରୋହକୁ ଶାସନକଳର କରାମତିରେ ଅଧ୍ୟୟନ-ଅଧ୍ୟାପନା କ୍ଷେତ୍ରରେ ଦାବି ଦିଆଯାଇଥିଲା । ପ୍ରାଚୀ ଆନ୍ଦୋଳନ ଫଳରେ କର୍ତ୍ତୃପକ୍ଷଙ୍କ ଆଖି ପୁଣି ପ୍ରାଚୀନ ଆଡ଼କୁ ଫେରିଥିଲା ଏବଂ ପାଠ୍ୟ ନିର୍ବାଚନ କ୍ଷେତ୍ରରେ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପ୍ରଭାବରେ ଅଧିକତର ସଂଖ୍ୟାରେ ବିଶ୍ୱବିଦ୍ୟାଳୟ ଚାଳିତ ବିଭିନ୍ନ ସ୍ତରର ପରୀକ୍ଷା ପାଇଁ ପ୍ରାଚୀ ଜାତୀୟ ସାହିତ୍ୟ ପାଠ୍ୟ ହେବାରେ ଲାଗିଲା । ପ୍ରାଚୀ ଅନୁଷ୍ଠାନ ଓ ପ୍ରାଚୀ ଆନ୍ଦୋଳନ ରାଧାନାଥ ରାୟଙ୍କଠାରୁ ଆରମ୍ଭ ହୋଇ ବିଶ୍ୱନାଥ କରଙ୍କଠାରେ ପହଞ୍ଚିଥିବା ଆଧୁନିକ ସାହିତ୍ୟ ପକ୍ଷରେ ସମରାହ୍ୱାନ ଭଳି ଅସ୍ୱାଦ୍ୟ ହୋଇଥିଲା ଏବଂ ଇଂରେଜିପଢ଼ୁଆ ନବୀନ କବିମାନେ ଉତ୍କଳ ସାହିତ୍ୟ ଓ ସହକାର ଆଦି ମାସିକ ପତ୍ରିକାମାନଙ୍କୁ ଆଶ୍ରୟକରି ବିଦେଶୀ ଅନୁକରଣ-ସର୍ବସ୍ୱ ସାହିତ୍ୟର ପ୍ରସାର ପାଇଁ ଶିବିରମାନ ଗଢ଼ିବାରେ ଲାଗିଥିଲେ । ୧୯୫୯ ମସିହା ନଭେମ୍ବର ମାସରେ ଏ ଆତ୍ମଜୀବନର ଏ ଅଂଶ ମୁଁ ଲେଖୁଥିଲା ବେଳେ ଶଂସିତ ବିଜାତୀୟ ପନ୍ଥୀମାନେ ବିଦେଶୀ ଗୁଞ୍ଜରେ ସାହିତ୍ୟ ଗଢ଼ି ଚାଲିଅଛନ୍ତି ଏବଂ ଓଡ଼ିଶାର ଶିକ୍ଷିତ ଜନମତ ବିଭ୍ରାନ୍ତ ହେବାରେ ଲାଗିଅଛି । ପ୍ରାଚୀ ପ୍ରାଚୀନ ଗୌରବ ମାତ୍ର ରକ୍ଷାକରି ଚାଲିଥିଲା । ବିଜାତୀୟପନ୍ଥୀଙ୍କୁ ଦମନ କରିବାର ପ୍ରତିଦ୍ୱନ୍ଦୀ କାର୍ଯ୍ୟପନ୍ଥା ଏହାର ନ ଥିଲା । ଜାତୀୟ ସାହିତ୍ୟକୁ ଜାତୀୟତାପନ୍ଥୀ କରିବାକୁ ଏଥିର କର୍ମପନ୍ଥା ରହି ନ ଥିଲା । ମୁଁ କବି ଓ ଦ୍ରଷ୍ଟା ଥିଲି । କିନ୍ତୁ ସେତେବେଳକୁ ମୋର ଆନୁଷ୍ଠାନିକ ଭାବରେ ସର୍ଜନଶୀଳ ହେବାପାଇଁ ପ୍ରାଚୀରେ ବାଟ ନ ଥିଲା ।

× × ×



[ ଗୁରୁଦେବ ବିଚ୍ଛନ୍ଦଚରଣଙ୍କର ଏ ଥିଲା ଅର୍ଦ୍ଧେକ ଜୀବନର ଇତିହାସ ଯାହା ସେ ନିଜେ ରଚନା କରି ଯାଇଅଛନ୍ତି । ୧୯୩୧ ମସିହା ପର୍ଯ୍ୟନ୍ତ ତାଙ୍କ ଜୀବନର ଘଟଣାବଳୀ ଏଥିରେ ରୂପାୟିତ ହୋଇଛି, କିନ୍ତୁ ପରବର୍ତ୍ତୀ ଅର୍ଦ୍ଧେକ ଜୀବନୀ ରଚନା କରିବା ପୂର୍ବରୁ ସେ ଇହଲୀଳା ସମ୍ବରଣ କରିଛନ୍ତି । ସେ ବିଷୟରେ ସମ୍ୟକ ଆଲୋଚନା ତାଙ୍କର ସହକର୍ମୀ-ବନ୍ଧୁ ଓ ଶିଷ୍ୟମଣ୍ଡଳୀଙ୍କର ପ୍ରବନ୍ଧମାନଙ୍କରୁ ଏ ଗ୍ରନ୍ଥର ଦ୍ୱିତୀୟାର୍ଦ୍ଧରେ ଦ୍ରଷ୍ଟବ୍ୟ । ]

## ଦ୍ୱିତୀୟାର୍ଦ୍ଧ ଜୀବନୀ—ସଂକ୍ଷିପ୍ତ ପରିଚୟ
( ୧୯୩୦-୧୯୬୧ )

★ ୧୯୩୦—ଉତ୍କଳୀୟ ସଂସ୍କୃତିର ଉଦ୍ଧାର, ପ୍ରସାର ଓ ପ୍ରଚାର ଲାଗି ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ନେତୃତ୍ୱରେ ଗଠିତ "ପ୍ରାଚୀ-ସମିତି"ର ବ୍ୟବହର୍ତ୍ତା ଓ ସମ୍ପାଦକତ୍ୱ ଗ୍ରହଣ କଲେ ବଂଛନିଧିଚରଣ। ଦେଶ ବିଦେଶରେ ଇଂରାଜୀ ମାଧ୍ୟମରେ କଳିଙ୍ଗ ସାହିତ୍ୟ-ଇତିହାସ-କଳାର ପରିଚୟ ଦେବାଲାଗି ପ୍ରକାଶିତ "ପ୍ରାଚୀ" ତ୍ରୈମାସିକ ପତ୍ରିକାର ସମର୍ଥ ସମ୍ପାଦନା ଦାୟିତ୍ୱ ବହନ କଲେ ଗୁରୁଦେବ। ଦେଶ ବିଦେଶରୁ ପ୍ରଶଂସାର ଧାରା ଛୁଟିଲା ଓଡ଼ିଶାକୁ।

"ପ୍ରାଚୀ" ସାଙ୍ଗକୁ ଇଂରାଜୀରେ "ବୈତରଣୀ" ଏବଂ "ଜର୍ଣ୍ଣାଲ ଅଫ୍ ଦି ଓଡ଼ିଶା ଏକାଡ଼େମୀ" ତଥା ଓଡ଼ିଆରେ "ଜାଗରଣ"ର ସମ୍ପାଦନା କରିଥିଲେ ଗୁରୁଦେବ।

★ ୧୯୩୪—ଗୋପାଳଚନ୍ଦ୍ର ପ୍ରହରାଜଙ୍କ ସହକର୍ମୀରୂପେ ଗୁରୁଦେବ ଓଡ଼ିଆ ଭାଷାରେ ସର୍ବବୃହତ୍ ଅଭିଧାନଗ୍ରନ୍ଥ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ସଙ୍କଳନରେ ଆତ୍ମନିୟୋଗ କଲେ।

★ ୧୯୩୨-୧୯୪୪—ଉତ୍କଳ ସାହିତ୍ୟ ସମାଜ ହେଲା ବଂଛନିଧିଚରଣଙ୍କର କର୍ମମୁଖର ସାରସ୍ୱତ-ସଂଗଠନ କ୍ଷେତ୍ର।

★ ୧୯୩୮ରେ ଶ୍ରୀମତୀ ନେହମଣି ଦେବୀଙ୍କ ପାଣିଗ୍ରହଣ କଲେ ଗୁରୁଦେବ।

★ ୧୯୪୧ରେ କଟକରେ ଓକିଲାତି ଓ ୧୯୪୨ରେ ଓଡ଼ିଶା ସରକାରଙ୍କ ଅତିରିକ୍ତ ଟ୍ରାନ୍ସଲେଟର ପଦରେ ନିଯୁକ୍ତ।

★ ୧୯୪୩—ଓଡ଼ିଶାର ଉଦ୍‌ବୁଦ୍ଧ ତରୁଣ ସମାଜକୁ ଜାତୀୟ-ସଂସ୍କୃତିର ସୁରକ୍ଷା ଓ ଐତିହ୍ୟ-ଅନୁସାରୀ ଯୁଗୋପଯୋଗୀ ସାହିତ୍ୟ ଓ କଳା ସୃଷ୍ଟି କରିବା ମନ୍ତ୍ରରେ ଦୀକ୍ଷିତ କରି **ଉତ୍କଳ ଛାତ୍ର-ସାହିତ୍ୟ ସମାଜର ପ୍ରତିଷ୍ଠା ଓ ପ୍ରତିଷ୍ଠାର ଆଦ୍ୟ ତିଥିରେ ଭଞ୍ଜ-ଜୟନ୍ତୀ** ଉତ୍ସବର ପ୍ରବର୍ତ୍ତନ କଲେ ଗୁରୁଦେବ। ୧୯୪୪ରେ **କଳିଙ୍ଗଭାରତୀ** ଅନୁଷ୍ଠାନ ଜନ୍ମଲାଭ କଲା।

★ କବି ବଂଛନିଧିଚରଣଙ୍କ ସାହିତ୍ୟସୃଷ୍ଟିର ଅବାରିତ ଧାରାର ପ୍ରଥମ ତନୟ ହୋଇ "କବିତା କୁମୁଦ" ଆତ୍ମପ୍ରକାଶ କଲା ୧୯୪୬ରେ।

★ ଗୁରୁଦେବ ଇହଲୀଳା ସମ୍ବରଣକଲେ ୧୪ ଜାନୁୟାରୀ ୧୯୬୧ ରେ।

ଗୁରୁଦେବଙ୍କ ନିଜ ଭାଷାରେ ତାଙ୍କ ଜୀବନ ହେଉଛି "ସାହିତ୍ୟ ପାଇଁ ସଂଗ୍ରାମ"। ସଂଗ୍ରାମଧର୍ମୀ ଅନନ୍ୟମନସ୍କ ସଂଗଠକ ବଂଛନିଧିଚରଣ କଳିଙ୍ଗ କୃଷ୍ଟିର ଶାଶ୍ୱତ ପୂଜାରୀ ଓ ଜାଗ୍ରତ ପ୍ରହରୀ।

॥ ଜୟ ମା କଳିଙ୍ଗ ଭାରତୀ ॥

# କଳିଙ୍ଗପ୍ରାଣ ବିଚ୍ଛନ୍ଦଚରଣ

## ଦ୍ୱିତୀୟାର୍ଦ୍ଧ

### ଲେଖା ଓ ଲେଖକ

ସେମାନଙ୍କ ମତରେ   କବି ଓ କବିତା

୰ ପଣ୍ଡିତ ନୀଳକଣ୍ଠ ଦାଶ
୰ ପଣ୍ଡିତ ଗୋଦାବରୀଶ ମିଶ୍ର
୰ ଲକ୍ଷ୍ମୀନାରାୟଣ ସାହୁ
୰ ଗୋପାଳଚନ୍ଦ୍ର ପ୍ରହରାଜ
୰ ଆର୍ତ୍ତବଲ୍ଲଭ ମହାନ୍ତି
୰ ଚିନ୍ତାମଣି ଆଚାର୍ଯ୍ୟ
୰ ବିପିନବିହାରୀ ରାୟ
୰ ଶଶିଭୂଷଣ ରାୟ
୰ ଗିରିଜାଶଙ୍କର ରାୟ
୰ ବୈଷ୍ଣବଚରଣ ଦାସ ଗୋସ୍ୱାମୀ

ଆମ୍ଭମାନଙ୍କ ମତରେ   ତାଙ୍କ ସୃଷ୍ଟି ଓ ସଂଗଠନ

ଡକ୍ଟର ରାଧାନାଥ ରଥ
ଡକ୍ଟର ପ୍ରାଣକୃଷ୍ଣ ପରିଜା
ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ
ଶ୍ରୀ ପ୍ରାଣନାଥ ମହାନ୍ତି
ଶ୍ରୀ ବ୍ରଜବିହାରୀ ମିଶ୍ର
ଶ୍ରୀ ବୀର ହନୁମାନ ଶାସ୍ତ୍ରୀ
ଶ୍ରୀ ହୃଦାନନ୍ଦ ରାୟ
କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ
ଶ୍ରୀ ବେଣୁଧର ପୃଷ୍ଟି
ଇଞ୍ଜିନିୟର ଚନ୍ଦ୍ରଶେଖର ନନ୍ଦ
ଡାକ୍ତର ଅଜିତ କୁମାର କର
ଅଧ୍ୟାପକ ସୁଧୀରଚନ୍ଦ୍ର ମହାନ୍ତି
ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ
ଶ୍ରୀ ପରମାନନ୍ଦ ଅଧିକାରୀ
ଡାକ୍ତର ଶୈଳେଶ୍ୱର ନନ୍ଦ
ଅଧ୍ୟାପକ ଗୌରୀକୁମାର ବ୍ରହ୍ମା
ଅଧ୍ୟାପକ ମହାପାତ୍ର ନୀଳମଣି ସାହୁ
ଶ୍ରୀ ରଜତ କୁମାର କର
ଶ୍ରୀ ଚନ୍ଦ୍ରଶେଖର ମହାପାତ୍ର
ଶ୍ରୀ ବଂଶୀଧର ମିଶ୍ର
ଶ୍ରୀ କୁଳମଣି ମହାରଣା



# ପ୍ରାଚୀନ ଓଡ଼ିଆ ସାହିତ୍ୟ ଓ ବିଚ୍ଛନ୍ଦଚରଣ

**ଡକ୍ଟର ରାଧାନାଥ ରଥ,** ସମ୍ପାଦକ 'ସମାଜ'

ଉତ୍କଳ ସାହିତ୍ୟ ଇତିହାସରେ କବି ବିଚ୍ଛନ୍ଦଚରଣଙ୍କ କୃତି ଚିରଦିନ ଏକ ବିଶିଷ୍ଟ ସ୍ଥାନ ଅଧିକାର କରି ରହିବ । ଯେଉଁ ସମୟରେ ଓଡ଼ିଶାର ପ୍ରାଚୀନ ସାହିତ୍ୟ ତଥା ଓଡ଼ିଆ ସଂସ୍କୃତି ଓ ନିଜସ୍ୱ ଚିନ୍ତାଧାରାର ବିକୃତି ଘଟିବାକୁ ଯାଉଥିଲା, ସେହି ସମୟରେ ତାର ସୁରକ୍ଷା ଓ ବିକାଶ ପାଇଁ ସ୍ୱର୍ଗତ ବିଚ୍ଛନ୍ଦଚରଣ ପଟ୍ଟନାୟକ ବଜ୍ରମୁଷ୍ଟିରେ ଯୁଦ୍ଧ ଘୋଷଣା କରିଥିଲେ ଏବଂ ବିଜୟୀ ମଧ୍ୟ ହୋଇଥିଲେ । ତା ଫଳରେ ଆଜି ଓଡ଼ିଶାର ପୁରପଲ୍ଲୀ ସମେତ ଏପରିକି, କଲିକତା, ଜାମସେଦପୁର, ଦିଲ୍ଲୀ ପ୍ରଭୃତି ବିଭିନ୍ନ ସ୍ଥାନରେ ସାହିତ୍ୟପ୍ରେମୀମାନଙ୍କ ଉଦ୍ୟମରେ ପ୍ରତିବର୍ଷ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଜୟନ୍ତୀ ଅତି ସମାରୋହରେ ପାଳିତ ହେଉଛି ଓ ପ୍ରାଚୀନ ଓଡ଼ିଆ ସାହିତ୍ୟର ଆଲୋଚନା ବିଭିନ୍ନ ଦିଗରୁ କରାଯାଇ ତା'ର ମହତ୍ତ୍ୱ ବିକଶିତ ହେଉଛି ।

କେବଳ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ନୁହନ୍ତି, ଚନ୍ଦ୍ରମୁନି ଶାରଳା ଦାସ, ଦୀନକୃଷ୍ଣ, ଅଭିମନ୍ୟୁ ସାମନ୍ତ ସିଂହାର, କବିସୂର୍ଯ୍ୟ, ଗୋପାଳକୃଷ୍ଣ, ଭୀମା ଧୀବର, ଭୀମ ଭୋଇ ପ୍ରମୁଖ ଓଡ଼ିଶାର ପ୍ରାଚୀନ କବି ଓ ସେମାନଙ୍କର ସାହିତ୍ୟ ସୃଷ୍ଟି, ଛାନ୍ଦ, ଜଣାଣ, ଭଜନ, ବୋଲି ପ୍ରଭୃତି ଆଜି ବିଦଗ୍ଧ ପାଠକମାନଙ୍କଦ୍ୱାରା ଆଲୋଚିତ ଓ ଆଦୃତ ହେଉଛି । ବିଚ୍ଛନ୍ଦଚରଣଙ୍କର ଏହି କାର୍ଯ୍ୟାବଳୀ ପୂର୍ବର ଇନ୍ଦ୍ରଧନୁ-ବିଜୁଳି ଆନ୍ଦୋଳନକୁ ସ୍ମରଣ କରାଇଦିଏ ।

ବିଚ୍ଛନ୍ଦ ଚରଣ କେବଳ ପ୍ରାଚୀନ ସାହିତ୍ୟପ୍ରେମୀ ନ ଥିଲେ, ସେ ଥିଲେ କବି ଓ ବଳିଷ୍ଠ ସମାଲୋଚକ । ତାଙ୍କ ପ୍ରଣୀତ କବିତା ସଙ୍କଳନ "କବିତା କୁମୁଦ", "ଶତ ପତ୍ର", "ଆଦ୍ୟ ଅର୍ଘ୍ୟ", "ଶ୍ରୀଜଗନ୍ନାଥଙ୍କ ଜଣାଣ, ଭଜନ" ଆଦି ତାଙ୍କ ସରସ ପ୍ରାଣ ଓ ଭଗବତ୍ ଭକ୍ତିର ଜ୍ୱଳନ୍ତ ପରିଚୟ ଦିଏ ।

ବିଚ୍ଛନ୍ଦବାବୁ ଥିଲେ ଜଣେ ଦକ୍ଷ ସଙ୍ଗଠକ । "କଳିଙ୍ଗ ଭାରତୀ", "ଉତ୍କଳ ଗ୍ରନ୍ଥ ସମାଜ" ଏବେ ସୁଦ୍ଧା ତାହା ଘୋଷଣା କରୁଛି । ପ୍ରାଚୀ ସାହିତ୍ୟ ସଂସ୍ଥା ସ୍ୱର୍ଗତ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି, ସ୍ୱର୍ଗତ ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀ ପ୍ରମୁଖଙ୍କ ଉଦ୍ୟମରେ ପ୍ରତିଷ୍ଠିତ ହୋଇଥିଲା ସତ, ମାତ୍ର ବିଚ୍ଛନ୍ଦବାବୁଙ୍କ ଦୃଢ଼ ସଙ୍ଗଠନ ଫଳରେ ତାହା ସେ ସମୟରେ ଏକ ବଳିଷ୍ଠ ଅନୁଷ୍ଠାନ-ରୂପେ ଗଢ଼ି ଉଠିଥିଲା । ଉତ୍କଳ ସାହିତ୍ୟ ସମାଜର ଯେତେ ବର୍ଷ ସେ ସଂପାଦକ ଥିଲେ, ସେତେଦିନ ତାହା ପ୍ରାଣବନ୍ତ ବୋଧ ହେଉଥିଲା ।

'କଳିଙ୍ଗ ଭାରତୀ' ପକ୍ଷରୁ ବିଚ୍ଛନ୍ଦବାବୁଙ୍କ ହୀରକ-ଜୟନ୍ତୀ ଉତ୍ସବ ପାଳନର ଆୟୋଜନ କରାଯାଉଛି । ଉଦ୍ୟୋକ୍ତାମାନେ ଏଥିରେ ଯଶସ୍ୱୀ ହେବେ ବୋଲି ମୋର ଆଶା ।

●

## ସେମାନଙ୍କ ମତରେ......

# କବି ଓ କବିତା

—ଇଂରେଜପୂର୍ବ ଯୁଗରେ ଭାରତୀୟ ପଡ଼ୋଶୀ ଭାଷାମାନଙ୍କ ମଧ୍ୟରେ ଓଡ଼ିଆର ଛନ୍ଦ ଗୋଟିଏ ବିଶିଷ୍ଟତା । ବିଚ୍ଛନ୍ଦବାବୁ ଏକା ଏବେ ସେଇ ବିଶିଷ୍ଟତାର ଭକ୍ତ ଓ ସେଥିରେ ଜଣେ ଶ୍ରେଷ୍ଠ ସାଧକ । ସେଇ ପ୍ରାଚୀନ ଛାଞ୍ଚରେ ନବୀନ କବିତାର ପ୍ରାଣ ସ୍ପନ୍ଦନ ଫୁଟାଇବାରେ ସେ କୃତୀ । ତାଙ୍କର ଏଇ ପ୍ରାଚୀନ ନବୀନର ଅଦ୍ଭୁତ ଓ ରୁଚିକର ସମନ୍ୱୟ ଉତ୍କଳ ସାହିତ୍ୟକୁ ଏକ ସ୍ୱତନ୍ତ୍ର ଦାନ ।

୰ **ପଣ୍ଡିତ ନୀଳକଣ୍ଠ ଦାଶ**
ସମ୍ପାଦକ 'ନବଭାରତ'

—କବି ବିଚ୍ଛନ୍ଦଚରଣ କବିତା କୁମୁଦରେ ନିଜର ପ୍ରତିଭା ବେଶ୍ ଦେଖାଇ ଅଛନ୍ତି । ସେ ଯେଉଁ ଛନ୍ଦ ବ୍ୟବହାର କରନ୍ତୁ ନା କାହିଁକି, ଓଡ଼ିଆ ସାହିତ୍ୟଭଣ୍ଡାରକୁ ସେ ଯେ କେତେଗୁଡ଼ିଏ କବିତାରତ୍ନରେ ପୁଷ୍ଟ କରିବେ ସେଥିରେ ସନ୍ଦେହ ନାହିଁ । ତାଙ୍କର ସେ ଶକ୍ତି ଅଛି । ସମୟ ଓ ଅନୁକୂଳ ପରିସ୍ଥିତି ପାଇଲେ ସେ ଓଡ଼ିଆ ସାହିତ୍ୟର ବିକାଶରେ ଯଥେଷ୍ଟ ସାହାଯ୍ୟ କରିଯିବେ ।

୰ **ପଣ୍ଡିତ ଗୋଦାବରୀଶ ମିଶ୍ର**
ପୂର୍ବତନ ଶିକ୍ଷାମନ୍ତ୍ରୀ

—ପରମ୍ପରା ତ୍ୟାଗ କରି ଦିକ୍‌ଶୂନ୍ୟ ହୋଇ ଯେଉଁମାନେ ଉତ୍କଳ ସାହିତ୍ୟକୁ ଅନିର୍ଦ୍ଦିଷ୍ଟ ପଥରେ ନେଇଯାଉଥିଲେ ସେମାନଙ୍କର ଗତି ଫେରାଇବା ପାଇଁ ବିଚ୍ଛନ୍ଦ ପ୍ରାଣପଣ ପ୍ରତିଜ୍ଞା କରି ଆଜି ଯଶସ୍ୱୀ ହୋଇଅଛନ୍ତି ।

ଜୀବନର ଉତ୍ସ, ଜାତିର ଉତ୍ସ, ସାହିତ୍ୟର ଉତ୍ସ ଅନେକ ଗଭୀରରେ ଅଛି । ସେହି ଗଭୀରତା ଅନୁଭବ କରିବାକୁ ହେଲେ, ତାକୁ ଛୁଇଁବାକୁ ହେଲେ ଭିତରକୁ ପ୍ରବେଶ କରିବାକୁ ହେବ ଏବଂ ସେହିଠାରୁ ଯେଉଁ ସ୍ରୋତ ବାହାରୁଛି ତାକୁ ଧରି ସାହିତ୍ୟ ରଚିବାକୁ ହେବ । ତାହାହେଲେ ସାହିତ୍ୟର ମନୋଭାବ, ଜାତିର ମନୋଭାବ ଠିକ୍ ଧରି ହେବ ।

ଶ୍ରୀ ବଛନ୍ଦଚରଣ ପ୍ରାଚୀନ ପଦ୍ଧତିକୁ ଅନୁସରଣ କରିଅଛନ୍ତି ସେଥିପାଇଁ, ଏକାଧାରରେ ସହସ୍ର ସହସ୍ର ବର୍ଷର ସଞ୍ଚିତ ଭାବଧାରା ଜାତି ନିକଟରେ ଥୋଇବା ପାଇଁ । ମୁଁ ଏଥିପାଇଁ ବଛନ୍ଦଙ୍କୁ ପ୍ରଶଂସା କରେ ।

ଆମର ଗୌରବ, ଆମ ସାହିତ୍ୟର ବିକାଶରେ ଭଙ୍ଗୀ ଯେଉଁ ପଥରେ ଜଗତରେ ପ୍ରକାଶିତ ହୋଇଅଛି ସେହି ପଥହିଁ ଆମମାନଙ୍କର ଶ୍ରେଷ୍ଠ ଅବଦାନ । ସେହି ଅବଦାନ ଆମେ ପରମ୍ପରା ସୂତ୍ରରେ ପାଇଅଛୁ । ତାକୁ ହରାଇବା ଅର୍ଥ ନାବାଳକ ହୋଇ ପିତୃପିତାମହର ସମ୍ପତ୍ତି ଲୋକସାନ କରିବା ।

ବଛନ୍ଦ ଧ୍ରୁବତାରାକୁ ଲକ୍ଷ୍ୟ ଧରି ଚାଲିବା ପାଇଁ ସ୍ଥିର କରିଅଛନ୍ତି, ସମସାମୟିକ ଅନ୍ୟାନ୍ୟମାନଙ୍କୁ ବିନତି କରିଅଛନ୍ତି ଏବଂ ଆସନ୍ତା ବଂଶଧରମାନଙ୍କୁ ସେହି ପଥରେ ଅନୁଗମନ କରିବା ପାଇଁ ଉତ୍ସାହ ଦେଉଅଛନ୍ତି ।

ଂ **ଲକ୍ଷ୍ମୀନାରାୟଣ ସାହୁ**, ଏମ୍. ଏଲ୍. ଏ.

—ପ୍ରାଚୀନ ଯୁଗର ଶେଷ ଶ୍ରେଷ୍ଠକବି କବିସୂର୍ଯ୍ୟ ଓ ଗୋପାଳକୃଷ୍ଣଙ୍କ ପରେ ପ୍ରାଚୀନ ଶୈଳୀବିଶିଷ୍ଟ ଛନ୍ଦୋମୟ କବିତା ଓଡ଼ିଆ ସାହିତ୍ୟରୁ ଲୋପ ପାଇଥିଲା । ଆଧୁନିକ ଯୁଗର କବିମାନେ ପ୍ରାଚୀନ ରୀତିର ଶବ୍ଦଯୋଜନା ଓ ଛନ୍ଦୋବନ୍ଧ ତ୍ୟାଗ କରିବା ଯୋଗୁଁ ଓଡ଼ିଆ କବିତା ସାହିତ୍ୟରେ ଗୋଟିଏ ଅସ୍ପୃହଣୀୟ ପରମ୍ପରାଚ୍ଛେଦ ଘଟିଥିଲା । ଏଥିପାଇଁ ପ୍ରାଚୀନ ଯୁଗ ଓ ନବଯୁଗ କବିତା ମଧ୍ୟରେ ଯୋଗ ଘଟାଇବା ନିମନ୍ତେ ସେତୁ ନିର୍ମାଣର ପ୍ରୟୋଜନୀୟତା ବହୁକାଳ ହେଲା ଅନୁଭୂତ ହେଉଥିଲେ ସୁଦ୍ଧା ଉପଯୁକ୍ତ ପ୍ରତିଭାଶାଳୀ ବ୍ୟକ୍ତିଙ୍କ ଅଭାବରୁ ଏହା କାର୍ଯ୍ୟରେ ପରିଣତ ହୋଇପାରୁ ନ ଥିଲା । ଏ ଯୁଗର ଉଚ୍ଚ ଶିକ୍ଷିତ ଇଂରାଜୀ-ସାହିତ୍ୟ-ବିଶାରଦ ବ୍ୟକ୍ତିମାନଙ୍କ ମଧ୍ୟରେ ଶ୍ରୀମାନ୍ ବଛନ୍ଦ ଚରଣଙ୍କର ପ୍ରାଚୀନ ସାହିତ୍ୟ ପ୍ରତି ଅନୁରାଗ ଅସାଧାରଣ । ଇଂରାଜୀ 'ପ୍ରାଚୀ' ପତ୍ରିକାର ସୁଦକ୍ଷ ସମ୍ପାଦକ ଓ ପ୍ରାଚୀନ ଓଡ଼ିଆ କାବ୍ୟ ସାହିତ୍ୟର ଧୂରନ୍ଧର ଅନୁବାଦକ ରୂପେ ତାଙ୍କ ଯଶ ଓଡ଼ିଶା ସୀମା ଡାହିଁକି ଭାରତର ସୀମାକୁ ମଧ୍ୟ ଟପି ଯାଇଅଛି । ଗତ ଦଶ ବାର ବର୍ଷ ହେଲା ଉତ୍କଳର ମୁଖ୍ୟ ବାଣୀ ପୀଠ ଉତ୍କଳ ସାହିତ୍ୟ ସମାଜର ଜରିଆରେ ଦେଶର ରୁଚିକୁ ବଦଳାଇ ପ୍ରାଚୀନ ପଦ୍ୟ ରଚନା ଶୈଳୀକୁ ପୁନର୍ବାର ଦୃଢ଼ରୂପେ ପ୍ରତିଷ୍ଠା କରିବା ପାଇଁ ଶ୍ରୀମାନ୍ ବଛନ୍ଦ ଚରଣ ତାଙ୍କ ବଳିଷ୍ଠ ଲେଖମୀ ଚାଳନା କରୁଅଛନ୍ତି ।

ଏହି ଅସାଧାରଣ ପ୍ରତିଭାଶାଳୀ କବିଙ୍କ ଦ୍ୱାରା ଉତ୍କଳ ଭାରତୀଙ୍କ ବୀଣାରେ ପ୍ରାଚୀନ ଯୁଗର ଛିନ୍ନ ତାର ସଂଯୋଜିତ ହେଲା ବୋଲି ଆମ୍ଭମାନଙ୍କର ପ୍ରତୀତି ହୋଇଥାଏ । ନବୀନ ଯୁଗୋପଯୋଗୀ ଭାବର ବାହନ କରି ଉତ୍କଳ ଭାରତୀଙ୍କ କୃପାସିଦ୍ଧ ଏହି କବି ଏହାଙ୍କ କବିତାମାନଙ୍କରେ ବହୁସଂଖ୍ୟକ ପ୍ରାଚୀନ ରାଗ ରାଗିଣୀକୁ ପୁନରୁଜ୍ଜୀବିତ କରିଅଛନ୍ତି । ବିଶେଷତଃ ଦେଶପ୍ରୀତି ଓ ପ୍ରେମ କବିତାରେ ଏହାଙ୍କ ରସାଳ ହୃଦୟର ପ୍ରକୃଷ୍ଟ ଅଭିବ୍ୟକ୍ତି ପରିଲକ୍ଷିତ ହୋଇଅଛି । ପ୍ରାଚୀନ କାବ୍ୟ ସାହିତ୍ୟର ଅନୁପମ ରସାଣରେ ରସାଣିତ ହୋଇ ଶ୍ରୀମାନ୍ ବଛନ୍ଦ ଚରଣଙ୍କ କବିତା ବିଚିତ୍ର ବେଶ-ମଞ୍ଜୁଳା ବରବଧୂ ରୂପେ ଜନମନ ହରଣ କରୁଅଛି; ଏ ଯୁଗର ଅନ୍ୟ କୌଣସି ପ୍ରତିଭାଶାଳୀ କବିଙ୍କ କବିତା ଏହା କରୁଅଛି ବୋଲି ମୋର ମନେ ହେଉନାହିଁ । ସଂସ୍କୃତ କବି ଯଥାର୍ଥରେ କହିଛନ୍ତି—

ତସ୍ୟ କବିତସ୍ୟ କିଂବା ତସ୍ୟ ବନିତସ୍ୟ ତଥା
ପଦବିନ୍ୟାସମାତ୍ରେଣ ଯସ୍ୟ ନାପହୃତଂ ମନଃ ।

ପ୍ରାଚୀନକୁ ଭିତ୍ତି କରି ନବୀନ ଯୁଗ ସଙ୍ଗେ ପଦ ପକାଇ କବିତା ରାଜ୍ୟରେ ନୂଆ ପର୍ଯ୍ୟାୟ ପ୍ରବର୍ତ୍ତନ କରିବାରେ ଶ୍ରୀମାନ୍ ବିଛନ୍ଦ ଚରଣ ଯେ ଅପ୍ରତିଦ୍ୱନ୍ଦ୍ୱୀ ସ୍ଥାନ ଅଧିକାର କରିଛନ୍ତି ଏହା ମୁଁ ଦୃଢ଼ତା ସହକାରେ କହିପାରେ ।

ଭାଷାକୋଷ ଆଶ୍ରମ
କଟକ ୧ । ୪ । ୧୯୪୫

**ଗୋପାଳଚନ୍ଦ୍ର ପ୍ରହରାଜ**
ସାହିତ୍ୟଭୂଷଣ, ରାୟ ବାହାଦୁର, କାଇଜର-ଇ-ହିନ୍ଦ୍

—ଦେଶର ସହଜ ସାହିତ୍ୟର ପରମ୍ପରା ଅକ୍ଷୁଣ୍ଣ ରଖିବା ପ୍ରକୃତ ବୁଦ୍ଧିମାନ ସାହିତ୍ୟପ୍ରାଣଙ୍କର ଅବଶ୍ୟ କର୍ତ୍ତବ୍ୟ । ଦୈବ ବିଡ଼ମ୍ବନାରୁ ଶିକ୍ଷା ପଦ୍ଧତିରେ ଉତ୍କଳ ସାହିତ୍ୟ ଅନୁଶୀଳନର ଅଯଥା ପରିବର୍ତ୍ତନ ହେତୁ ଜାତୀୟ ଭାଷା ଓ ସାହିତ୍ୟର ସହଜ ଭାବ ବିଦୂରିତ ହେଲା । ମଧ୍ୟଯୁଗରେ କଳା-ବିଭବର ଆଧିକ୍ୟ ଦୂଷଣ, ଏହି ଭାବ ଯେଉଁମାନେ ପୋଷଣ ଓ ଘୋଷଣା କରନ୍ତି ଏହା ସେମାନଙ୍କର ଅବଶ୍ୟ ଜ୍ଞାତବ୍ୟ ଯେ ସେ ଯୁଗର କୃତିମାନଙ୍କରେ ଭାଷାର ସହଜ ଭାବ ଉକ୍ତ ଚାତୁର୍ଯ୍ୟ ଓ ବୈଚିତ୍ର୍ୟମୟ କଳାବିଭବ ସହ ସମଭାବରେ ଅନ୍ତଃସଲିଳା ଫଲ୍‌ଗୁବତ୍ ଅବାଧରେ ଗତି କରୁଥିଲା । କିନ୍ତୁ ନୂତନ ପଦ୍ଧତିର ପ୍ରବର୍ତ୍ତନ ହେତୁ ସଂସ୍କୃତ ଭାଷାର କାରକ ପ୍ରକ୍ରିୟା ତଥା ବିଧି ଯୋଜନା ଉତ୍କଳ ଭାଷାରେ ନିଜର ଆଧିପତ୍ୟ ବିସ୍ତାର କଲା । ମଧ୍ୟଯୁଗର କବିମାନେ ଉତ୍କଳ ସାହିତ୍ୟରେ କଳା ବିଦ୍ୟାର ପ୍ରୟୋଗ ପ୍ରକ୍ରିୟାରେ ନିଜର ଚାତୁର୍ଯ୍ୟ ଓ ନୈପୁଣ୍ୟ ଦର୍ଶାଇ ରସାନୁକୂଳ ଗୁଣର ଅନୁରୋଧରେ ବିଧିର ରୀତ୍ୟନୁଯାୟୀ ଉପଯୁକ୍ତ ରାଗରାଗିଣୀ ତଥା ବୃତ୍ତର ପ୍ରବର୍ତ୍ତନ ଦ୍ୱାରା କାବ୍ୟରଚନା କରୁଥିଲେ ଓ ସଙ୍ଗୀତର ମାଧୁରୀ ତହିଁରେ ପରିସ୍ଫୁଟ କରାଇ ପାରୁଥିଲେ । ଉତ୍କଳର ପ୍ରାଚୀନ ପଦ୍ୟ ସାହିତ୍ୟ ଯେଉଁ ବିଦ୍ୱନ୍‌ମଣ୍ଡଳୀ ସବିସ୍ତର ଅନୁଶୀଳନ କରନ୍ତି ସେହିମାନେ ହିଁ ଏହି ଉକ୍ତିର ସାରବତ୍ତା ହୃଦୟରେ କଳନା କରି ପାରିବେ ଏଥିରେ ସନ୍ଦେହର ସ୍ୱଳ୍ପମାତ୍ର ଅବକାଶ ନାହିଁ । ପାଶ୍ଚାତ୍ୟ ଶିକ୍ଷାର ଶୈଳୀ ଅନୁସାରେ ପାଠ୍ୟପୁସ୍ତକର ଅଭାବ ସକାରଣ ହେଉ ବା ଅକାରଣ ହେଉ ଉପଲବ୍ଧି ହେଲା ଏବଂ ସେହି ଅଭାବ ପରିପୂରଣ ନିମିତ୍ତ ନୂତନ ରୀତିର ଗ୍ରନ୍ଥମାନ ଉତ୍କଳ ଭାଷାବିତ୍‌ଙ୍କ ଦ୍ୱାରା ଲିଖିତ ହେଲା । ଇଂରାଜ ସାହିତ୍ୟର ପ୍ରକୃତି ଓ ରୀତିରେ ଅନୁପ୍ରାଣିତ ଉତ୍କଳର ତଦାନୀନ୍ତନ କୃତବିଦ୍ୟ ବ୍ୟକ୍ତିଗଣ ପାଶ୍ଚାତ୍ୟ ସାହିତ୍ୟକୁଶଳ ସମକାଳୀନ ବଙ୍ଗୀୟ ଲେଖକଗଣଙ୍କ ପଦାଙ୍କ ମଧ୍ୟ ଅନୁସରଣ କରି ସଂସ୍କୃତ ଭାଷାର ସ୍ୱରୂପକୁ ଉତ୍କଳ ଭାଷାରେ ଉପସ୍ଥାପିତ କଲେ ଏବଂ ତତ୍‌ସହ ଇଂରାଜ ରୀତି ମଧ୍ୟ ଅଜ୍ଞାତସାରରେ ହେଉ ଅବା ଜ୍ଞାତସାରରେ ହେଉ, ଉତ୍କଳ ଭାଷାରାଜ୍ୟରେ ଆରୋପ କଲେ; ପାଶ୍ଚାତ୍ୟ ସାହିତ୍ୟ ତଥା ଭାଷାର ରୂପରୀତି ତଥା ପ୍ରକୃତିର ଆପାତରମଣୀୟତାର ବ୍ୟାମୋହରେ ମୁଗ୍ଧ ହୋଇ ଉତ୍କଳଭାଷାର ବିଶିଷ୍ଟତା ପ୍ରତି ଅବହେଳା ପ୍ରଦର୍ଶନ କଲେ ।

ଏହି ଅବସ୍ଥା ସଂଦର୍ଶନରେ ବ୍ୟଥିତ ମୁଁ ହୋଇ ଉତ୍‌କଳ ଭାଷା ତଥା ସାହିତ୍ୟର ସହଜ ଭାବ ଲୋକସାଧାରଣ ସମକ୍ଷରେ ଉପସ୍ଥାପିତ କରିବା ମାନସରେ ମନାସ କରି ଦୃଢ଼ପରିକର ହୋଇ ପ୍ରାଚୀନ ସାହିତ୍ୟର ଅନୁଶୀଳନରେ ପ୍ରବୃତ୍ତ ହେଲି । ଯେଉଁ ଗୁଣିବର୍ଗ ଏ ସୁଦୁସ୍ତର କାର୍ଯ୍ୟରେ ମୋର ସହକାରୀ ହୋଇଥିଲେ ତନ୍ମଧ୍ୟରେ

ଶ୍ରୀମାନ୍ ବିଚ୍ଛନ୍ଦଚରଣ ମୁଖ୍ୟତମ । ତାଙ୍କର ସ୍ୱଦେଶପ୍ରାଣତା ହେତୁ ସେ ଯୁବାବସ୍ଥାରୁ ପ୍ରାଚୀନ ସାହିତ୍ୟରେ ଅନୁରାଗୀ ହୋଇ ତାହାର ଉଦ୍ଧାରକଳ୍ପେ ବ୍ରତୀ ହେଲେ । ସେ ବିଶେଷ ବିଶେଷ ସ୍ଥଳରୁ ବିଷମ ପରିଶ୍ରମସହ ସୁଷମ ସୁମନସମୂହ ସଂଚୟ କରି ସୁରସ ସୁମନାମାନର ସରସ ମାନସସରସୀରେ ସନ୍ନିବେଶିତ କରିଅଛନ୍ତି । ଶଶିରେଖା କାବ୍ୟ ଓ ଚଉତିଶା ମଧୁଚନ୍ଦ୍ର ପ୍ରଭୃତି ସମୁଚିତ ଯୋଜନାରେ ସମ୍ପାଦନପୂର୍ବକ ସାର ସାହିତ୍ୟ ସାର ସରସ ରସିକତାର ଅଗ୍ରସରଣୀ ଆଶ୍ରୟ ପୁରଃସର ସାରଳାସଦ୍ମରେ ସୁଷମା ସମ୍ଭାରର ସମନ୍ୱୟ କରି ଶିକ୍ଷିତ ସୁଧୀସମୂହର ସାତିଶୟ ବିସ୍ମୟ ଉତ୍ପାଦନରେ ସମର୍ଥ ହୋଇଅଛନ୍ତି । ପ୍ରାଚୀ ସମିତି ପକ୍ଷରୁ ପ୍ରକାଶିତ "ପ୍ରାଚୀ" ପତ୍ରିକାର ପୁରୋଧା ପଦବୀରେ ପ୍ରାପ୍ତାଧିକାର ହୋଇ ସେ କଳାକୁଶଳେ ଉତ୍କଳ ଗୌରବର ପରାକାଷ୍ଠା ପ୍ରଦର୍ଶନପୂର୍ବକ ନିଜର କର୍ମଦକ୍ଷତା ତଥା ପବିତ୍ର ଦେଶପ୍ରାଣତାର ପ୍ରକୃଷ୍ଟ ପରିଚୟ ପ୍ରଦାନ କରିଅଛନ୍ତି । ସେ ଉତ୍କଳର କାବ୍ୟକୁଞ୍ଜରୁ କମନୀୟ କୁସୁମନିବହର ପ୍ରାଣତର୍ପଣକର ସୌରଭକୁ ଇଂରାଜୀ ଭାଷାରେ ବିକରଣ କରି କାବ୍ୟରସିକ ତଥା କାନ୍ତକବିକଳାପକଙ୍କର ଚମତ୍କାର ପ୍ରତିପାଦନ କରି ପାରିଅଛନ୍ତି । ଉତ୍କର୍ଷ କଳାଧାର ଉତ୍କଳର କାବ୍ୟ କବିତାଚୟ ଚିତ୍ତର ଉଲ୍ଲାସକ ପଦକଦମ୍ବକକରମ୍ବିତ, ପୁନଶ୍ଚ ତନ୍ମଧ୍ୟସ୍ଥିତ ସଂଗୀତଧାରା ଲାବଣ୍ୟ ମାଧୁର୍ଯ୍ୟମୟୀ ସୁଧାରସନିଷ୍ୟନ୍ଦିନୀ ମନ୍ଦାକିନୀ । ପ୍ରାଚୀନ ଯୁଗର ରସିକ ଜନପ୍ରିୟ କବିନିକରଙ୍କ ମଧୁର ଦିବ୍ୟକଣ୍ଠ ଦେଶରୁ ବିନିସୃତ ହୋଇ ସେହି ମନ୍ଦାକିନୀର ଅମନ୍ଦ ମନ୍ଦ୍ରଧାରା ବିବିଧ ସୁନ୍ଦର ଛନ୍ଦରେ ଅବିରାମ ଗତିରେ ଉତ୍କଳ ଧରିତ୍ରୀମଣ୍ଡଳ ବକ୍ଷ ପ୍ଲାବିତ କରିଥିଲା । କିନ୍ତୁ ପରିତାପର ବିଷୟ, ସଂଗୀତର ସେହି ସହଜ ସ୍ୱଚ୍ଛନ୍ଦ ମଧୁର ଅବିରାମ ପ୍ରବାହ ନୂତନ ଅପ୍ରାକୃତ ଛନ୍ଦର ବନ୍ଧରେ ହତଶ୍ୱାସ ହୋଇ ଅତି ମନ୍ଥରଗତି ପ୍ରାପ୍ତ ହେଲା । ଦେଶକାଳପାତ୍ରଭେଦରେ ଅବସ୍ଥା ବିଶେଷଗତ ବିଷୟ ବିଚାର ଓ ତଦ୍‌ବର୍ଣ୍ଣିତ କ୍ରିୟାକଳାପ କି ଭାବରେ କି ଭାଷାରେ କି ଛନ୍ଦର ବନ୍ଧରେ ଉପସ୍ଥାପିତ କରିବାକୁ ହେବ ଯୁଗ ଯୁଗର ପ୍ରେରଣା, ଅନୁଭୂତି ଫଳରେ ଏହାର ଯେ ସିଦ୍ଧାନ୍ତ ହୋଇଥିଲା ତାହାର ଉପଯୋଗିତା ତଥା ଅନୁପଯୋଗିତା ବିଚାର ନ କରି ତଦ୍‌ପ୍ରତି ଅବହେଳା ପ୍ରଦର୍ଶନ କରିବା ଘୋର ଅବିମୃଶ୍ୟକାରିତାର ବିଷୟ । ପୁରାତନ ବିଷୟସକଳ ଯେ ଶୁଦ୍ଧପୂତ ଏପରି ଭାବ ପୋଷଣକାରୀ ବ୍ୟକ୍ତି ନିଶ୍ଚୟ ଅନୁଦାର ତଥା ସଙ୍କୀର୍ଣ୍ଣଚେତା । ଜଗତ୍ ଉନ୍ନତିଶୀଳ । ମାନବ ତଥା ସମାଜ ନିତ୍ୟ ନିତ୍ୟ ଉନ୍ନତ ପଦବୀରେ ଆରୋହଣ କରୁଅଛି । କ୍ରମବିକାଶର ଧାରା ଅନୁଯାୟୀ ସମାଜ ସ୍ୱତଃ ଗଠିତ ହୁଏ ଏବଂ ହେବ, ଏହା ଅବଶ୍ୟମ୍ଭାବୀ ଓ ଅନିବାର୍ଯ୍ୟ । ଏହାର ପ୍ରତିରୋଧ କରିବା ବା ରକ୍ଷଣଶୀଳତାର ମୋହରେ ପଡ଼ି ଏହାକୁ ବାଧା ଦେବା ଅସମୀକ୍ଷ୍ୟକାରିତାର ପରିଚାୟକ । ଲୋକେ ପ୍ରତିରୋଧ କରିବାରେ ବାଧା ଦେବାରେ ପ୍ରୟାସ କରନ୍ତି । କିନ୍ତୁ ତାହା ବିଫଳ ପ୍ରୟାସ । କାଳ-ନିୟତିର ଗତି ଅବାରିତ । ସେହି କାଳର ଚିନ୍ତାଶୀଳ ବିଶିଷ୍ଟ ବ୍ୟକ୍ତି ନିୟତିର ଗତି ଲକ୍ଷ୍ୟ କରି ଜାତିର ତଥା ଜନର କଲ୍ୟାଣଦୃଷ୍ଟିରେ ତାକୁ ଉପଯୁକ୍ତ ଭାବରେ ନିଜର ଜାତିର ତଥା ଦେଶର ପ୍ରକୃତି ଅନୁଯାୟୀ ସଂବିଧାନ ସହ ନିୟୋଜିତ କରନ୍ତି । ତଦନୁଯାୟୀ ଜୀବନକୁ ସୁବିଚାର ପରିଚାଳନ କରନ୍ତି ଏବଂ ଜୀବନର ଉପଯୋଗୀ ବିଷୟମାନ ମଧ୍ୟ ସେହି ରୀତିରେ ଗଠିତ କରନ୍ତି । ଏତଦ୍‌ଦୃଷ୍ଟିରେ ନୂତନକୁ ଉପଯୋଗିତା ଅନୁସାରେ ଗ୍ରହଣ କରନ୍ତି; ଏତଦ୍ୱାରା ପ୍ରତିପନ୍ନ ହୁଏ ନାହିଁ ଯେ ସେ ପୁରାତନକୁ ଏକାବେଳକେ ଉପେକ୍ଷା କରନ୍ତି । ପୁରାତନର ଯାହା ଉପଯୋଗୀ ତାକୁ ସଂରକ୍ଷଣ କରି ତତ୍‌ସହ ନୂତନର ମଧୁର ସମାବେଶ କରନ୍ତି—ଏହା ଯୁଗ ପ୍ରବର୍ତ୍ତକଙ୍କର କାର୍ଯ୍ୟ । ଏତଦ୍ୱାରା ଜାତୀୟ ଜୀବନ ଦୃଢ଼ ଭାବରେ ସଂଗଠିତ ତଥା ସଂସ୍ଥାପିତ ହୁଏ । ଜାତୀୟ ଜୀବନ ପରମ୍ପରାର ସମଷ୍ଟି । ଆଜି ଦେଶ ବିଦେଶର ସଭ୍ୟତା, ନୂତନ ଚିନ୍ତା, ଭାବନା, ଆବିଷ୍କାର, ଉଦ୍‌ଭାବନ ସେହି ସେହି ଦେଶରେ ସୀମାବଦ୍ଧ ନୁହେଁ; ଜଗତର ବିଶାଳ ପ୍ରାଙ୍ଗଣରେ ଉନ୍ମୁକ୍ତ ଭାବରେ ସର୍ବସାଧାରଣ ଧନ ରୂପେ ତାହା ଉପଗତ । ଯେଉଁମାନେ କେବଳ ନୂତନର ପକ୍ଷପାତୀ ସେମାନେ ଏକଦେଶଦର୍ଶୀ, ଅବିମୃଶ୍ୟକାରୀ ତଥା ଜାତୀୟ ଜୀବନର ବିଷମ ପରିପନ୍ଥୀ ।

ସେମାନଙ୍କର ଏହି ମୂଢ଼ତା-ହେତୁକ ଭ୍ରମ ସ୍ପଷ୍ଟଭାବରେ ଦର୍ଶାଇବା ଛଳରେ ଯୁଗର ସାଧୁ ପ୍ରବର୍ତ୍ତକ ରୂପେ ଶ୍ରୀମାନ୍ ବଞ୍ଛାନିଧିଚରଣ ପ୍ରାଚୀନ ଛନ୍ଦର ବନ୍ଧରେ କିପରି ଜଗତର ନୂତନ ଭାବରାଜି ସୁବିମଳ ଆଭାରେ ପ୍ରତିଭାତ ହୁଏ ତାହା ସ୍ୱକବିତାକୁମୁଦରେ ଯଥାଯଥ ଦର୍ଶାଇଅଛନ୍ତି । ମୋର ଚିରପୋଷିତ ଅଭିଳାଷିତ ସେ କାର୍ଯ୍ୟରେ ଦର୍ଶାଇ ପରିପୂରଣ କରିଅଛନ୍ତି । ଏହା ମୋର ଚିତ୍ତରେ କି ଅପୂର୍ବ ଆନନ୍ଦ ପ୍ରଦାନ କରିଅଛି ତାହା ଭାଷାରେ ଅଭିବ୍ୟକ୍ତ ହୋଇ ପାରେ ନାହିଁ । ସେ ନିଜର ଆକ୍ଷେପ ଉଦ୍‌ବେଗରେ "ସେ କାଳ ବିପଞ୍ଚୀ ଏକାଳ ତାନ" କବିତାରେ ସ୍ପଷ୍ଟ ଅଭିବ୍ୟକ୍ତ କରି କହିଅଛନ୍ତି "ଛନ୍ଦ କଳ୍ପତରୁ ତଳେ" ରହି ଉତ୍କଳୀୟର ରସକ୍ଷୁଧା ମେଣ୍ଟୁନାହିଁ । ଏହି ଉକ୍ତିରେ କବିଙ୍କର କି ଆତ୍ୟନ୍ତିକ ମର୍ମବେଦନା ତାହା ସ୍ପଷ୍ଟ ପ୍ରକାଶ ପାଉଅଛି । ତାଙ୍କର ଏହି ଦୁଃଖ ଅସହମାନ ହେବାରୁ ସେହି ଦୁଃଖ ମେଣ୍ଟାଇବାକୁ ପ୍ରୟାସୀ ହୋଇ ସେ ସ୍ୱକୃତିତ୍ୱ ବଳରେ ସଫଳକାମ ହୋଇଅଛନ୍ତି । ସେ ନିଜର କବିତା କୁମୁଦର ପ୍ରାରମ୍ଭରେ 'ମାଆ'ଙ୍କର ସଂବର୍ଦ୍ଧନା କରିଅଛନ୍ତି । ଏହି ମାତୃପୂଜା—ଦେଶପୂଜା ପ୍ରକୃଷ୍ଟ ପୂଜା । ଏ ପୂଜାର ସମକକ୍ଷ ଆଉ କିଛି ନାହିଁ । ମାଆ ଶକ୍ତିସଂଗ୍ରହିଣୀ, ଅଭୟବରଦାୟିନୀ ଏବଂ କବିତାକୁମୁଦର ଉଲ୍ଲାସଦାୟିନୀ କହି କବି ପ୍ରାରମ୍ଭ ଭାଷଣ କରିଅଛନ୍ତି । ଏହି କବିତାକୁମୁଦରେ ତାଙ୍କ ଚିତ୍ତ ପ୍ରତିଫଳିତ—ତହୁଁ ତାଙ୍କର ଚିତ୍ତକୁ କବିତା କୁମୁଦ କହିବାରେ ସମୀଚୀନ ଉକ୍ତି କରିଅଛନ୍ତି । ଏହା ତାଙ୍କର ଭାବସମୃଦ୍ଧିର ପ୍ରକାଶକ । ବାଣୀ ଆରାଧନା ତାଙ୍କ ଧର୍ମ; ସେହି ଧର୍ମର ଶୋଭନ ପରିପାଳନ ନିମିତ୍ତ ସେ ତାଙ୍କ ପୂର୍ବବର୍ତ୍ତୀ ତଥା ସମକାଳୀନ ଗୁରୁରୂପୀ ମନୀଷୀମାନଙ୍କ ସଂବର୍ଦ୍ଧନା କରି ନିଜର କର୍ତ୍ତବ୍ୟ ଯଥାଯଥ ପ୍ରାରମ୍ଭ କରି ସାଙ୍ଗ କରିଅଛନ୍ତି । "ଦେବତା-ବନ୍ଦନଂ କୁର୍ଯ୍ୟାତ୍ ଗୁର୍ବଭିବନ୍ଦନ ପୂର୍ବକମ୍" । ସେ ନିଜର ଗୁରୁରୂପେ ଉପେନ୍ଦ୍ରଭଞ୍ଜଙ୍କୁ ଅଭିବନ୍ଦନ କରି ମାଆଙ୍କଠାରୁ ଶକ୍ତିଭିକ୍ଷା କରିଅଛନ୍ତି । ମହାମାନବ ମହାତ୍ମାଜୀଙ୍କଠାରୁ ଆରମ୍ଭକରି ପଠାଣିସାମନ୍ତ, ଗୌରୀଶଙ୍କର ତଥା ଉତ୍କଳର ନେତା ମଧୁସୂଦନ ଓ ଗୋପବନ୍ଧୁ ପ୍ରମୁଖଙ୍କୁ ଅର୍ଘ୍ୟ ପ୍ରଦାନ, ସାହିତ୍ୟରସିକ ରବୀନ୍ଦ୍ରନାଥ, ରାଧାନାଥ, ମଧୁସୂଦନ, ଗୋପାଳକୃଷ୍ଣ, ଗୋପାଳଚନ୍ଦ୍ର ଓ ନନ୍ଦକିଶୋର ପ୍ରଭୃତିଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପଣ ଏବଂ ସି. ଭି. ରମଣ ଓ ଲକ୍ଷ୍ମୀକାନ୍ତଙ୍କ-ଠାରୁ ନୃସିଂହଚରଣ ପ୍ରଭୃତିଙ୍କ ପର୍ଯ୍ୟନ୍ତ ନିଜର ସହୃଦୟ ପୁଷ୍ପର ଅର୍ଚ୍ଚନାଦ୍ୱାରା ପ୍ରତିଭାପୂଜାର ସରଣୀ ଦେଶ-ବାସୀଙ୍କ ସମ୍ମୁଖରେ ଉଜ୍ଜ୍ୱଳାକ୍ଷରେ ଉପସ୍ଥାପିତ କରିଅଛନ୍ତି । ଆଧ୍ୟାତ୍ମିକତାରେ ମାନବର ପ୍ରକୃଷ୍ଟ ଚିତ୍ତବିଭବ ପରିସ୍ଫୁଟ ହୁଏ—ସେ ନିଜର ଶକ୍ତିର ସ୍ୱଳ୍ପତା ପ୍ରଦର୍ଶନ ପୂର୍ବକ ଜଗଦ୍‌ନିୟନ୍ତ୍ରୀ ପରମଶକ୍ତି ସମକ୍ଷରେ ଆତ୍ମସମର୍ପଣ ପୂର୍ବକ ପ୍ରାର୍ଥନା କରେ ପାଇବାକୁ ସେହି ପଦାର୍ଥ ଯାହାଦ୍ୱାରା ସେ ଜଗତର ମର୍ମ କଳନା କରି ଅମର ଗୀତି ଗାଇ ସ୍ୱହୃଦୟରେ ଶାନ୍ତି ଆଣିବ । ତାହା ସେହି ଶକ୍ତି । "ତୁମ୍ଭେ ଓ ମୁଁ" "ମା କରୁଣା ନାହିଁକି", "ବାଣୀ ରାଣୀ", "ମା ତୁ କ୍ଷମାବାରିଧି", "ଭାରତୀ ଆବାହନ ଗୀତି" ପ୍ରଭୃତି ଦ୍ୱାରା ଉପରିକଥିତ ବିଷୟ ପରିସ୍ଫୁଟ ।

"ନୈଜନ୍ତଲାଙ୍କ ପତିଗୃହଯାତ୍ରା"ରେ କର୍ତ୍ତବ୍ୟ ଶିକ୍ଷା, "ରତ୍ନରେଣୁ"ରେ ନୀତିଶିକ୍ଷା, "ମୋ ସୁନାଗୁନ୍ଦି"ରେ ହୃଦୟର ଗଭୀର ବେଦନାଜନିତ ସରଳ କରୁଣ ମଧୁର କବିତ୍ୱର ଦିବ୍ୟ ଉଚ୍ଛ୍ୱାସ, "ଜହ୍ନ"ରେ ସରଳ ପ୍ରାଣର ମୁଗ୍‌ଧବାଣୀ, "ଅଜଣା ନିତାଇ"ରେ ବାସ୍ତବ ଆଶ୍ୱାସନା, "ଖଣ୍ଡାୟତ"ରେ ଜାଗର ବାର୍ତ୍ତା, ଆଲେକଜାଣ୍ଡର ଦସ୍ୟୁ ସମାନ ଉଭୟେ" ଏହାଦ୍ୱାରା ସମୁଚିତ ଯୁକ୍ତିର ପ୍ରସ୍ତାବନାରେ ଐହିକ ବିଭବ କାମନାର ବିଷମ ପରିଣତିର ପ୍ରତିପାଦନ, "ରାମ ବିଳାପ"ରେ ଦୁଃଖୀର ବାସ୍ତବ ଆତ୍ମପ୍ରକାଶ ପ୍ରଭୃତି ଯଥାଯଥ ଉପସ୍ଥାପିତ ହୋଇଅଛି । ଅନୁବାଦରେ ସୁନ୍ଦର ଭାବ ଓ ଭଙ୍ଗୀ ଅକ୍ଷୁର୍ଣ୍ଣ ରଖିବା ବଡ଼ କଠିନ ବ୍ୟାପାର । କିନ୍ତୁ ଶ୍ରୀମାନ୍ ବଞ୍ଛାନିଧିଚରଣ ଉକ୍ତ କବିମାନଙ୍କ ଭାବରେ ଏପରି ଅନୁପ୍ରାଣିତ ହେଲେ ଯେ ସେ ନିଜେ ମୌଳିକ ଭାବାପନ୍ନ ବ୍ୟକ୍ତି ତୁଲ୍ୟ କବିତା ଲେଖିଲେ—ତାହା ମୌଳିକ କବିତା ରୂପେ ବିରାଜିତ; କାରଣ ସେ ପଦ୍ୟଗୁଡ଼ିକରେ ଭାବ ଓ ବାଣୀର ଏପରି

ମଧୁର ସମନ୍ୱୟ ହୋଇଅଛି ଯେ ତାହା ଅପର ରଣତର ଛାୟାରୂପେ ଆଦୌ ଜଣାଯାଏ ନାହିଁ । ତାଙ୍କ ପ୍ରୀତିଗୀତି "ଆଦ୍ୟ ଭେଟେ"ରେ ପୂର୍ବରାଗର ପ୍ରଥମ ପ୍ରସ୍ତାବନାରେ ପ୍ରେମମନ୍ଦିରର ପ୍ରଥମ ଅନୁଭୂତିର ଉନ୍ମାଦନା ତରଳଧରଳ ମଧୁର ଭାବରେ ଗତିକବି ସଙ୍ଗୀତର ସାର ଉଦ୍‌ଗିରଣ ପୂର୍ବକ ଦିବ୍ୟ କଣ୍ଠର ବାଜେଣି ବୀଣା ଗୀତ ଶୁଣାଇଅଛି । "ମଞ୍ଜୁଳା ମାଧବ"ର ମଧୁର ପ୍ରୀତି ଦୂଷଣ ଘୋଷଣ ବା ଜଣାକୁ କାହିଁକି ବା ଡରିବ ଯେ ମଧୁ ଚୁମ୍ବିଛି ସେ ମଧୁର କଅଣ ଜାଣେ, ସେ କି ବାରଣ ମାନିବ ? ବାସ୍ତବ ଶାସ୍ତିକୁ କି ଭୟ କରିବ ? ସେ ତାକୁ ତୁଚ୍ଛ କରି ମଣେ, ଏହା ଯେ ଉତ୍ତମରୂପେ ଭଣେ ।

ବସେ ସେ ରସିକ ଉଚ୍ଚ ଆସନେ,
କବିରୂପେ ସାରା ଜଗତ ତାକୁ ମାନେ ।

"ଲାଳସୀ ଏ ସାରା ପରାଣ" ରସିକ ଏହା ସଦା ପାଠ କରିବ, ସୁନିଶ୍ଚିତ; କାରଣ ପ୍ରେମିକ ହୃଦୟର କାହାଣୀଯାକ କବି ପଦକରେ ବଖାଣି ଅଛନ୍ତି । "ରତ୍ନମାଳା ପାଖକୁ ମାଧବ" "କିଶୋର ପାଖକୁ କାମିନୀ" ଓ "କାମିନୀ ପାଖକୁ କିଶୋର" "ଗୋପ ପାଖକୁ ମିନତି" ଓ "ମିନତି ପାଖକୁ ଗୋପ" "ମାଳତୀ ପ୍ରତି ବସନ୍ତ" "ବ୍ରଜକିଶୋର ପାଖକୁ ସ୍ନେହଲତା" "ହେମଲତାର ଚିଠି" "ନିତ୍ୟାନନ୍ଦ ପାଖକୁ ନିରୁପମା" "ରାଜକିଶୋର ପାଖକୁ ମାଧୁରୀ" ପ୍ରଭୃତି ପ୍ରେମ ଚିଠାଉର ଆଦାନ ପ୍ରଦାନରେ ପ୍ରେମର ଯେ ଉନ୍ମୁକ୍ତ ଭାବ ବିରାଜିତ ସେଥିରେ ତ କିଛି ଅପ୍ରାକୃତ ବିଷୟର ଅବତାରଣା ନାହିଁ ।

ସମର ସମରେ ପ୍ରୀତି, ସୁନ୍ଦରର ସୁନ୍ଦର ସହିତ ସମଭାବୁକତା ଓ ସହଯୋଗିତା ସୁନିଶ୍ଚିତ । ପ୍ରକୃତିର ସମତାରେ ଶାନ୍ତି, ଅସମତାରେ ବିଗ୍ରହ, ବିପ୍ଳବ, ବିଶୃଙ୍ଖଳତା ଓ ଅଶାନ୍ତି; ପ୍ରୀତିର ମାଧୁରୀ ଶାନ୍ତିର ଆସ୍ଥାନରେ ବିଶ୍ରାନ୍ତି ଲାଭକରେ । "ସକଳ ବ୍ୟାଧିର ଭେଷଜ" ରୂପିଣୀ କବିତାରେ "ରୂପକାଙ୍ଗାଳୀ" "କରିଦ ପ୍ରଜା ମୁଁ ମାତର" "ତା ଶୋଭିବାରି ଆଶାୟୀ ମୋ ଜୀବ ଚାତକ" "ସବୁଠୁଁ ମନୋଜ୍ଞ ଦିଶ ମୋରେ", "କାୟା ତୁହି ଛାୟା ମୁଁ ମାତର", "ଷିତିଶିର ଅଳକା ମୋ ବାଳା" "ଅଳତା ହୋଇବି ମୋ ବାଞ୍ଛିତ", ପ୍ରଭୃତି ନାୟକର ପ୍ରାଣ-ଖୋଲା ଉକ୍ତିକୁ "ମୋର ଶତ ବଇଭବ ଟେର" "ଆଖି ଲୁହେ ଆଖିର କଜଳ, ଗୋଳାଇ ଲିହୁଛି ଲିପିମାଳ" "କୁମାରୀ ମୁଁ ରହିବି ଖାରି, ପୋଛିଲା ଯାଏଁ ତୁମ୍ଭେ ମୋ ନୟନୁ ନୀର" "ହୃଦ ତସକର ମୋର, ଚନ୍ଦ୍ର ହୋଇ କୁମୁଦକୁ ମଣ କପାଁ ଦୂର" "ଲଲାଟ ପଟେ ମୋ ଗାର, ପ୍ରିୟ ମୋହର ହେ" "ଆସ ମୋ ରଙ୍କ ସଙ୍ଗାଳି, ମୁଁ ତୁମ୍ଭ ବାଳୀ" "ଅଲଙ୍ଘ୍ୟ ମୋହର ମଣି ଗଣ" ନାୟିକାର ସରଳ ବିଶ୍ୱାସରେ ପ୍ରୀତି ସ୍ନିଗ୍ଧ ମସୃଣ ଦ୍ରୁତ ଚିତ୍ତରେ ଆତ୍ମସମର୍ପଣ ପୂର୍ବକ ଆଶାୟୀ ଭାବସୂଚକ ଉତ୍ତରଗୁଡ଼ିକ ପ୍ରୀତିବିନୋଦିଆଙ୍କ ରସିକ ଚିତ୍ତରେ କି ରତି ସ୍ଫୂର୍ତ୍ତି କରିବ ତାହା ଅନୁଭବୀ ମାନେହିଁ ଅନୁଭବ କରି ପାରିବେ । "ବିରହ ବାରମାସି"ରେ ବିରହର କରୁଣ ମଧୁର ଝଙ୍କୃତି, "ବିଚ୍ଛେଦ ଚଉତିଶା"ରେ କ୍ଷୁବ୍ଧ ଲଳିତ ହୃଦୟର ଦ୍ରୁତତା, "ପଲ୍ଲୀବଧୂ"ରେ ଗୌରବାବଦ୍ଧ ଉଚ୍ଚଆୟୋର ଅନୁରୋଧରେ ଭାବାନୁକୂଳ ଭାଷାର କାନ୍ତମନ୍ତ୍ର, "ମୋ ଦେଶ"ରେ ଦେଶପ୍ରାଣତାର ଉଦାତ୍ତ ଉଚ୍ଛ୍ୱାସ, "ମୋ ସୁନା ଚାନ୍ଦ"ରେ ସୁନ୍ଦରର ତିରୋଧାନରେ ଅନୁରାଗୀ ଆକୁଳ ହୃଦୟର କରୁଣ ସ୍ପନ୍ଦନଜନିତ କବିତ୍ୱର ବିଳସନ, "ଉତ୍କଳଚନ୍ଦ୍ରମଣି"ରେ ବହୁ ରସର ମଧୁର ସମନ୍ୱୟ ଓ ସ୍ୱାନୁଭୂତିଜନିତ ସମବେଦନାରେ ସ୍ଥିର-ସଙ୍କଳ୍ପ, 'ଜହ୍ନ'ରେ ସହଜ ସରଳ ଛବି, "ତୁ ଏବେଣ ହୋଇବୁ ନାହିଁ"ରେ କାନ୍ତକବି ବନମାଳୀଙ୍କ ଗୁରୁତା ମାଧୁରୀର ଯୁଗପତ୍ ବିଳାସର ପ୍ରତିବିମ୍ବ । "କବି-ସଙ୍ଗାଳି"ରେ କବି-ବିଧାତା-ସ୍ୱାଧୀନଚେତା, ସୌନ୍ଦର୍ଯ୍ୟ ଓ ପ୍ରୀତିର

ବଳାସୀ-ସଦାନନ୍ଦସାମ୍ରାଜ୍ୟରେ ସମ୍ରାଟ । ଶ୍ରୀମାନ୍ କବି ବଞ୍ଛାନିଧିଚରଣ କବିସଙ୍ଗୀତର ବିଷୟ ନିଜ ଅନୁଭୂତିରୁ ପ୍ରକାଶ କରିଥିବାରୁ ସେ ତାଙ୍କ ସ୍ୱରୂପକୁ ଗୌଣ ଭାବରେ ଅଭିବ୍ୟକ୍ତ କରିଅଛନ୍ତି । ସେ ନିଜ କଥା ନିଜେ ଯଥାର୍ଥ ଭାବରେ କହିଅଛନ୍ତି । "ସ୍ୱଗୁଣାବିଷ୍କୃତୌ ଦୋଷୋ ନାସ୍ତି ଭୂତାର୍ଥଶଂସିନଃ" । ସତ୍ୟବାଦୀଙ୍କର ନିଜଗୁଣ ପ୍ରକାଶ କରିବା ଦୋଷ ନୁହେଁ । ଶ୍ରୀମାନ୍ ବଞ୍ଛାନିଧି ତା ପ୍ରକାଶ କରିନାହାନ୍ତି, କିନ୍ତୁ ତାହା ତାଙ୍କ ଉକ୍ତିରୁ ଜଣାଯାଏ । ମୋର ଶେଷରେ ପଦେ ଆହୁରି କହିବାର ଅଛି—ଶ୍ରୀମାନ୍ ବଞ୍ଛାନିଧିଚରଣ ପ୍ରକୃତ ଦେଶପ୍ରାଣ । ଯେ ପ୍ରକୃତ ଦେଶପ୍ରାଣ ସେ ସର୍ବଗୁଣାକର ମୋର ଏହା ଦୃଢ଼ ବିଶ୍ୱାସ ।

ପ୍ରାଚୀ ସମିତିର ପ୍ରତିଷ୍ଠାତା ରାୟବାହାଦୁର **ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି**, ଏମ୍ ଏ
ତା ୮ । ୭ । ୪୭

—ଶ୍ରୀମାନ୍ ବଞ୍ଛାନିଧିଚରଣ ପଟ୍ଟନାୟକ, ବି.ଏ., ବି.ଏଲ୍.ଙ୍କ ପ୍ରଣୀତ କବିତା କୁମୁଦରେ ପ୍ରକାଶିତ ଅନେକ କବିତା ବିଭିନ୍ନ ସଭାସମିତିରେ ବୋଲା ହେଉଥିବାବେଳେ ଶୁଣିଥିଲି । ଏ କବିତାମାନଙ୍କ ମଧ୍ୟରୁ "ଶକୁନ୍ତଳାଙ୍କ ପତିଗୃହ ଯାତ୍ରା" କବିତାଟି ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟରୁ ମାଟ୍ରିକୁ୍ୟଲେଶନ ପରୀକ୍ଷାର୍ଥୀଙ୍କ ପାଇଁ ପ୍ରକାଶିତ "କବିତା ପ୍ରବେଶ"ରେ ଦେଇଅଛି । ବଞ୍ଛାନିଧିଚରଣଙ୍କ ସାହିତ୍ୟସେବା ଓ ନିଷ୍ଠା ସମ୍ବନ୍ଧେ ଲେଖି ତାଙ୍କୁ ପରିଚିତ କରାଇବାର ଆବଶ୍ୟକତା ନାହିଁ । ତାଙ୍କର ବିଭିନ୍ନ ଲେଖାଦ୍ୱାରା ସେ ସୁପରିଚିତ । ପ୍ରାଚୀନ ଓଡ଼ିଆ ସାହିତ୍ୟକୁ ଅନୁକରଣ କରି ନୂତନ ଯୁଗର ଭାବକୁ ପ୍ରାଚୀନ ଯୁଗର ସାହିତ୍ୟ ଛାଞ୍ଚରେ ଢାଳି ସେ ଗୋଟିଏ ବିଶେଷତ୍ୱର ଆଦର୍ଶ ଦେଖାଇ ଅଛନ୍ତି । ତାଙ୍କର ସାହିତ୍ୟିକ ଲେଖନୀ ଉପରେ ଫୁଲଚନ୍ଦନ ପଡ଼ୁ ବୋଲି ମୁଁ କାମନା କରୁଅଛି ।

**ରାୟବାହାଦୁର ଶ୍ରୀଯୁକ୍ତ ଚିନ୍ତାମଣି ଆଚାର୍ଯ୍ୟ**, ଏମ୍. ଏ., ବି.ଏଲ୍.

—ବଞ୍ଛାନିଧିବାବୁ ମୋର ଛାତ୍ରବନ୍ଧୁ । ତେଣୁ 'କବିତା କୁମୁଦ' ମୋ ହୃଦୟରେ ଆନନ୍ଦ ଘଟାଇବା ସ୍ୱାଭାବିକ । ଛାତ୍ରର ସୃଷ୍ଟିରେ ସାଥୀ ମଧ୍ୟ ଗୌରବ ଅନୁଭବ କରିଥାଏ । କିନ୍ତୁ କେବଳ ଏହି କାରଣରୁ ନୁହେଁ; କବିତା କୁମୁଦରେ ପୁରାତନ ଓ ନୂତନ ଛନ୍ଦ ଉଭୟ ନିବଦ୍ଧ ଥିବାରୁ, ଗୀତଗୁଡ଼ିକ ନାନା ବିଷୟବସ୍ତୁ ଘେନି ରଚିତ ହୋଇ ବିଭିନ୍ନ ରସ ଉତ୍ପାଦନ ସଂଘଟନରେ ଉପଯୁକ୍ତ ସାହାଯ୍ୟ ଦେଇ ବ୍ୟବହାରପଟୁ ପକ୍ଷରେ ଯାହା ଯେପରି ହେବାର କଥା ତାହା ସେହିପରି ହୋଇ ପାରିଥିବାରୁ ମୋ ନିକଟରେ ଆଦରଣୀୟ । ମୋର ବିଶ୍ୱାସ ଅନ୍ୟମାନଙ୍କ ନିକଟରେ ମଧ୍ୟ ଆଦର ପାଇବ । ଏକ ଦିଗରେ "ଆଚାର୍ଯ୍ୟ ହରିହର" "ପିଲାଙ୍କ ଉତ୍କଳମଣି" (ଗୋପବନ୍ଧୁ) ଓ "ଗୌରୀଶଙ୍କର", ଅନ୍ୟ ଦିଗରେ "ଗୋପାଳକୃଷ୍ଣ" "ରାଧାନାଥ" ଓ "ରବୀନ୍ଦ୍ରନାଥ", ଏକପକ୍ଷରେ "ମାଆ"ରେ ଉତ୍କଳପ୍ରୀତି, ଅନ୍ୟ ପକ୍ଷରେ "ମହାତ୍ମାଜୀ"ରେ ବିଶ୍ୱପ୍ରୀତି କବିତାକୁମୁଦରେ ଏକାଧାରରେ ସନ୍ନିବିଷ୍ଟ ।

ଶେଷରେ କହିବା ଉଚିତ, ଦର୍ଶନ ଦୃଷ୍ଟିରୁ "ସେ ତ ସ୍ୱଦେଶ ମୋହର"ରେ କବିତାକୁମୁଦ ଯେଉଁ ଆଦର୍ଶ ଆମ୍ଭମାନଙ୍କ ସମ୍ମୁଖରେ ଉନ୍ମୁକ୍ତ ରଖିଅଛି ସେହି ଆଦର୍ଶରେ ଦେଶବାସୀ ଉଦ୍‌ବୁଦ୍ଧ ହୁଅନ୍ତୁ । ଏହାହିଁ ମୋର କାମନା ।

"ନର ଦେହ ଯାର କେତେ ସୁତ ସୁତା
ଚରିତ୍ର ବଳରେ ହେଲେ ସାକ୍ଷାତ ଦେବତା
ସେ ତ ସ୍ୱଦେଶ ମୋହର
ଧରଣୀର ମଥାମଣି ଗୌରବର ଘର ।"

**ରାୟବାହାଦୁର ଶ୍ରୀଯୁକ୍ତ ବିପିନବିହାରୀ ରାୟ,** ଏମ୍. ଏ.

—ଶ୍ରୀଯୁକ୍ତ ବାବୁ ବିଚ୍ଛନ୍ଦଚରଣ ପଟ୍ଟନାୟକ, ବି. ଏଲ୍. ମହୋଦୟ ଓଡ଼ିଆ ସଙ୍ଗୀତ ରଚନାରେ ଯେଉଁ ଅପୂର୍ବ ପାଟବ ପ୍ରଦର୍ଶନ କରିଅଛନ୍ତି ତାହା ବର୍ତ୍ତମାନ ଯୁଗରେ ଅତୁଳନୀୟ । ତାହାଙ୍କ ଗୀତସମୂହର ଭାଷାରେ ଯେଉଁ ଗୌରବଶ୍ରୀ ରହିଅଛି ଏ ଭଳି ପ୍ରାଣସ୍ପର୍ଶୀ ଗୀତସମୂହର ଏ ଯୁଗରେ ଆବିର୍ଭାବ ସେହି ଗୌରବଶ୍ରୀ ପ୍ରକାଶର ସମ୍ପୂର୍ଣ୍ଣ ଅଧିକାରୀ । 'ଉତ୍କଳ ଚିନ୍ତାମଣି ଚଉତିଶା' 'ବିରହ ବାରମାସୀ' 'ମଞ୍ଜୁଳା ମାଧବ' 'ଶସ୍ୟଶ୍ୟାମା' 'ଆଉ ବିମନା ନୁହି' ପ୍ରଭୃତି ସଙ୍ଗୀତସମୂହରେ ଯେଉଁ ଲିପିଚାତୁର୍ଯ୍ୟ ସହିତ ଭାବମାଧୁର୍ଯ୍ୟ ସଂଯୁକ୍ତ ହୋଇଅଛି ତାହା ଏ ଯୁଗରେ ସ୍ୱପ୍ନବିଶେଷ । ତାହାଙ୍କ ଗୀତସମୂହର ରଚନା କୌଶଳ ଓ ରସମାଧୁର୍ଯ୍ୟ ଉପଭୋଗ କଲେ ସ୍ପଷ୍ଟ ପ୍ରତୀତ ହେବ ଯେ ଏଗୁଡ଼ିକ ପ୍ରକୃତ ଆନ୍ତରିକତା ସହିତ ରଚିତ । ତାହାଙ୍କର ଗୀତସମୂହର ବିଶେଷତ୍ୱ ଏହି ଯେ ସେହି ଗୀତସମୂହ କାନରେ ପଶି ମର୍ମକୁ ଆଘାତ କରେ ଏବଂ ତହିଁରେ ପ୍ରାଣ ଆକୁଳ ହୁଏ । ତାହାଙ୍କର ଲେଖନୀ ସର୍ବଦା ଜୟଯୁକ୍ତ ହେଉ ଏହାହିଁ ଐକାନ୍ତିକ କାମନା ।

**ଶ୍ରୀଯୁକ୍ତ ଶଶିଭୂଷଣ ରାୟ**

—କିଛିଦିନ ପୂର୍ବେ ଶ୍ରୀ ବିଚ୍ଛନ୍ଦଚରଣ ପଟ୍ଟନାୟକଙ୍କ କବିତାକୁମୁଦ ଦେଖିବାର ସୌଭାଗ୍ୟ ମୋହର ହୋଇଥିଲା । ସାହିତ୍ୟରେ କବିତାର ସ୍ଥାନ ଅତି ଉଚ୍ଚରେ । ମାତ୍ର କବିତାର ସୌନ୍ଦର୍ଯ୍ୟ କେବଳ ଉପଭୋଗ କରିଯାଇ ପାରେ; ତାକୁ ବିଶ୍ଳେଷଣ କରିବାର ଚେଷ୍ଟା ବୃଥା, ✻ ✻ କବି ପ୍ରାଚୀନ ଓଡ଼ିଆ ସାହିତ୍ୟର ଅନୁରାଗୀ ଭକ୍ତ । ପ୍ରାଚୀନ ଛନ୍ଦମାନଙ୍କର ମାଧୁର୍ଯ୍ୟ ସେ ସଂପୂର୍ଣ୍ଣ ଭାବରେ ଉପଭୋଗ କରି ପାରିଅଛନ୍ତି । ପ୍ରାଚୀନ ଓଡ଼ିଆ ସାହିତ୍ୟର ଭାବସଂପଦ ଓ ଭାଷା ବୈଭବ ତାଙ୍କ ଲେଖାକୁ ପ୍ରଭାବିତ କରିଅଛି । ଏହି କାରଣରୁ ତାଙ୍କ କବିତା-ମାନଙ୍କରେ ଗୋଟିଏ ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ଓ ସରସତା ଅଛି ଯାହା କି ସାଧାରଣ ଆଧୁନିକ ଓଡ଼ିଆ କବିତାରେ ବିରଳ ।

ଓଡ଼ିଆ କବିତାର ଗତି ଆଲୋଚନା କଲେ ଆମ୍ଭେମାନେ ଦେଖୁଁ ଯେ ରାଧାନାଥ ଓଡ଼ିଆ ସାହିତ୍ୟକୁ ଯେଉଁ ଆକାରରେ ଗଠିତ କରିବାକୁ ଚାହିଁଥିଲେ ସେଥିରେ ଥିଲା ପାଶ୍ଚାତ୍ୟ ସାହିତ୍ୟର ଅନୁକରଣ ପ୍ରୟାସ । ପ୍ରତିବେଶୀ ସାହିତ୍ୟର ମୋହରେ ମୁଗ୍ଧ ହୋଇ ସେ ଓଡ଼ିଆ ସାହିତ୍ୟର ପରମ୍ପରା ବିଚ୍ଛିନ୍ନ କରି ତାକୁ ନୂତନ

ଆକାର ଦେବାର ଚେଷ୍ଟା କରଥିଲେ । ମାତ୍ର ଅତ୍ୟନ୍ତ ଶକ୍ତଶାଳୀ ଲେଖକ ଥିବାରୁ ତାଙ୍କ ସାହତ୍ୟ ସୃଷ୍ଟି ମଧ୍ୟରେ ସୌନ୍ଦର୍ଯ୍ୟର ଅଭାବ ନାହିଁ । ତାହାପରେ କନ୍ତୁ ଏହ ମୋହ ନାନା ସାହତ୍ୟକଙ୍କୁ ନାନା ଭାବରେ ପ୍ରଭାବତ କରଅଛ ଓ ଅନେକ ସମୟରେ ବ୍ୟର୍ଥ ଅନୁକରଣ ପ୍ରୟାସଦ୍ୱାର ସାହତ୍ୟର ସ୍ୱଚ୍ଛନ୍ଦ ଗତ ମଧ୍ୟ ସ୍ୱହତ ହୋଇଅଛ । ବଚ୍ଛନ୍ଦବାବୁଙ୍କର କବତାମାନଙ୍କରେ ପୁନରାୟ ପ୍ରାଚୀନ କବତାର ସୌନ୍ଦର୍ଯ୍ୟର କଛ ଅଂଶର ଆସ୍ୱାଦ ଗ୍ରହଣ କର ପାଠକମାନେ ତୃପ୍ତ ହୋଇ ପାରନ୍ତ ଓ ତାଙ୍କର ସାହତ୍ୟ ସୃଷ୍ଟିକୁ ଏହ ଦଗରୁ ବଚାର କରବା ହିଁ ଉଚତ ।

॰ **ଗିରିଜାଶଙ୍କର ରାୟ,** ଏମ୍. ଏ., ବ. ଏଲ୍.

—ଉତ୍କଳର ପ୍ରାଚୀନ ମନୀଷୀମାନେ ବହୁବଧ ଛନ୍ଦ, ସଙ୍ଗୀତ ଓ ରାଗରାଗିଣୀର ସୃଷ୍ଟି କରଥିଲେ । ସେ ସବୁ ଆଧୁନକ ଯୁଗରେ ବଦେଶୀ-ପ୍ରଭାବ ଯୋଗୁଁ ବୁଡ଼ସିବା ଉପରେ ବସିଥିଲ । କେବଳ ରାଧାକୃଷ୍ଣାଶ୍ରିତ-ପ୍ରେମ ଓ ପ୍ରାଚୀନ ଢଙ୍ଗର ସାଧାରଣ ପ୍ରେମକବତା ଛଡ଼ା ସେସବୁକୁ ଅବଲମ୍ବନ କର ଅନ୍ୟ କୌଣସି ଆଧୁନକ ବଷୟ ପ୍ରକାଶ ହୋଇପାରେ, ଏ ଧାରଣା କାହାର ନ ଥିଲ । ଆଧୁନକ ଉଚ୍ଚଶିକ୍ଷିତ କବମାନେ ରାଧାନାଥ ଅଥବା ରବୀନ୍ଦ୍ରନାଥଙ୍କୁ ଆଦର୍ଶ କର କବତା ଲେଖୁଥିଲେ । ଉପେନ୍ଦ୍ରଭଞ୍ଜ, ଅଭମନ୍ୟୁ, ଦୀନକୃଷ୍ଣ, କବସୂର୍ଯ୍ୟ, ଗୋପାଳକୃଷ୍ଣ, ବନମାଳୀ, ଗୌରଚରଣ ପ୍ରଭୃତଙ୍କ ପ୍ରତ କେବଳ ମୌଖିକ-ଭକ୍ତ ଦେଖାଇ ଇଂରାଜ ଶିକ୍ଷିତ କବମାନେ ଏ ଦେଶରେ ଗୋଟାଏ ଧାରଣା ସୃଷ୍ଟି କର ଦେଇଥିଲେ ଯେ ସେମାନଙ୍କ ରଚନାଶୈଳୀ ଇତହାସର ଗୋଟିଏ ବଚତ୍ର-ବସ୍ତୁ ହୋଇ ରହବ, ଏ ଯୁଗରେ ବା ଭବଷ୍ୟତ ଯୁଗରେ ତାହା କୌଣସି କାମରେ ଲଗିପାରବ ନାହିଁ । ତେଣୁ ପ୍ରାଚୀନ ଛନ୍ଦ ଓ ରାଗରାଗିଣୀର ମୋ ପର ଯେଉଁମାନେ ଭକ୍ତ, ସେମାନେ ବ୍ୟଥିତ ହୋଇ ଭାବୁଥିଲେ ଯେ ଶିକ୍ଷିତ ସମାଜ ଆଉ କେବେହେଲେ ଛନ୍ଦ ଓ ରାଗରାଗିଣୀ ଧରବ ନାହିଁ । କନ୍ତୁ ଜଣେ ପ୍ରତଭାବନ୍ତ ପୁରୁଷଙ୍କ ସାଧନା ଆଜ ଅସମ୍ଭବକୁ ସମ୍ଭବ କର ପାରଅଛ । ସେ ହେଉଛନ୍ତ 'କବତା-କୁମୁଦ'ର କବ ମୋର ପରମ କଲ୍ୟାଣୀୟ ଶ୍ରୀମାନ୍ ବାବା ବଚ୍ଛନ୍ଦଚରଣ ପଟ୍ଟନାୟକ । ସେ ପ୍ରାଚୀନ କବମନୀଷୀମାନଙ୍କ ରଚନାଶୈଳୀର ସମସ୍ତ ବଶେଷତ୍ୱକୁ କରାୟତ୍ତ କର ଯେଉଁସବୁ ଅଭନବ କବତା ରଚନା କରଅଛନ୍ତ, ଆଧୁନକ ଯୁଗରେ ତାହାର ଆଉ ପଟାନ୍ତର ନାହିଁ । କବତା କୁମୁଦର ପଦଯୋଜନା ଭଞ୍ଜ, ଅଭମନ୍ୟୁ ଓ ଦୀନକୃଷ୍ଣ ଆଦଙ୍କ ସୁଲଳତ ପଦଯୋଜନାରୁ କୌଣସିମତେ ନ୍ୟୂନ ନୁହେଁ, ବରଂ ସମକକ୍ଷ । ଏ ଯୁଗରେ ଏପର ମୌଳକ ପ୍ରତଭାବନ୍ତ ଜଣେ କବଙ୍କର ଆବର୍ଭାବ କବତାରାଜ୍ୟରେ ଘୋର ବପ୍ଳବ ଘଟାଇବ ଏବଂ ଆଧୁନକ କବତାର ସୁଅକୁ ଫେରାଇ ଦେଇ ପ୍ରାଚୀନର ବଜୟ ଉଦ୍‌ଘୋଷଣ କରବ । 'ଇନ୍ଦ୍ରଧନୁ' ଓ 'ବଜୁଳୀ'ର ସଂଘର୍ଷରେ ଯାହା ସମ୍ଭବ ହୋଇ ନ ଥିଲ, କବତା କୁମୁଦ ତାହା ସମ୍ଭବ କରପାରଅଛ । ଶ୍ରଦ୍ଧେୟ ବଚ୍ଛନ୍ଦଚରଣଙ୍କ ଅନ୍ୟାନ୍ୟ ଗ୍ରନ୍ଥ ପ୍ରକାଶିତ ହେଲେ ଓଡ଼ିଆ କବତା-ସାହତ୍ୟର ପରମ୍ପରା ଗୁଏଁ ଗୁଏଁ ଯୋଡ଼ ହୋଇଯିବ । ମଙ୍ଗଳମୟ ଶ୍ରୀ ଶ୍ରୀ ଗୌରଗୋବନ୍ଦ ମହାପ୍ରଭୁ 'କବତା କୁମୁଦ'ର ପଦକର୍ତ୍ତା (କବ)ଙ୍କୁ ଚରଜୀବୀ ଓ ଯଶସ୍ୱୀ କରନ୍ତୁ । ସେ ନଶ୍ଚୟ ଦେଶର ମୁଖୋଜ୍ଜ୍ୱଳ କରଯିବେ । ତାଙ୍କ ଉପରେ ଭଞ୍ଜ, ଦୀନକୃଷ୍ଣ ଓ ଅଭମନ୍ୟୁ ଆଦ ଭକ୍ତକବମାନଙ୍କର କରୁଣାଦୃଷ୍ଟି ରହଅଛ ବୋଲ ମୋର ଦୃଢ଼ ବଶ୍ୱାସ ।

ଅଲମତବସ୍ତରେଣ

ବ୍ରଜବାସୀ ବାବାଜୀ ॰ **ବୈଷ୍ଣବଚରଣ ଦାସ ଗୋସ୍ୱାମୀ**

আ

ଆମ୍ଭମାନଙ୍କ ଶ୍ରଦ୍ଧାଞ୍ଜଳି......

# ତାଙ୍କ ସୃଷ୍ଟି ଓ ସଂଗଠନ

'ଛନ୍ଦ ଓ ରାଗରାଗିଣୀ ଓଡ଼ିଆ କବିତା ସାହିତ୍ୟର ପ୍ରଧାନ ବିଶେଷତ୍ୱ । କବିତାକୁ ସଙ୍ଗୀତମୟ କରି ଉପଭୋଗ କରିବା ଓଡ଼ିଆ ଜାତିର ବିଶିଷ୍ଟ ପ୍ରକୃତି, କିନ୍ତୁ ବୈଦେଶିକ ପ୍ରଭାବବଶତଃ ଆଧୁନିକ ଯୁଗରେ ଛନ୍ଦୋମୟ କବିତା ପ୍ରତି କବିମାନେ ବିଶେଷ ଅନୁରାଗୀ ନ ହେବାରୁ କବିତା ସାହିତ୍ୟରେ ପରମ୍ପରାଭଙ୍ଗ ଘଟିଅଛି । ଏହା ବିରୁଦ୍ଧରେ ବର୍ତ୍ତମାନ ଯେଉଁ ପ୍ରତିକ୍ରିୟା ଆରମ୍ଭ ହୋଇଅଛି ଶ୍ରୀମାନ୍ ବଞ୍ଚାନିଧି ଚରଣ ତାହାର ପ୍ରବର୍ତ୍ତକ ଓ ନେତା । ତାଙ୍କର 'କବିତା କୁମୁଦ' ଏ ନେତୃତ୍ୱର ପ୍ରତୀକ । କବିତା କୁମୁଦରେ ସେ ନବ-ଯୁଗୋପଯୋଗୀ ଭାବକୁ ପ୍ରାଚୀନ ଛନ୍ଦୋବନ୍ଧ ଓ ଲଳିତ ପଦଯୋଜନାର ମଞ୍ଜୁଳ ପରିଧାନରେ ବିଭୂଷିତ କରିଅଛନ୍ତି । ଦେଶବତ୍ସଳତାମୂଳକ ତାଙ୍କର ବହୁ କବିତା ଦେଶର ଚିରନ୍ତନ ବିଭବରେ ପରିଣତ ହୋଇସାରିଅଛି ।'

**ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ପରିଜା**

ତତ୍‌କାଳୀନ ଉତ୍କଳ ବିଶ୍ୱବିଦ୍ୟାଳୟ କୁଳପତି

୧୯୪୭

# ଚିରନମସ୍ୟ ସାହିତ୍ୟପ୍ରାଣ ବିଚ୍ଛନ୍ଦଚରଣ

**ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ**

ଛାତ୍ରାବସ୍ଥାରୁ ହିଁ ସ୍ୱର୍ଗତ ବିଚ୍ଛନ୍ଦଚରଣଙ୍କ ସହିତ ଏହି ଲେଖକର ପରିଚୟ ଘଟେ; ସେହି ପରିଚୟ ଆହୁରି ନିକଟତର ହୁଏ ରେଭେନ୍‌ସା କଲେଜ ପୂର୍ବ-ଛାତ୍ରାବାସରେ । ଆଜିକି ବୋଧହୁଏ ପଞ୍ଚାବନ ବର୍ଷ ପୂର୍ବେ ସେହି ପୂର୍ବଛାତ୍ରାବାସରେହିଁ ଆଧୁନିକ ସାହିତ୍ୟିକ ଗୋଷ୍ଠୀଦ୍ୱାରା ସବୁଜ ଯୁଗର ପ୍ରାରମ୍ଭ । ତାହାର ସମସାମୟିକ ଅନୁଷ୍ଠାନ ବୋଧହୁଏ ପ୍ରାଚୀ ସମିତି । ବିଚ୍ଛନ୍ଦଚରଣ ଥିଲେ ସେହି ପ୍ରାଚୀ ସମିତିର ଅନ୍ୟତମ ଉଦ୍‌ଗାତା । ନମସ୍ୟ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ପ୍ରମୁଖଙ୍କ ନେତୃତ୍ୱରେ ପ୍ରାଚୀ ସମିତି ଉଦ୍‌ବୁଦ୍ଧ ହୁଏ ।

କଲେଜ ଛାଡ଼ିବା ପରେ ବିଚ୍ଛନ୍ଦଚରଣଙ୍କର ସାଧନା କେନ୍ଦ୍ରୀଭୂତ ହୁଏ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ପ୍ରଭାବ ଓ ଗୌରବ ବ୍ୟାଖ୍ୟାନରେ । ଭଞ୍ଜଜୟନ୍ତୀ ଅନୁଷ୍ଠାନର ପ୍ରତିଷ୍ଠା ସମୟରେହିଁ ଏହି ଲେଖକକୁ ବିଚ୍ଛନ୍ଦଚରଣ ବାଛିନିଅନ୍ତି ତାଙ୍କର ଅନ୍ତରଙ୍ଗ ବନ୍ଧୁରୂପେ ।

ସେତେବେଳେ ଆଧୁନିକ ଲେଖକମାନଙ୍କ ସବୁଜ ଯୁଗର ମଧ୍ୟ ଆରମ୍ଭ । ସ୍ୱର୍ଗତ ବିଶ୍ୱନାଥ କରଙ୍କ ସମ୍ପାଦିତ "ଉତ୍କଳ ସାହିତ୍ୟ" ମାସିକ ପତ୍ରିକାର ପ୍ରତି ସଂଖ୍ୟାରେ ଆମ୍ଭମାନଙ୍କର ଗଳ୍ପ, କବିତା, ପ୍ରବନ୍ଧ ଆଦି ପ୍ରକାଶ ପାଉଥାଏ; ପୁଣି ଧାରାବାହିକ ଭାବରେ ନଅଜଣ ଲେଖକ ଲେଖିକାଙ୍କଦ୍ୱାରା ଲିଖିତ "ବାସନ୍ତୀ" ଉପନ୍ୟାସ ମଧ୍ୟ ପ୍ରକାଶିତ ହୁଏ ।

କଲେଜ ଛାଡ଼ିବା ପରେ ସବୁଜ ସଂସ୍ଥାର ଲେଖକ-ଲେଖିକାମାନେ ସାହିତ୍ୟର ବିଭିନ୍ନ ଦିଗରେ ଲେଖନୀ ଚାଳନା କରନ୍ତି । ଭଞ୍ଜ ଜୟନ୍ତୀ ଉତ୍ସବ ମଧ୍ୟ ବର୍ଷକୁ ବର୍ଷ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଅନୁଷ୍ଠିତ ହୋଇ ଦେଶବ୍ୟାପୀ ଓଡ଼ିଆ ସାହିତ୍ୟର ମୌଳିକ ଛନ୍ଦ ଓ ପ୍ରକାଶଭଙ୍ଗୀ ପ୍ରତି ଆଗ୍ରହ ଜନ୍ମାଏ ।

ସାହିତ୍ୟ କ୍ଷେତ୍ରରେ ପ୍ରକାଶଭଙ୍ଗୀର ପ୍ରାଚୀନତା ଓ ଆଧୁନିକତା ମଧ୍ୟରେ ସୁସ୍ପଷ୍ଟ ପାର୍ଥକ୍ୟ ରହିଥିଲେ ମଧ୍ୟ ଯଥାର୍ଥ 'ସାହିତ୍ୟ'ର ଅର୍ଥ, ତା'ର ଅନ୍ତର୍ନିହିତ ଭାବଧାରା; ପୁଣି ତା'ର ପ୍ରେରଣାର ଉତ୍ସ ମଧ୍ୟ ଏକ ଓ ଅଭିନ୍ନ । ସେହି ବିଚାରରୁ ବିଚ୍ଛନ୍ଦବାବୁଙ୍କ ସହିତ ଏହି ଲେଖକର ବନ୍ଧୁତା ନିବିଡ଼ରୁ ନିବିଡ଼ତର ହୁଏ । ବିଚ୍ଛନ୍ଦବାବୁ ଯଥାର୍ଥରେ ସାହିତ୍ୟପ୍ରାଣ ଥିଲେ । ନିଜ ସାହିତ୍ୟର ମୌଳିକ ଉତ୍ସ ରୂପେ କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କୁ ସେ ବାଛି ନେଇଥିଲେ । ପୁଣି ଭଞ୍ଜୀୟ ପ୍ରତିଭାର ଯଥାର୍ଥ ଗୁଣଗ୍ରାହୀ ମଧ୍ୟ ଥିଲେ ବିଚ୍ଛନ୍ଦବାବୁ । ଭଞ୍ଜଙ୍କ କବିତାରେ ଆଦିରସର ଚିତ୍ରଣ ପ୍ରତି ଆଧୁନିକ ରୁଚି ଯେଉଁଠାରେ ଅନୁକୂଳ ହୋଇପାରେ ନାହିଁ, ସେଠାରେ ମଧ୍ୟ ବିଚ୍ଛନ୍ଦଚରଣ ମହାକବି କାଳିଦାସଙ୍କ ଉଦାହରଣ ଦେଇ ସମର୍ଥନ କରିଛନ୍ତି । ଓଡ଼ିଶାର ଜଗନ୍ନାଥ, ଭୁବନେଶ୍ୱର, କୋଣାର୍କର କଳା ଯେପରି ବିଶ୍ୱବନ୍ଦିତ, ତାହାର ପ୍ରାଚୀନ ସାହିତ୍ୟ ମଧ୍ୟ ଅନୁରୂପ ଆସନର ଅଧିକାରୀ ବୋଲି ପ୍ରମାଣ କରିବା ଥିଲା ତାଙ୍କ ଜୀବନର ସାଧନା । ଯଥାର୍ଥରେ ନିଜ ଜୀବନରେ ମଧ୍ୟ ବିଚ୍ଛନ୍ଦଚରଣ ପ୍ରେମିକ, ସାହିତ୍ୟରସିକ ଓ ସାଧକ ହେବାର କୃତିତ୍ୱ ଅର୍ଜନ କରିଥିଲେ । ମାତୃଭାଷା ଓ ସାହିତ୍ୟ ହିଁ ଥିଲା ଯେପରି ତାଙ୍କ ପ୍ରତ୍ୟେକ ନିଶ୍ୱାସ

ପ୍ରଶ୍ୱାସର ପ୍ରଧାନ ବିଷୟବସ୍ତୁ । ଜୀବନବ୍ୟାପୀ ଏହି ସାଧନା ବଳରେ ସେ ଉତ୍କଳୀୟ ସ୍ୱାତନ୍ତ୍ର୍ୟକୁ ଯେପରି ଦୃଢ଼ ଭାବରେ ପ୍ରତିଷ୍ଠା କରିଛନ୍ତି ତାହା ଅନନ୍ୟ । ଓଡ଼ିଆ ସାହିତ୍ୟର ଶ୍ରେଷ୍ଠ ସାଧକମାନଙ୍କ ମଧ୍ୟରେ ବିଚ୍ଛନ୍ଦଚରଣଙ୍କ ଆସନ ସୁପ୍ରତିଷ୍ଠିତ ।

ମନେହୁଏ ଯେପରି ବିଚ୍ଛନ୍ଦଚରଣ ନାମର ତାତ୍ପର୍ଯ୍ୟକୁ ସେ ନିଜ ଜୀବନରେ ପ୍ରତିଫଳିତ କରିଛନ୍ତି । ତାଙ୍କ ସାଧନାର ପରମଗୁରୁ ଉପେନ୍ଦ୍ର ଭଞ୍ଜଙ୍କ ଭଳି ବିଚ୍ଛନ୍ଦଚରଣ ଆମର ଚିର ନମସ୍ୟ, ଚିର-ଶ୍ରଦ୍ଧେୟ ।



ମୋ ହୃଦୟ ମରୁ ମନ୍ଦାକିନୀ ତୁମ୍ଭେ
ଚିତ୍ତ-ଚକୋର-ଚନ୍ଦ୍ରମା,
ଜୀବନ ଗଗନେ ଉଇଁ ଆସ ମୋର
ବିନାଶି କଳୁଷ-ଅମା ।

କଣ୍ଠେ ହାର କରି ଉରେ ମୁଁ ବହିବି
ନାଶିବ ବେଦନା ସବୁ,
ପଦ ଦୁଇ ତୁମ୍ଭ ନଉକା କରିଣ
ତରିଯିବି ହେଲେ ଭବୁଁ ।

—ବିଚ୍ଛନ୍ଦ ଚରଣ

# ଅଳଭ୍ୟ ସ୍ମୃତି

**ଶ୍ରୀ ପ୍ରାଣନାଥ ମହାନ୍ତି**, ଏମ୍.ଏ., ଆଇ.ଏ.ଏସ୍. (ଅବସରପ୍ରାପ୍ତ)

କଳିଙ୍ଗ ଭାରତୀର ପ୍ରତିଷ୍ଠାତା, ଭଞ୍ଜ-କବିସୂର୍ଯ୍ୟ-ଅଭିମନ୍ୟୁ-ଗୋପାଳକୃଷ୍ଣାଦି-ସାହିତ୍ୟ-ରସିକ ସ୍ୱର୍ଗତ ବାଞ୍ଛାନିଧି ଚରଣଙ୍କୁ ଅମର କରି ପାରିଛି ତାଙ୍କର ଅସାଧାରଣ ବ୍ୟକ୍ତିତ୍ୱ ଏବଂ ଚିରନ୍ତନ-ସାହିତ୍ୟିକ-ମୂଲ୍ୟବୋଧ ।

ମହର୍ଷି ମନୁଙ୍କ ମତରେ ଧର୍ମର ଲକ୍ଷଣ ହେଲା ଦଶବିଧ, ଯଥା—

ଧୃତିଃ କ୍ଷମା ଦମୋଽସ୍ତେୟଂ ଶୌଚ ମିନ୍ଦ୍ରିୟ-ନିଗ୍ରହଃ ।
ଧୀ ର୍ବିଦ୍ୟା ସତ୍ୟ ମକ୍ରୋଧୋ ଦଶକଂ ଧର୍ମଲକ୍ଷଣମ୍ ॥

ଦେବର୍ଷି ନାରଦଙ୍କ ମତରେ ଧର୍ମର ଲକ୍ଷଣ ହେଲା ଅଷ୍ଟବିଧ, ଯଥା—

ଅହିଂସା ପ୍ରଥମଂ ପୁଷ୍ପଂ ଦ୍ୱିତୀୟଂ କରଣଗ୍ରହଃ ।
ଭୂତଦୟା ତୃତୀୟକଂ ଚତୁର୍ଥଂ କ୍ଷାନ୍ତିରେବ ଚ ॥
ଶମସ୍ତୁ ପଞ୍ଚମଂ ପୁଷ୍ପଂ ଜ୍ଞାନଂ ଧ୍ୟାନଂ ତଥୈବଚ ।
ସତ୍ୟଞ୍ଚ ଅଷ୍ଟମଂ ପୁଷ୍ପଂ ଏତୈଃ ତୁଷ୍ୟତି କେଶବଃ ॥

ଭାରତୀୟ ଧର୍ମର ଉପର୍ଯ୍ୟୁକ୍ତ ମହାନ୍ ଆଦର୍ଶ-ମାନଙ୍କୁ ନିଜ ଜୀବନରେ ଅନୁସରଣ କରି ବାଞ୍ଛାନିଧି ଚରଣ ଚରିତାର୍ଥ କରିଯାଇଅଛନ୍ତି ଗୀତା-ପ୍ରତିପାଦିତ ନିମ୍ନୋକ୍ତ ଚିରନ୍ତନ ସତ୍ୟକୁ—

"ଯଦ୍ ଯଦ୍ ଆଚରତି ଶ୍ରେଷ୍ଠଃ
ତତ୍ ତତ୍ ଏବେତରୋ ଜନଃ ।
ସ ଯତ୍ ପ୍ରମାଣଂ କୁରୁତେ
ଲୋକସ୍ତଦନୁବର୍ତ୍ତତେ ।"

"Psalm of Life" ଶୀର୍ଷକ କବିତାରେ Henry Longfellowଙ୍କ ନିମ୍ନୋକ୍ତ ପଦ୍ୟାଂଶକୁ—

"Lives of great men all remind us
We may make our lives sublime;
And departing, leave behind us
Footprints in the sands of Time."

ଆଜି ଯେଉଁ ଭଞ୍ଜଜୟନ୍ତୀ ଓଡ଼ିଶାର ସହର, ପୁରପଲ୍ଲୀରେ ମଧ୍ୟ, ପାଳିତ ହେଉଅଛି ଏବଂ ପ୍ରାଚୀନ ଓଡ଼ିଆ ସାହିତ୍ୟର ଯେଉଁ ଚର୍ଚ୍ଚା କରାଯାଉଅଛି, ତାର ପ୍ରାଣ-ପ୍ରତିଷ୍ଠାତା ଥିଲେ ସ୍ୱର୍ଗତ ବାଞ୍ଛାନିଧି ଚରଣ । ବର୍ଷ ବର୍ଷ ଧରି ସୁସମାହିତ ହୋଇଥିବା ଭଞ୍ଜଜୟନ୍ତୀ ସମାରୋହମାନଙ୍କରେ ଭଞ୍ଜସାହିତ୍ୟର ଅନବଦ୍ୟ ଓ ପାଣ୍ଡିତ୍ୟପୂର୍ଣ୍ଣ ବିଶ୍ଳେଷଣ ଏବଂ ଭଞ୍ଜସାହିତ୍ୟର ଉତ୍କର୍ଷ ପ୍ରତିପାଦନ କରି ବାଞ୍ଛାନିଧି ଚରଣ ଯେଉଁ ସୁସ୍ଥ ସାହିତ୍ୟିକ ପରମ୍ପରା ସୃଷ୍ଟି କରିଯାଇଅଛନ୍ତି, ତାହା ଭଞ୍ଜପ୍ରେମୀ ଓଡ଼ିଶାବାସୀଙ୍କ ମନରେ ଏକ ଅଳଭ୍ୟ ସ୍ମୃତିରୂପେ ରହିଛି ଏବଂ ରହିଥିବ ।

# ବିଚ୍ଛନ୍ଦ ସ୍ମରଣେ

ଶ୍ରୀ ବ୍ରଜବିହାରୀ ମିଶ୍ର, ଅବସରପ୍ରାପ୍ତ ଆଇ. ପି.

ଆଜି ବିଚ୍ଛନ୍ଦବାବୁ ଆମ୍ଭମାନଙ୍କ ମଧ୍ୟରେ ନାହାନ୍ତି । କିନ୍ତୁ ତାଙ୍କର ଅମରକୀର୍ତ୍ତିର ଅନୁଧ୍ୟାନ କରୁଥିବା ସମାଜରେ ତଥା ଓଡ଼ିଆ ସାହିତ୍ୟର ଇତିହାସରେ ସେ ଚିରଦିନ ଜୀବିତ ରହିଅଛନ୍ତି । ବିଚ୍ଛନ୍ଦଙ୍କର ଆବିର୍ଭାବ ସେ ସମୟରେ ଯେତେବେଳେ ଓଡ଼ିଆ ସାହିତ୍ୟର ସ୍ରୋତ ଇଂରାଜୀ ସାହିତ୍ୟର ତୀଆରେ ପଡ଼ି କ୍ରମେ ଜଡ଼ ଓ ସଂକୀର୍ଣ୍ଣ ହୋଇ ପଡ଼ୁଥିଲା, ସେତେବେଳେ ସଂସ୍କୃତ ପରମ୍ପରାନୁଯାୟୀ ସମ୍ବର୍ଦ୍ଧିତ ଓଡ଼ିଆ ସାହିତ୍ୟ ଓ ପୂର୍ବ ଯୁଗର ସାହିତ୍ୟରଥୀମାନଙ୍କ ପ୍ରତି ଆଦର କମି ଯାଇଥିଲା ଏବଂ ସାହିତ୍ୟର ଆକାର ପ୍ରକାର ଓ ବିଷୟବସ୍ତୁ ସାହେବୀ ଗ୍ରନ୍ଥରେ ଆବୃତ ହେବାକୁ ବସିଥିଲା । ଏପରି ସନ୍ଧିସନ୍ଧି ସମୟରେ ଅନ୍ୟ କେତେକ ସମଯୋଦ୍ଧାଙ୍କ ସହିତ ବିଚ୍ଛନ୍ଦବାବୁ ଓଡ଼ିଆ ସାହିତ୍ୟର ପୂର୍ବ ଗୌରବ ପ୍ରତିଷ୍ଠିତ କରାଇବା ନିମନ୍ତେ ବଦ୍ଧ-ପରିକର ହୋଇଥିଲେ ଏବଂ ତାଙ୍କର କୃତିରେ ସେ କେତେଦୂର ସଫଳ ହୋଇପାରିଛନ୍ତି ତାହା ନିମ୍ନୋକ୍ତ ପର୍ଯ୍ୟାୟରୁ ଅନୁମାନ କରାଯାଇପାରେ ।

ପ୍ରଥମରେ ସେ ୧୯୪୩ ଖ୍ରୀଷ୍ଟାବ୍ଦରେ କଳିଙ୍ଗଭାରତୀ ଓ ତାହାର ପୃଷ୍ଠପୋଷକ ଭାବରେ ଉତ୍କଳ ଗ୍ରନ୍ଥ ସାହିତ୍ୟ ସମାଜର ପ୍ରତିଷ୍ଠା କରିଥିଲେ । ଏହାର ଉଦ୍ଦେଶ୍ୟ ହୋଇଥିଲା ବିଜାତୀୟତା ପରିହାର କରି ଆର୍ଯ୍ୟ ପରମ୍ପରା ସାରସ୍ୱତ ସୃଷ୍ଟିର ଅବଲମ୍ବନ କରି ନୂତନ ସାହିତ୍ୟର ପ୍ରାଣ ପ୍ରତିଷ୍ଠା କରିବା ଏବଂ ପୂର୍ବ-ଯୁଗର ପୁଷ୍କଳ ସାହିତ୍ୟର ପ୍ରଚୁର ଓ ପ୍ରସାର ଦ୍ୱାରା ଓଡ଼ିଶାର ଲୁପ୍ତ ଗୌରବ ଉପରେ ରଶ୍ମିପାତ କରିବା ।

ଦ୍ୱିତୀୟରେ ଜାତୀୟ ଭାବନାର ବିକାଶ ଉଦ୍‌ବୋଧନ ନିମନ୍ତେ କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ ସାମନ୍ତସିଂହାର, ଦୀନକୃଷ୍ଣ ଦାସ, କବିସୂର୍ଯ୍ୟ ବଳଦେବ ରଥ ପ୍ରଭୃତିଙ୍କର ଜୟନ୍ତୀର ପ୍ରବର୍ତ୍ତନ । ଉପେନ୍ଦ୍ର ଭଞ୍ଜଙ୍କର କାବ୍ୟ କବିତା ଜନମନସ୍ପର୍ଶୀ ହୋଇଥିବାରୁ ତାଙ୍କ ଜୟନ୍ତୀ ବର୍ତ୍ତମାନ ଏକ ଜାତୀୟ ମହୋତ୍ସବରେ ପରିଣତ ହୋଇଅଛି । ଏହି ଜୟନ୍ତୀ ଉତ୍ସବର ଆନୁକୂଲ୍ୟରେ ମୁଦ୍ରିତ ଓ ପ୍ରକାଶିତ ପୁସ୍ତକଗୁଡ଼ିକ ଯେ ଉତ୍କଳଭାରତୀର ପ୍ରକୋଷ୍ଠରେ ମହାର୍ଘ ଅଳଙ୍କାର ସ୍ୱରୂପ ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ତୃତୀୟରେ ଓଡ଼ିଶାର ଜାତୀୟ କବିମାନଙ୍କର କେତେକ କବିତା ଇଂରାଜୀରେ ଅନୁବାଦ କରି ଜନସମାଜ ସମ୍ମୁଖରେ ଉପସ୍ଥାପିତ କରି ଇଂରାଜୀ କବିଙ୍କ କୃତି ସହିତ ଏଗୁଡ଼ିକ କୌଣସି ଅଂଶରେ ନିମ୍ନସ୍ତରର ନୁହେଁ, ବରଂ ଉଚ୍ଚସ୍ତରର—ଏହା ପ୍ରମାଣିତ କରିବା । ବିଚ୍ଛନ୍ଦବାବୁଙ୍କ କଥାରେ "ଆଜି ଉଦ୍‌ବୁଦ୍ଧ ଜନତାର ଖିତିରେ କେହି ଆଉ ପ୍ରକାଶ୍ୟରେ ଜାତୀୟ କବିଙ୍କ ଅଯଶ କରିପାରୁନାହାନ୍ତି ।"

ଚତୁର୍ଥରେ ସେ ମୁଦ୍ରିତ ପ୍ରାଚୀନ ଗ୍ରନ୍ଥମାନଙ୍କରେ ଭାଷା ଓ ଛନ୍ଦମାନଙ୍କରେ ଯେଉଁ ଭ୍ରମ ଓ ବିଭ୍ରାଟ ଘଟିଥିଲା ତତ୍ପ୍ରତି ଦୃଷ୍ଟି ଆକର୍ଷଣ କରିଥିଲେ, ଯଥା ସାରଳା ମହାଭାରତ ଓ ଜଗମୋହନ ରାମାୟଣ ବଳରାମ ଦାସଙ୍କର । ଏତଦ୍ଦ୍ୱାରା ମୂଳ ପୋଥି ଅନୁସନ୍ଧାନ କରି ବାହାର କରିବାରେ ଶିକ୍ଷିତ ସମାଜରେ ଜାଗୃତି ଆସିଲା । ବିଚ୍ଛନ୍ଦବାବୁଙ୍କ ପ୍ରେରଣା ହେତୁ ଭଞ୍ଜଙ୍କର

ଅପ୍ରକାଶିତ କାବ୍ୟ ଓ ଅନ୍ୟାନ୍ୟ ଲେଖାର ପ୍ରାୟ ୪୨ଟି ପୋଥି ସଂଗ୍ରହ ହୋଇପାରିଲା । ଓଡ଼ିଶା ମ୍ୟୁଜିୟମ ଓ ଓଡ଼ିଶା ସାହିତ୍ୟ ଏକାଡେମୀ ତାଙ୍କର ଏ କାର୍ଯ୍ୟରୁ ଯଥେଷ୍ଟ ପ୍ରେରଣା ଓ ଉତ୍ସାହ ପାଇପାରିଛନ୍ତି ।

ପଞ୍ଚମରେ ଓଡ଼ିଆ ଛାନ୍ଦ, ଚଉପଦୀ ଓ ଚଉତିଶାର ନିଜତ୍ୱ କଣ, ତାର ବିଶ୍ଳେଷଣ କରି ଗୁଣିମାନଙ୍କ କଳକଣ୍ଠରେ ଓ ସଙ୍ଗୀତ ନୃତ୍ୟ ମାଧ୍ୟମରେ ସେମାନଙ୍କର ପରିପ୍ରଚାରରେ ଅଗ୍ରସର ହେବା । ଗ୍ରାମୀଣ ଅନୁଷ୍ଠାନ ଯଥା ପାଲା, ଦାଶକାଠିଆ ପ୍ରଭୃତି ଯେପରି ଓଡ଼ିଆ ସଙ୍ଗୀତ ଓ ଛାନ୍ଦ ପ୍ରତି ଅନୁରକ୍ତି ରଖନ୍ତି ଏବଂ ସେମାନଙ୍କର ପୁରାତନ ବେଶଭୂଷାକୁ ପରିହାର ନ କରନ୍ତି ସେ ବିଷୟରେ ପ୍ରଚାର ।

ସର୍ବଶେଷରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଓ ଅନ୍ୟାନ୍ୟ କେତେକ କବିଙ୍କର ଲେଖା ଦେବନାଗରୀ ଲିପିରେ ବ୍ୟାଖ୍ୟା ସହିତ ଛପାଇ ଭାରତର ପୃଷ୍ଠଭୂମିରେ ଓଡ଼ିଆ ସାହିତ୍ୟର ମର୍ଯ୍ୟାଦା ଉପସ୍ଥାପିତ କରିବା । ଏ ବିଷୟରେ ରାଷ୍ଟ୍ରଭାଷା ପ୍ରେସର ରଜତ ଜୟନ୍ତୀ ଗ୍ରନ୍ଥ ଦର୍ଶନୀୟ ।

ଉପରୋକ୍ତ କାର୍ଯ୍ୟମାନଙ୍କରେ ସକ୍ରିୟ ନେତୃତ୍ୱ ଦେବା ହେତୁ ଓ ଫଳରେ ଓଡ଼ିଶାର ସାହିତ୍ୟ ସଙ୍ଗୀତ ମାର୍ଗରେ ନବଉଦ୍ଦୀପନା ଓ ଉନ୍ମାଦନା ଆଣି ପାରିଥିବାରୁ ଆଜି ବିଚ୍ଛନ୍ଦବାବୁ ଆମ୍ଭମାନଙ୍କ ମଧ୍ୟରେ ବିମଳ ଜ୍ୟୋତିଷ୍କପରି ବିରାଜମାନ ଅଛନ୍ତି । ତାଙ୍କ ଅମର ଆତ୍ମାର ଶାନ୍ତି ଆସିବ ଯଦି ତାଙ୍କର ଦାୟାଦ, ଆମ୍ଭେମାନେ ଆପ୍ରାଣ ପରିଶ୍ରମ କରି ତାଙ୍କର ଅପୂର୍ଣ୍ଣ କୃତିମାନଙ୍କର ପୂର୍ଣ୍ଣତା ଆଣିପାରିବା । ମା କଳିଙ୍ଗଭାରତୀ ଏଥିନିମନ୍ତେ ଦେଶବାସୀମାନଙ୍କୁ ଅନୁରୂପ ଶକ୍ତି ଓ ପ୍ରେରଣା ଦେଉ, ଆଜି ବିଚ୍ଛନ୍ଦଙ୍କ ମୃତ୍ୟୁ ସମ୍ବତ୍ସରରେ ଏହାହିଁ କାମନା ।



ଆଶାୟୀ 'ନୂତନ' ମୁରଲୀ ମୋହନ ବାଜୁ କୁଞ୍ଜେ ଉତ୍କଳର
ଶାନ୍ତ 'ପୁରାତନ' ମନ୍ତ୍ରୁ ତା ବନ୍ଧନ ଦେଇ ତା ଋଦ୍ଧି ସମ୍ଭାର
ମା ଭାରତୀ !
ନବଯୁଗ ଶଙ୍ଖ ବାଜୁ
ନବ ସାରସ୍ୱତ ଗଉରବ ଟୀକା କଳିଙ୍ଗ ଲଲାଟେ ରାଜୁ ।

—ବିଚ୍ଛନ୍ଦ ଚରଣ

# ବଚ୍ଛନ୍ଦ ଦ୍ୱାଦଶକମ୍

ପଣ୍ଡିତ ଶ୍ରୀ ବୀର ହନୁମାନ ଶାସ୍ତ୍ରୀ

ସ୍ୱର୍ଣ୍ଣାଦ୍ରେଃ ପଶ୍ଚିମାଶାୟାଂ ଜାଆଁଳାଭଧ-ବାସ୍ତୁନ
ଅଜାୟତ ଶ୍ରୀବଚ୍ଛନ୍ଦଚରଣଃ ପଟ୍ଟନାୟକଃ ।୧।

ଆସୀତ୍ ସ ଜନ୍ମତଃ ଖଞ୍ଜସ୍ତଥାଽପି ବୁଦ୍ଧିମାନ୍ କବିଃ,
ବି. ଏଲ୍. ପରୀକ୍ଷାମୁତ୍ତୀର୍ଣ୍ଣଃ କଟକେ ଉକିଲୋଽଭବତ୍ ।୨।

ପ୍ରାଚୀମୁଦ୍ରା ଯନ୍ତ୍ରପତି ମହାନ୍ତରାର୍ଭବଲ୍ଲଭଃ
ତଦ୍ ବଦ୍ଧବର୍ଗଂଚ ଚେଂସନ୍ତୋ ଡକ୍ଟରଃ କରୁଣାକରଃ ।୩।

ପତ୍ରିକାଂ ପ୍ରାଚୀ-ନାମ୍ନୀଂଚ ବଚ୍ଛନ୍ଦ ଷ୍ଟାଳୟନ୍ ମୁଦା
ଉତ୍କଳୀୟ ଶବ୍ଦାକାଶେ ଆଲୋକଂ ସୃଷ୍ଟବାନ୍ ସୁଧୀଃ ।୪।

ପ୍ରାଚୀନୋତ୍କଳ ଛନ୍ଦାଂସି ପଠନ୍ ତଲ୍ଲୀନମାନସଃ
ଅସୃଜତ୍ ଭଞ୍ଜ ମାନାର୍ଥଂ ତଦ୍‌ଜୟନ୍ତୀ ମହୋତ୍ସବମ୍ ।୫।

ଶୈଳେଶ୍ୱରୋ ହୃଦାନନ୍ଦଃ ପ୍ରସାଦଃ କବି ପୂର୍ବକଃ
କରୌ ଶରଦ୍ବ୍ରଜଗୌଚ ତଥାନ୍ୟେ ଯୋଗ୍ୟତାପ୍ରିୟାଃ ।୬।

ତତ୍କାଳ ଗୁଣାଃ ଶତଶଃ ବଚ୍ଛନ୍ଦ ଗୁଣମାଳିକାମ୍
ଜପନ୍ତୋ ସର୍ବଦେଶେଷ୍ଣୁନ୍ ତନ୍ମନୀଷାଂ ବ୍ୟକୀର୍ଣ୍ଣୟନ୍ ।୭।

ଜୟକୃଷ୍ଣ-ପ୍ରାଣନାଥ-ରାଧାନାଥାଦ୍ୟ ସଜ୍ଜନାଃ
ତଦ୍‌ଗୁଣାନ୍ ମନସା ଧ୍ୟାତ୍ୱା ପ୍ରଶଂସନ୍‌ତଂଚ ସର୍ବଦା ।୮।

ତଦାହ୍ୱାନେନ ଭଞ୍ଜସ୍ୟ ଜୟନ୍ତୀ ସାଂସ୍କୃତୋତ୍ସବେ
କଟକେଽହଂ ସମାଗତ୍ୟ ପ୍ରାଭଣଂ ମମ ବକ୍ତୃତାମ୍ ।୯।

ତଦାରଭ୍ୟ ଘରତୋଽହଂ ଜାତୋ ବକ୍ତା ପ୍ରଶଂସିତଃ
ତତ୍ ଗୁଣାହ୍ୱ ତୁ ସର୍ବନ୍ତ୍ର ବକ୍ତୃରୂପେଣ ପୂଜିତାଃ ।୧୦।

ଗାୟନ୍ତୋ ମନ୍ତ୍ରରୂପେଣ ବଚ୍ଛନ୍ଦସ୍ୟ ଗୁଣାବଳୀଂ
ଏବମାସୀନ୍ ମହାମାନ୍ୟଃ ବଚ୍ଛନ୍ଦଃ ପଟ୍ଟନାୟକଃ ।୧୧।

ସ୍ମରନ୍ ତଦ୍‌ଗୁଣସଂଘାତଂ ଅହମସ୍ମି ସଦାନତଃ
ଶ୍ରୀବୀର ହନୁମାନ୍ ଶାସ୍ତ୍ରୀ ପୁଣି ବାସ୍ତବ୍ୟ ଏବ ହି ।୧୨।



ମୋ ଦେଶ ଦେଖା ସେହି ରୂପକୁ
କବି-ହୃଦାନନ୍ଦ-ରସ-କୂପକୁ
ମଣ୍ଡିବାକୁ ଯାହା ସାଧବ-କୁଳ
ବୋଇତେ ଉଡ଼ାଇ ଥିଲେ ଶବାଳ ।
ଖାରବେଳ ଯାହା ଦେଖି ନୟନେ
ଚଳିଲେ ମଗଧ ସେନା ଗହଣେ ।

—ବଚ୍ଛନ୍ଦ ଚରଣ

# ମନସ୍ୱୀ ବିଚ୍ଛନ୍ଦଚରଣ

ଶ୍ରୀ ହୃଦାନନ୍ଦ ରାୟ, ଉପଦେଷ୍ଟା, କଳିଙ୍ଗଭାରତୀ

ଓଡ଼ିଶାର ଜାତୀୟ ଜୀବନକୁ ଏକ ନିର୍ଦ୍ଦିଷ୍ଟ ଆଦର୍ଶବାଦରେ ଅନୁପ୍ରାଣିତ କରାଇ ସୁସଂଗଠିତ ଓ ସୁପରିଚାଳିତ କରାଇବା ଲାଗି ଯେଉଁ ଅଦମ୍ୟ ପ୍ରେରଣା ଓ କଠୋର କର୍ମନିଷ୍ଠାର ପ୍ରୟୋଜନ ଥିଲା, ଗୁରୁଦେବ ବିଚ୍ଛନ୍ଦଚରଣ ଥିଲେ ସେହି ପ୍ରେରଣା ଓ କର୍ମନିଷ୍ଠାର ଅସରନ୍ତି ଆଧାର । ତାଙ୍କ ଅପୂର୍ବ ସାଂଗଠନିକ ଶକ୍ତିର ପ୍ରଶଂସା ବହୁମୁଖରେ ପ୍ରକାଶିତ ହୋଇଛି । କିନ୍ତୁ ଖଞ୍ଜତା ଓ ଦାରିଦ୍ର୍ୟ ଏହି ଦୁଇ ସହଜାତ ପ୍ରତ୍ୟବାୟ ଦ୍ୱାରା ତାଙ୍କର ବ୍ୟକ୍ତିତ୍ୱର ବିକାଶ ବହୁମନ୍ତେ ବାଧାପ୍ରାପ୍ତ ହୋଇଛି । ତଥାପି ନିଜ ଆତ୍ମ-ବିଭୂତିର ଯେଉଁ ଯେଉଁ ଉପାଦାନମାନଙ୍କୁ ନେଇ ସେହି ଦୁର୍ଲଂଘ୍ୟ ପ୍ରତ୍ୟବାୟମାନଙ୍କୁ ସେ ଉଲ୍ଲଂଘନ କରି ଯାଇଛନ୍ତି, ତାହା ତାଙ୍କ ଅନ୍ତର୍ନିହିତ ଆତ୍ମଶକ୍ତିର ପ୍ରକୃଷ୍ଟ ପରିଚୟ ଦିଏ । ସେ ଯେ ଜଣେ ଯଥାର୍ଥ ମନସ୍ୱୀ ଥିଲେ, ଏହା ତାଙ୍କ ମନୋବଳଜାତ ଅଭିନବ ମନୋବୃତ୍ତିରୁ ସୂଚିତ ହେଉଥିଲା । କିଛି ନ ଥିଲାବେଳେ ସେ "ସବୁ ଅଛି" ବୋଲି ରଣହୁଙ୍କାର ଦେଉଥିଲେ । ପ୍ରତ୍ୟେକ ପରାଜୟକୁ ବିଜୟର ଆଉ ଏକ ଅମୋଘ ସୋପାନ ବୋଲି ସେ ମଣି ପାରୁଥିଲେ । ତା' ନ ହୋଇଥିଲେ ଜୀବନର ନିର୍ମମ ଘାତପ୍ରତିଘାତରେ ବିଚ୍ଛନ୍ଦଚରଣ ହୁଏତ ସମ୍ପୂର୍ଣ୍ଣ ଚୂର୍ଣ୍ଣୀଭୂତ ହୋଇ ଯାଇଥାନ୍ତେ । ଅଟଳ ମନୋବଳର ଅତଳଗର୍ଭରୁ ସେ ଜୀବନ ସଂଗ୍ରାମର ଆୟୁଧମାନ ଆହରଣ କରି ନିଜକୁ ତଥା ନିଜ ଆଦର୍ଶବାଦକୁ ପ୍ରତିଷ୍ଠା କରି ଯାଇଛନ୍ତି । ଅବଶେଷରେ ତାଙ୍କ ଜୀବନର ଅକ୍ଷମତାମାନ ତାଙ୍କ କ୍ଷମତା ପ୍ରକାଶରେ ଅନ୍ତରାୟ ହୋଇପାରିଲେ ନାହିଁ ।

ବିଚ୍ଛନ୍ଦଚରଣଙ୍କର ଥିଲା ଖଞ୍ଜତାରୂପୀ ଶାରୀରିକ ଅକ୍ଷମତା । ସେ କହିଛନ୍ତି—

ଜନମୁଁ ଖଞ୍ଜ ମୋ ପୟର<br>ଚାଲିବା ସୁଖ ନାହିଁ ମୋର ।

ଆବାଲ୍ୟରୁ ତାଙ୍କର "ଚାଲିବା ସୁଖ" ନ ଥିଲା । ଥରେ ମୁଁ ଗୁରୁଦେବଙ୍କୁ କୁତୂହଳତା ବଶତଃ ପଚାରିଥିଲି, "ସାର୍ ! ପଥ ଚାଲିବା କଅଣ ସୁଖ ପର୍ଯ୍ୟାୟଭୁକ୍ତ ଏକ ସାମଗ୍ରୀ ?" ସେଦିନ ବହୁ ପଥଶ୍ରମ କରି ଲାଲ ଧୂଳି ଧୂସରିତ ଥକା ପାଦରେ ମୁଁ ଗୁରୁଦେବଙ୍କୁ ଭେଟିଥାଏ । କଟକର ଅନେକ ରାସ୍ତାରୁ ପୂର୍ବପରିଚିତ ସେ ଲାଲ ଧୂଳି ଏବେ ଅପସରି ଗଲାଣି, କିନ୍ତୁ ସେ ସମୟରେ କିଏ କଟକ ଯାଇଥିଲେ ତାଙ୍କ ଲୁଗାପଟାରୁ ସେ ଧୂଳି ରଙ୍ଗ ବାରି ହୋଇ ଯାଉଥିଲା । ମୋ ପ୍ରଶ୍ନ ଶୁଣି ଗୁରୁଦେବ ଗମ୍ଭୀର ହସଟିଏ ହସି କହିଲେ, "ଚାଲିବା ସୁଖ ଚାଲୁଥିବା ଲୋକ ଜାଣିପାରିବ ନାହିଁ । ଚାଲିବାକୁ ଅକ୍ଷମ ବ୍ୟକ୍ତି ଜାଣେ ଚାଲିବା କେଡ଼େ ସୁଖକର ।" ସେ କହୁଥିଲେ, "ମାତୃଭୂମି କୋଳରେ ଲାଳିତ ହୋଇ ଜଣେ ନିଜ ଦେଶମାତୃକାକୁ ଯେତିକି ସୁଖ ପାଏ, ଥରେ ବିଦେଶକୁ ଗଲେ ସେ ଦେଶକୁ ଓ ତା ଜାତିଭାଇଙ୍କୁ ତା'ଠାରୁ ଅଧିକ ସୁଖ ପାଇବସେ ।"

ପାଦରେ ଚାଲି ପାରନ୍ତି ନାହିଁ ବୋଲି ଅକୁତୋଭୟ ବିଚ୍ଛନ୍ଦଚରଣ ସାଧାରଣତଃ କେବେ ପ୍ରକାଶ୍ୟ ଖେଦୋକ୍ତି ପ୍ରକାଶ କରନ୍ତି ନାହିଁ । ତଥାପି ତାଙ୍କ ମର୍ମସ୍ଥଳରେ ଯେ ଏ ଅକ୍ଷମତା ପାଇଁ ଖେଦର ଏକ

ଫଲ୍‌ଗୁସ୍ରୋତ ପ୍ରବାହିତ ହେଉଥିଲା ତାହା ବେଳେ-ବେଳେ ବାରି ହୋଇପଡ଼େ । ଗୁରୁଦେବଙ୍କ ଏହି ଖଞ୍ଜତାକୁ ଲକ୍ଷ୍ୟକରି ଉତ୍କଳଗୌରବ ମଧୁସୂଦନ ଦାସ ଥରେ କହିଥିଲେ, "ମୋର ସେଦିନ ଆଉ ନାହିଁ, ନୋହିଲେ ତୁମକୁ ବିଲାତ ନେଇ ସୁସୁସ୍ଥ କରାଇ ଆଣିଥାନ୍ତି ।" ଜୀବନର ସାୟାହ୍ନରେ ଉପନୀତ ମଧୁସୂଦନଙ୍କ ଏହି ଉକ୍ତିରେ ମହାପରାକ୍ରମୀ ଜାତୀୟ-ପୁରୁଷର ଅକ୍ଷମତାର ସ୍ୱର ଅନୁରଣିତ ହୋଇ-ଉଠିଛି । ବାଞ୍ଛାନିଧିଚରଣ ନିଜର ଖଞ୍ଜତାକୁ ବିଷୟ-ବସ୍ତୁରେ ଅନେକ ସମୟରେ ହାସ ପରିହାସ କରୁ-ଥିଲେ ।

ସେ କହନ୍ତି, "ମୋ ନାମ ବାଞ୍ଛାନିଧିଚରଣ ପଟ୍ଟନାୟକ । ଦେଶମିଶ୍ରଣ ଆନ୍ଦୋଳନର ଅନ୍ୟତମ ନେତାଙ୍କ ନାମ ହେଉଛି ବାଞ୍ଛାନିଧି ପଟ୍ଟନାୟକ । ଆମେ ଦୁଇଜଣ ଏକ ବ୍ୟକ୍ତି ନୋହୁ । ମୋ ନାମରେ 'ଚରଣ' ଥିଲେହେଁ ମୁଁ ଚାଲିପାରେ ନାହିଁ । କିନ୍ତୁ ତାଙ୍କ ନାମରେ 'ଚରଣ' ନ ଥିଲେ ହେଁ ସେ ଚାଲି-ପାରୁଥିଲେ ।"

କିନ୍ତୁ କବିତା ଲେଖୁଥିଲାବେଳେ ବାଞ୍ଛାନିଧିଚରଣ ନିଜର ଖଞ୍ଜତା କଥା ବିସ୍ମୃତ ହୋଇଯାଉଥିଲେ । ତା ନ ହେଲେ ସେ ଗଛରେ ଚଢ଼ି ପିଜୁଳି ତୋଳିବା, ପ୍ରଭାତ ଭ୍ରମଣରେ ଗ୍ରାମ ପୁଷ୍କରିଣୀ ପାଖକୁ ଯିବା ଆଦି ବର୍ଣ୍ଣନା କରିଥାନ୍ତେ କିପରି ? ସେ ନିଜେ ଏକଥା ନ ଜଣାଇଥିଲେ ହୁଏତ ମୁଁ ସେ କଥାର ଅସଙ୍ଗତି ବୁଝି-ପାରିବା ଅବସ୍ଥାରେ ନ ଥିଲି । ଗୁରୁଦେବଙ୍କ କୌଣସି ଅକ୍ଷମତା ବିଷୟରେ ସଚେତନ ହେବାକୁ ଅନୁରକ୍ତ ଶିଷ୍ୟଗୋଷ୍ଠୀର ଅବଚେତନ ମନ ସତତ ପରାଙ୍ମୁଖ ଥିଲା ।

ବାଞ୍ଛାନିଧିଚରଣ ନିଜର ଖଞ୍ଜତା ପ୍ରତି ଆଦୌ ଅବହିତ ନ ରହି ଜୀବନ ସରଣୀରେ ଆଗେଇ ଚାଲି-ଥିଲେ । ସେ ନିଜକୁ ତାଙ୍କ ଶିଷ୍ୟମଣ୍ଡଳୀଙ୍କ ମାଧ୍ୟମରେ ସଂପ୍ରସାରିତ କରି ଦେଇଥିଲେ । ସେ ଦିନେ ଦିନେ କହନ୍ତି, 'ମୋର ଚାଲିବା ଅକ୍ଷମତା, ଅକ୍ଷମତା ହୋଇ ରହିନାହିଁ । ମୁଁ ତୁମମାନଙ୍କ ପାଦରେ ଚାଲୁଛି । ମୁଁ ଆଜି ବହୁପଦ । ମୁଁ ପଦହୀନ ନୁହେଁ । ମୋ ନାସାର ନିଶ୍ୱାସ ପବନ ତୁମ ନାସାରେ ପ୍ରବାହିତ । ମୋ ହୃତ୍‌ପିଣ୍ଡର ରକ୍ତସ୍ରୋତ ତମ ଧମନୀରେ ନିତ୍ୟ ସ୍ପନ୍ଦିତ । ମୋ ଚାଲିବା ତୁମ ପଦଚାରଣଦ୍ୱାରା ନିତ୍ୟ ସମାହିତ ହେଉଛି । ଉତ୍ତର ଦାୟାଦମାନଙ୍କ ସହିତ ଅଭିନ୍ନ ତାଦାତ୍ମ୍ୟ ପ୍ରତିଷ୍ଠା କରି ବାଞ୍ଛାନିଧିଚରଣ ତାଙ୍କ ଖଞ୍ଜତା-ରୂପୀ ଅକ୍ଷମତାରୁ ଉତ୍ତୀର୍ଣ୍ଣ ହୋଇ ଯାଉଥିଲେ ।

ବାଞ୍ଛାନିଧିଚରଣଙ୍କ ଜୀବନର ଅନ୍ୟ ଅକ୍ଷମତାଟି ଥିଲା ଆର୍ଥିକ ଅକ୍ଷମତା । ପରିବାର ଭରଣପୋଷଣ ପାଇଁ ଯେତିକ ପ୍ରୟୋଜନ ପଡ଼େ ବାଞ୍ଛାନିଧିଚରଣ ସେତିକ ମାତ୍ର ରୋଜଗାର କରିପାରୁଥିଲେ । ନିଜର ଚିକିତ୍ସା ପାଇଁ ଅର୍ଥର ତୀବ୍ର ଅନାଟନ ସେ ବହୁବାର ଅନୁଭବ କରିଛନ୍ତି । ତଥାପି ତାଙ୍କ ମନୋବଳ ଭାଙ୍ଗି ପଡ଼ିନାହିଁ କିମ୍ବା ତାଙ୍କର କାନ୍ତି ମଳିନ ହୋଇଯାଇନାହିଁ । ଆଦର୍ଶବାଦୀ ଉଚ୍ଛ୍ୱାସ ଓ ଉତ୍ସାହ ତାଙ୍କ ସମଗ୍ର ବ୍ୟକ୍ତିତ୍ୱକୁ ଓତପ୍ରୋତ ଭାବରେ ଆପ୍ଳୁତ କରି ରଖି-ଥିଲା । ତାଙ୍କ ସୁବଳିତ ଗୌରକାନ୍ତି ଶରୀର, ପ୍ରଫୁଲ୍ଲ ବର୍ତ୍ତୁଳ ମୁଖମଣ୍ଡଳ ଓ ସ୍ଥିର ଉଜ୍ଜ୍ୱଳ ନେତ୍ରଦ୍ୱୟକୁ ଦେଖିଲେ କିଏ କହିବ ଯେ ଏ ଜଣେ ଧନାଢ଼୍ୟ ରାଜବଂଶଜ ବ୍ୟକ୍ତି ନୁହନ୍ତି ।

ଗୁରୁଦେବ କହିଛନ୍ତି—

"ହେଲେ ହେଁ ଦରିଦ୍ର ମୁଁ ଅତି
ମନୋରଥେ ମୁଁ ମହୀପତି ।"

ପ୍ରକୃତରେ ସେ "ମନୋରଥରେ ମହୀପତି" ଥିଲେ । ମନର ସମ୍ପଦ ଓ ସମ୍ବଳ ତାଙ୍କୁ ମହୀପତି ଆସନରେ ଚିର ଅଳଂକୃତ କରି ରଖିଥିଲା । ସେ

କୌଣସି ଗୌରବୋଜ୍ଜ୍ୱଳ ସଂବାଧରେ ବସିଲାବେଳେ ସେ ମହାପ୍ରସ୍ଥାନ୍ ଦେଖୁଥିଲେ। ନିର୍ଭୀକ ପୌରୁଷ ବର୍ମାବୃତ ହୋଇ ସେ ନିଜକୁ ଏପରି ଏକ ସ୍ଥିତିରେ ରଖି ପାରିଥିଲେ ଯେ ପରାକ୍ରାନ୍ତ ଶତ୍ରୁମାନେ ତାଙ୍କୁ ଚାହିଁ ଶଙ୍କି ଯାଉଥିଲେ। ତାଙ୍କ କବିତାରେ ସେ ବାରମ୍ବାର ଦେହଠାରୁ ମନ ଓ ଭୌତିକ ସମ୍ପଦଠାରୁ ଆତ୍ମିକ ବିଭୂତିର ଉତ୍କର୍ଷ ଗାନ କରିଅଛନ୍ତି। ସେ କହନ୍ତି ଅଭୟ ହେଉଛି ଦୈବୀ ବିଭୂତି। ଭୟାତୁର ଜୀବନ ହେଉଛି ମୃତ୍ୟୁର ନାମାନ୍ତର। ସତ୍ୟପାଇଁ ଶହୀଦ ହେବା ଥିଲା ତାଙ୍କର ବ୍ରତ। ଖୋଲାଖୋଲି ଭାବରେ ସେ ପ୍ରତିପକ୍ଷର ମୁକାବିଲା କରୁଥିଲେ ବୋଲି ବହୁ ସମସାମୟିକ ବ୍ୟକ୍ତିଙ୍କର ସେ ଅପ୍ରୀତିଭାଜନ ହୋଇଥିଲେ। କିନ୍ତୁ ତାଙ୍କର ତିରୋଧାନ ପରେ ସମସ୍ତେ ଅନୁଭବ କଲେ ଯେ ତାଙ୍କ ଭଳି ଜଣେ ସ୍ପଷ୍ଟବାଦୀ ସଂଗ୍ରାମୀ ମନୋବୃତ୍ତିର କର୍ମଠ ଚିନ୍ତାନାୟକଙ୍କୁ ହରାଇ ଆମ ଜାତୀୟ ଜୀବନ ଅପେକ୍ଷାକୃତ ଅଧିକ ଅଥର୍ବ ହୋଇଗଲା।

ଅର୍ଥାଭାବଜନିତ ପ୍ରତ୍ୟବାୟ ଦ୍ୱାରା ତାଙ୍କର ସକଳ ଉଦ୍ୟମ ବ୍ୟାହତ ହେଉଥିଲେହେଁ ସେ ତହିଁରେ ବିଚଳିତ ବୋଧ କରୁ ନ ଥିଲେ। ନିଜର ପାରିବାରିକ ପ୍ରୟୋଜନ ପୂର୍ତ୍ତି ପାଇଁ କିପରି ଅଧିକ ଅର୍ଥ ଉପାର୍ଜନ କରିବି ଏ ଚିନ୍ତା ତାଙ୍କୁ କଦାଚ ଘାରୁ ନ ଥିଲା। ବରଂ ସେ କହୁଥିଲେ, ଏ ପରିବାରର ସମସ୍ତ ଦାୟିତ୍ୱ ନୀଳାଦ୍ରିନାଥ ନିଜେ ବହନ କରିଛନ୍ତି। ତେଣୁ ଆଉ କୌଣସି ପ୍ରକାର ବୃଥା ଚିନ୍ତାର ଆବଶ୍ୟକତା ନାହିଁ।

ଗୁରୁଦେବଙ୍କୁ ଅତ୍ୟନ୍ତ ଶ୍ରଦ୍ଧା କରୁଥିବା ଜଣେ ପଡ଼ୋଶୀ ମଠର ଡ୍ରାଇଭର ଥରେ ତାଙ୍କ ପାଖକୁ ଆସି କହିଲେ, "ମୁଁ ଦେଖୁଛି ଆପଣଙ୍କ ଦଶା ଠିକ୍ ମୟୂରର ଦଶା ପରି। ମୟୂର ନାଚେ, ଖୁବ୍ ନାଚେ, ଖୁବ୍ ସୁନ୍ଦର ନାଚେ; ନୂଆ ମେଘକୁ ଚାହିଁ, ନାନା ରଙ୍ଗର ବିପୁଳ ଚନ୍ଦ୍ରିକା ମେଲି ମୟୂର ନାନା ଛନ୍ଦରେ ନାଚେ। ଆତ୍ମହରା ହୋଇ ନାଚେ। ଅନ୍ୟମାନେ ମଧ୍ୟ ତା' ନାଚ ଦେଖି ଆତ୍ମହରା ହୁଅନ୍ତି। କିନ୍ତୁ ଯେତେବେଳେ ମୟୂର ତାହାର ଶୀର୍ଣ୍ଣ ଗୋଡ଼ ଦୁଇଟିକୁ ଚାହିଁଦିଏ, ସେତେବେଳେ ସେ ଥକା ହୋଇ ବସିପଡ଼େ। ଆପଣ ତ ସେମିତି ଥକା ହୋଇ ବସି ପଡ଼ୁଛନ୍ତି। ହେଇ ନିଅନ୍ତୁ ମୁଁ ସୁନାମୁଦିଟିଏ ଆଣିଛି। ମୁଁ ଗରିବ ବୋଲି ଆପଣ ଏହା ଉପେକ୍ଷା କରିବେ ନାହିଁ। ମୁଁ ମୟୂରର ନାଚ ଦେଖିଲାବେଳେ ତା ଗୋଡ଼କୁ ବି ଦେଖିଛି। ଏଇ ମୁଦିକୁ ଆପଣ ଯେପରି ପାରନ୍ତି, ସେପରି ବିନିଯୋଗ କରନ୍ତୁ। ମୟୂରର ଗୋଡ଼ ଦମ୍ଭ ହେଉ।" ଜୀବନର ଶେଷ ଯାମ ପର୍ଯ୍ୟନ୍ତ ଗୁରୁଦେବ ସେହି ମଠର ଡ୍ରାଇଭରର ସାହାଯ୍ୟ ଓ ମନ୍ତବ୍ୟକୁ ଭୁଲି ପାରି ନ ଥିଲେ। ଅଶେଷ କୃତଜ୍ଞତାର ପୁଟୁଳି ବାନ୍ଧି ସେ ସ୍ମୃତିକୁ ସାଇତି ରଖିଥିଲେ ଗୁରୁଦେବ।

ଆଜିଯାଏ ଏ ଦେଶର ଶିଳ୍ପୀ, କଳାକାର, ସାହିତ୍ୟିକ ମୟୂରମାନଙ୍କ ଗୋଡ଼ ଦମ୍ଭ ହୋଇ ପାରିଲା ନାହିଁ। ତଥାପି ଶିଳ୍ପୀମାନେ, କଳାକାରମାନେ, ସାହିତ୍ୟିକମାନେ ବଞ୍ଚି ଆସିଛନ୍ତି ଓ ବଞ୍ଚି ରହିବେ। ସ୍ୱଚ୍ଛନ୍ଦଚରଣ ସେମିତି ବଞ୍ଚିଥିଲେ ଓ ମୃତ୍ୟୁପରେ ମଧ୍ୟ ବଞ୍ଚି ରହିଛନ୍ତି।

●

# ଖୁଣ ଯେଉଁଠି ଗୁଣ ସେଇଠି

କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

ଆମ ଓଡ଼ିଆରେ ଏ ଚଳନ୍ତି କଥା ବା ପ୍ରବଚନଟିର ବାସ୍ତବତା ଫୁଟାଇଛନ୍ତି ସ୍ୱର୍ଗତ ବିଚ୍ଛନ୍ଦ ଚରଣ ପଟ୍ଟନାୟକ । ସେ ଖୋରଧାର ଜାଆଁଳା ଗ୍ରାମରେ ଜନ୍ମ ନେଲେ ୧୯୦୧ରେ । ଟିକିଏ ବିଚାରି ଦେଖିଲେ ଜଣାପଡ଼େ ତାଙ୍କ ବଂଶ ସାହିତ୍ୟ ସଙ୍ଗୀତ କଳାର ଥିଲେ ଅତ୍ୟନ୍ତ ଅନୁରାଗୀ ତଥା ସେବକ ।

ମୋର ତାଙ୍କ ବଂଶ ସହିତ ନିକଟ ସମ୍ପର୍କ ବନ୍ଧୁତ୍ୱ ରହିଛି । ଜାଆଁଳାର ସ୍ୱର୍ଗତ ଗୋଲୋକ ପଟ୍ଟନାୟକଙ୍କ ବଡ଼ପୁଅ ସ୍ୱର୍ଗତ ପଦ୍ମଚରଣ ପଟ୍ଟନାୟକ ମୋର ମଉସା, ତାଙ୍କ ସାନ ଭାଇ ହେଉଛନ୍ତି ସ୍ୱର୍ଗତ ବିଚ୍ଛନ୍ଦଚରଣ ପଟ୍ଟନାୟକ । ପଦ୍ମଚରଣବାବୁ ଜଣେ ବିଶିଷ୍ଟ ଶିକ୍ଷାବିତ୍ । ସେ ଖୋରଧା ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଶିକ୍ଷକ ଥିବାବେଳେ ମୁଁ ତାଙ୍କର ଛାତ୍ର ଥିଲି । ପରେ ପଦ୍ମଚରଣବାବୁ ଶିକ୍ଷା ବିଭାଗର ପରିଦର୍ଶକ ଥିଲେ । ଗୋଲୋକବାବୁଙ୍କର ସାନ ଭାଇ ଗୌରକୃଷ୍ଣ ପଟ୍ଟନାୟକ ଓଡ଼ିଶୀ ସଙ୍ଗୀତ ଲେଖକ ଓ ଗାୟକ । ତାଙ୍କ ରଚିତ ଖଣ୍ଡିଏ ସଙ୍ଗୀତ ପୁସ୍ତକ ଅରୁଣୋଦୟ ପ୍ରେସରେ ପ୍ରକାଶିତ ହୋଇଥିଲା ମଧ୍ୟ ।

ବିଚ୍ଛନ୍ଦବାବୁ ଜନ୍ମରୁ ଖଞ୍ଜ । ଖୁଣ ନେଇ ତାଙ୍କର ଜନ୍ମ । ଏହି ଅବସ୍ଥାରେ ତାଙ୍କର ଶିକ୍ଷା ପ୍ରତି ବିଶେଷ ଅନୁରକ୍ତିର ପ୍ରମାଣ ଯଥେଷ୍ଟ । ସେ ତତ୍କାଳୀନ ଆର୍ଟସ ଓ ଲ-ଗ୍ରାଜୁଏଟ (B.A., B.L.) । ଭାଷାକୋଷ ସଂକଳୟିତା ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜ ବିଚ୍ଛନ୍ଦବାବୁଙ୍କର ଜଣେ ବିଶିଷ୍ଟ ଗୁଣଗ୍ରାହକ ଥିଲେ । ତେଣୁ ସେ ଭାଷାକୋଷ ସଂକଳନରେ ବିଚ୍ଛନ୍ଦବାବୁଙ୍କୁ ସହକର୍ମୀ ରୂପେ ଗ୍ରହଣ କରିଥିଲେ । ମୋର ସେ ହିସାବରେ ମଉସା ହୁଅନ୍ତି ।

ଆମ ଓଡ଼ିଆ ଜାତିର ସଙ୍ଗୀତ ଓ ସାହିତ୍ୟ ପ୍ରତି ସବୁବେଳେ ବିଚ୍ଛନ୍ଦ ମଉସାଙ୍କର ଆଦର ସ୍ନେହ ଭରି ରହିଥିଲା । ଆମର ପୁରୁଣା ଅମର କବି ସାହିତ୍ୟିକମାନଙ୍କର କୌଣସି ରଚନା ତାଙ୍କ ଆଖିରେ ପଡ଼ିଲେ ସେ ଅତି ଭାବବିହ୍ୱଳ ହୋଇପଡ଼ୁଥିଲେ । ଆଧୁନିକ ସାହିତ୍ୟ ସଙ୍ଗୀତ ଦେଖିଲେ ବା ପଢ଼ିଲେ ସେ ବରାବର ଆମ ପୂର୍ବ ପୁରୁଷଙ୍କ କୀର୍ତ୍ତି ସୁମରି ହେଉଥିଲେ ଏବଂ ସେହି ମହାମୂଲ୍ୟ ସଙ୍ଗୀତ ସାହିତ୍ୟ କିପରି ବଂଚିରହି ଜନସମାଦର ପାଇବ, ସେଥିପ୍ରତି ତାଙ୍କର ଅଦମ୍ୟ ପ୍ରଚେଷ୍ଟା ସର୍ବଦା ଲାଗିରହିଥିଲା ।

ଏଇ ଉଦ୍ଦେଶ୍ୟରେ ୧୯୪୩ରେ ସେ କେତେକ ବୁଦ୍ଧିଜୀବୀ ସାହିତ୍ୟପ୍ରାଣ ଛାତ୍ରମାନଙ୍କୁ ନେଇ 'ଉତ୍କଳ ଛାତ୍ର ସାହିତ୍ୟ ସମାଜ'ଟିଏ ଗଢ଼ିଲେ । ୧୯୪୪ରେ 'କଳିଙ୍ଗ ଭାରତୀ' ଅନୁଷ୍ଠାନ ପ୍ରତିଷ୍ଠା କଲେ ବିଚ୍ଛନ୍ଦ ମଉସା । ପରେ ପରେ ସ୍ଥାନେ ସ୍ଥାନେ ଭଞ୍ଜ ସାହିତ୍ୟ ସଙ୍ଗୀତ ଚର୍ଚ୍ଚା ଲାଗି ସଭାସମିତିମାନ ଆୟୋଜନ କରି ଆମର ପୂର୍ବସୂରୀମାନଙ୍କର କୃତି ସ୍ମରଣ କରାଇବାଲାଗି ନାନା ବାଧାବିଘ୍ନ ସତ୍ତ୍ୱେ ଆପ୍ରାଣ ଚେଷ୍ଟା କରିଥିଲେ ।

ଆମର ବୁଡ଼ିଯାଇଥିବା କଳାକୃଷ୍ଟିର ସଂରକ୍ଷଣ ଲାଗି ସେ ଯେପରି କାୟମନୋବାକ୍ୟରେ ଲାଗି-ପଡ଼ିଥିଲେ, ତାହାରି ବଳରେ ଆଜି ଭଞ୍ଜ ସାହିତ୍ୟ-ସଙ୍ଗୀତ ଲୋକମନରେ ଜାଗିରହିଛି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ଥରେ ତାଙ୍କ ସହିତ ମୋର ଟିକିଏ ମତ ପାର୍ଥକ୍ୟ ଘଟିଲା । ମୁଁ ତାଙ୍କୁ କବିସମ୍ରାଟ ନ କହି ସଙ୍ଗୀତ-ସମ୍ରାଟ ଓ ପରେ କବିସମ୍ରାଟ ବୋଲି କହିବାକୁ ବିବିଧ ସଭା ସମିତିରେ ବାରବାର ପ୍ରଚାର କଲି । ପରେ ଉଦାହରଣମାନ ଦେଇ ସେ ମୋତେ ବୁଝାଇ-ଦେଲେ ଯେ, ସଙ୍ଗୀତକାରହିଁ କବି ବୋଲାନ୍ତି, ଯଥା—ଜୟଦେବ ଇତ୍ୟାଦି । ମୁଁ ତାଙ୍କ ଯୁକ୍ତିକୁ ମଥା ନୁଆଇଁ ମାନିନେଲି । ସଙ୍ଗୀତଜ୍ଞ-କବି ଭାବାନୁସାରି ସ୍ୱର ସୃଷ୍ଟିବେଳେ ତାକୁ ରୂପ ଦେବାଲାଗି ତାଙ୍କ ମନରେ ଭାଷା ମଧ୍ୟ ସୃଷ୍ଟି ହୁଏ ।

ତାଙ୍କର ଅନୁଗତ ଶିଷ୍ୟମାନଙ୍କ ମଧ୍ୟରେ ଆଜି ଶ୍ରୀ ହୃଦାନନ୍ଦ ରାୟ, ଶ୍ରୀ ରଜତକୁମାର କର, ଶ୍ରୀ ଶରତ କୁମାର କର, ଶ୍ରୀ ଚନ୍ଦ୍ରଶେଖର ନନ୍ଦ, ଡାକ୍ତର କବିପ୍ରସାଦ ମିଶ୍ର ଓ ଡାକ୍ତର ଶୈଳେଶ୍ୱର ନନ୍ଦ ପ୍ରଭୃତି ଆମ ପ୍ରିୟପୁରୁଷଙ୍କ କୃତି ସଂରକ୍ଷଣରେ ବ୍ରତୀ ।

ଆଉ ଗୋଟିଏ ବିଶେଷ ଗୁଣ ତାଙ୍କର ଥିଲା ଯେ, ସେ ଓଡ଼ିଆରୁ ଇଂରାଜୀ ଭାଷାନୁବାଦ ଅତି ସୁନ୍ଦର ଭାବେ କରି ପାରୁଥିଲେ । ଏପରିକି ଓଡ଼ିଆ ଭାଷା ଲିଖିତ ଗୀତଗୁଡ଼ିକ ସେ ଅତି ନିପୁଣତା ସହ ଇଂରାଜୀ ତର୍ଜମା କରୁଥିଲେ ।

ଥରେ ୧୩୪୯ ସାଲ (୧୯୪୨ ମସିହା) ମିଥୁନ ୫ ଦିନରେ 'ଜାତୀୟ ଯୁଦ୍ଧ ସାମ୍ମୁଖ୍ୟ' ନାମକ ଖଣ୍ଡିଏ କ୍ଷୁଦ୍ର ପୁସ୍ତିକା ଆଡଭୋକେଟ ଶ୍ରୀ ମଧୁସୂଦନ ମହାନ୍ତିଙ୍କ ନିର୍ଦ୍ଦେଶରେ ମୁଁ ଲେଖିଥିଲି । ପୁସ୍ତିକାଟି ସେତେ-ବେଳର ଅବଜରଭର୍ ଛାପାଖାନାରେ ଛାପା ହୋଇଥିଲା । ଏଥିରେ ମାତ୍ର ଛଅଗୋଟି ସଙ୍ଗୀତ ଥିଲା । ସବୁଗୁଡ଼ିକ ଗୀତର ଇଂରାଜୀ ଅନୁବାଦ କରିଥିଲେ ବିଚ୍ଛନ୍ଦ ମଉସା । ତହିଁ ମଧ୍ୟରୁ ଗୋଟିଏ ଗୀତର ପଦେ ନମୁନାସ୍ୱରୂପ ଦେଉଛୁ । ଏଥିରୁ ବାରି ହୋଇପଡ଼ିବ ବିଚ୍ଛନ୍ଦ ମଉସାଙ୍କର ଇଂରାଜୀ ଭାଷା ଉପରେ କେତେ ପରିମାଣରେ ଦଖଲ ଥିଲା ।

ବନ୍ଦେ ମାତରମ୍

ଶୁଭଦେ, ସୁଖଦେ, ଆଶ୍ରିତ-ଜନ-ବରଦେ,
ଜନନୀ ଉତ୍କଳ ବନ୍ଦେ—ବନ୍ଦେ ମାତରମ୍ । ୦ ।

ନୀଳ ସିନ୍ଧୁ ଜଳ, ଧଉତ ଚରଣ ତଳ
ଅମ୍ବର ଶ୍ୟାମଳ ପରିହିତ ବେଶା,
କଟିତଟ ଗିରିବନ-ସୁମନ ମେଖଳିତ
ନଦୀ ନିର୍ଝର ନୀଳ-କେଶା—ବନ୍ଦେ । ୧ ।

I bow to thee O mother.

O thou Mother Utkal, thou giver of all good, giver of all happiness, giver of boon to those that seek succour at thy hands.
I bow to thee ( Refrain ).

Thy feet are washed by the blue waters of the sea and thy body is dressed in green. The flora of mountains and forests serve as a girdle round thy waist.

And the rivers and fountains constitute the black hairs on thy head.

ସେତେବେଳର ଇଂରାଜୀ ସର୍କାର ବିଚ୍ଛନ୍ଦବାବୁଙ୍କୁ ପବ୍ଲିସିଟି ବିଭାଗର ଟ୍ରାନ୍ସଲେଟର ଭାବେ ମୁତୟନ କରିଥିଲେ ।

ସେ ମଧ୍ୟ ନିଜେ ସଙ୍ଗୀତ ରଚନା କରୁଥିଲେ । କେତେଗୋଟି ବହୁଦିନର ପୁରୁଣା ଜଣାଣ ଯେନ ସେ

ଖଣ୍ଡିଏ ପୁସ୍ତକ ସଂକଳନ କରିଛନ୍ତି । ଏ ଗୀତଗୁଡ଼ିକ ଆମର ପୁରାତନ କବିମାନଙ୍କ ରଚନା । ବହିଟିର ନାମ "ଜଗନ୍ନାଥ ଜଣାଣ ଭଜନ" । ଏଥିରୁ ତାଙ୍କର ଜଗନ୍ନାଥ ଭକ୍ତିର ମଧ୍ୟ ପରିଚୟ ମିଳେ ।

'କଳିଷଠା ଷାଠିଏ' ବୋଲି ଲୋକକଥା ତାଙ୍କ ଜୀବନରେ ସତ ଫଳିଗଲା । ୧୯୬୧ରେ ସେ ମରଦେହ ତ୍ୟାଗ କରିଗଲେ ସୁଦ୍ଧା ଏ ଜାତିର ହୃଦୟରେ ଅପାସୋରି ହୋଇ ରହିଛନ୍ତି ଓ ରହିବେ ।

ସେ ଆମର ଚଳନ୍ତିକା 'ଖୁଣ ଯେଉଁଠି ଗୁଣ ସେଇଠି' କଥାର ଏକ ବିଶିଷ୍ଟ ପ୍ରମାଣ । ମୁଁ ମଉସାଙ୍କ ଚରଣ ତଳେ ଭକ୍ତି ପ୍ରଣତ ନିବେଦନ କରି ଦୁଇ ବୁନ୍ଦା ଲୁହ ଝରାଇ ବିଦାୟ ନେଉଛି ।



ଭାଇ ଦକ୍ଷ ମାଳାକର ! ରଚିଛ ଯେ ଅବା ହାର
ନିଅ ରେ ଚଳାଇ ମୋର ରଚନା ଧନ
ମାଡ଼ି ନାହିଁ ପାଦ ମୋର ଯଶୋମନ୍ଦିର-ଦୁଆର
ନୁହଇ ମୋରେ ଗୋଚର ସେ ସିଂହାସନ
ବସି ଯହିଁ ଜନମ ବାଣୀ
ଦିଅନ୍ତି ଭକତଜନେ ଜୟ-ମଣି ।

—ବିଚ୍ଛନ୍ଦ ଚରଣ

# ଓଡ଼ିଆପ୍ରାଣ ବିଚ୍ଛନ୍ଦଚରଣ

**ଶ୍ରୀ ବେଣୁଧର ପୃଷ୍ଟି**

ଓଡ଼ିଶା ଏବଂ ଓଡ଼ିଶା ବାହାରେ ଭଞ୍ଜଜୟନ୍ତୀର ପ୍ରଚାର ତଥା ପ୍ରସାର, ଚର୍ଚ୍ଚା ଆଲୋଚନା, ଅନୁଧ୍ୟାନ, ଗବେଷଣା ପାଇଁ ଆଜି ଯେଉଁ ପ୍ରବଳ ଉତ୍ସାହ ଉଦ୍ଦୀପନା, ତା'ର ମୂଳ ପ୍ରବର୍ତ୍ତକ ସ୍ୱର୍ଗତ ବିଚ୍ଛନ୍ଦ-ଚରଣ ପଟ୍ଟନାୟକ । ତାଙ୍କ ପବିତ୍ର ସ୍ମୃତି ଆଜି ପ୍ରତ୍ୟେକ ଓଡ଼ିଆଙ୍କ ନିକଟରେ ଆଦରଣୀୟ । ଏଣୁ ଦୀର୍ଘ ୨୩ ବର୍ଷ ହେଲା ସ୍ୱର୍ଗତ ଗୁରୁଦେବ ବିଚ୍ଛନ୍ଦ-ଚରଣଙ୍କ ସ୍ମୃତିକୁ ହୃଦୟରେ ଧରି ଓଡ଼ିଶାର ରାଜଧାନୀ ଭୁବନେଶ୍ୱରରେ ଭଞ୍ଜ ଜୟନ୍ତୀର ସମ୍ପାଦକ ଦାୟିତ୍ୱ ନେଇ ଯେଉଁ କଣ୍ଟକିତ ଅଭିଜ୍ଞତା ଏବଂ ସେଥିରେ ଗୁରୁ-ଦେବଙ୍କ ଯେଉଁ ଭୂମିକା, ସେ ସମ୍ପର୍କରେ ମୋ ଜାତିର ସାହିତ୍ୟ ସଂସ୍କୃତିପ୍ରେମୀମାନଙ୍କୁ ଜଣାଇବା ଯେ ମୋର କର୍ତ୍ତବ୍ୟ ସେଇ ଦୃଷ୍ଟିରୁ ମୋ ଅଙ୍ଗେ ନିଭେଇଥିବା ଦୁଇପଦ କଥା ଏ ପ୍ରବନ୍ଧରେ ଅବତାରଣା କଲି ।

୧୯୪୫ ମସିହା । ସେତେବେଳେ ମୁଁ ପୁରୀ ଜିଲ୍ଲା ସ୍କୁଲରେ ପଢ଼ୁଥାଏ । ବର୍ତ୍ତମାନର ସ୍ୱନାମଧନ୍ୟ ସୁବକ୍ତା ଅଧ୍ୟାପକ ହୃଦାନନ୍ଦ ରାୟ (ବର୍ତ୍ତମାନ ରାଜ୍ୟ ପର୍ଯ୍ୟଟନ ଉପ-ନିର୍ଦ୍ଦେଶକ) ପ୍ରମୁଖ ସେଇ ୧୯୪୫ରେ ଗୁରୁ-ଦେବ ବିଚ୍ଛନ୍ଦଚରଣଙ୍କ ପ୍ରବର୍ତ୍ତନାରେ କଳିଙ୍ଗଭାରତୀ ଅନୁଷ୍ଠାନ ଗଢ଼ି ଭଞ୍ଜଜୟନ୍ତୀ ଆରମ୍ଭ କରିସାରିଥାନ୍ତି । ଭଞ୍ଜସାହିତ୍ୟ ପ୍ରଚାର, ଓଡ଼ିଆ ଜାତି ସାହିତ୍ୟର ପ୍ରଚାର ଅଭିମୁଖ୍ୟରେ କଳିଙ୍ଗଭାରତୀ ପକ୍ଷରୁ ହୃଦାନନ୍ଦବାବୁ ସେଦିନ ପୁରୀଜିଲ୍ଲା ସ୍କୁଲରେ ଭାଷଣ ଦେବାକୁ ଗଲେ । ସେତେବେଳେ ମୁଁ ଛୁଆ । ପିଲାଳିଆ ଚେହେରା ତାଙ୍କର । ସ୍କୁଲ ଛୁଟି ପରେ ହୃଦାନନ୍ଦବାବୁଙ୍କୁ ଅନୁମତି ଦିଆଗଲା ବକ୍ତୃତା ଦେବାକୁ । ଆମେ ସବୁ ତାଙ୍କପରି ଜଣେ ଟୋକାଙ୍କଠାରୁ ଏଭଳି ଓଜସ୍ୱିନୀ ଭାଷଣ, ଭଞ୍ଜଜୟନ୍ତୀ ଓ କଳିଙ୍ଗଭାରତୀ କଥା ଶୁଣି ମନ୍ତ୍ରମୁଗ୍‌ଧ ହୋଇଗଲୁ । ମୋର ମନେହେଲା ସତେ ଯେମିତି ଭଞ୍ଜଙ୍କ ଲେଖାଛଡ଼ା ଅନ୍ୟ ସବୁ ଲେଖା, ଲେଖାପଦବାଚ୍ୟ ନୁହେଁ । ସେହି ଧାରାରେ ଲେଖାଲେଖି କରିବା ପାଇଁ ଆମେସବୁ ସେଦିନଠାରୁ ସଙ୍କଳ୍ପ କଲୁ । ହୃଦାନନ୍ଦବାବୁଙ୍କ ଉଦ୍ୟମରେ ପୁରୀର ତଥା ଅନ୍ୟାନ୍ୟ ସ୍କୁଲମାନଙ୍କରେ ସାହିତ୍ୟ ସଭା ଆୟୋଜନ କରିବାରେ ଲାଗିପଡ଼ିଲୁ ଓ ଭଞ୍ଜ ସାହିତ୍ୟ ସମ୍ପର୍କରେ ପୁରୀରେ ଛାତ୍ର ମହଲରେ ସେତେବେଳେ ଏକ ସୁନ୍ଦର ବାତାବରଣ ସୃଷ୍ଟି ହୋଇଥିଲା । ହୃଦାନନ୍ଦବାବୁଙ୍କ ସଂସ୍ପର୍ଶରେ ଆସି ଆମେସବୁ ଭାବିଲୁ ଏ ଯଦି ଏତେ ଅଳ୍ପ ବୟସରେ ଏମିତି, ତାଙ୍କୁ ଯିଏ ଏସବୁ ଦିଗରେ ତାଲିମ ଦେଉଛନ୍ତି ତାଙ୍କ ଗୁରୁଦେବ ତାହେଲେ କେତେ ବଡ଼ ସାହିତ୍ୟିକ ବ୍ୟକ୍ତି ନ ହୋଇଥିବେ । ଏଣୁ ଗୁରୁଦେବ ବିଚ୍ଛନ୍ଦଚରଣଙ୍କୁ ଦେଖିବାକୁ ମୋର ଖୁବ୍ ଆଗ୍ରହ ହେଲା । ହୃଦାନନ୍ଦ-ବାବୁଙ୍କୁ ମୋର ମନକଥା କହିବାରୁ ସେ ଆଗ୍ରହରେ ମୋତେ କଟକ ଡାକିଲେ । ତାଙ୍କ ନିମନ୍ତ୍ରଣକ୍ରମେ କଟକ ଡଗରପଡ଼ା ଭବନରେ ଗୁରୁଦେବଙ୍କୁ ଦର୍ଶନ କଲି । ଦେଖିଲୁ ଗୁରୁଦେବଙ୍କ ଅପେକ୍ଷା ତାଙ୍କ ସହଧର୍ମିଣୀ ଅତି ସ୍ନେହଶୀଳା । କଳିଙ୍ଗ-ଭାରତୀର ସବୁ ପିଲା ସତେ ଯେମିତି ତାଙ୍କ ନିଜ ପିଲା । ସେ କାହାକୁ ଖାଇବାକୁ ନ ଦେଇ ଛାଡ଼ନ୍ତି ନାହିଁ । ତାଙ୍କ

କଥା ଅମୃତ । ଖାଦ୍ୟଠାରୁ ଅଧିକ ତାଙ୍କ ସ୍ନେହ ଯେ ପାଇଛି ସେ ତାହା କେବେହେଲେ ଭୁଲିବ ନାହିଁ ।

ଗୁରୁଦେବଙ୍କର ମୁଖମଣ୍ଡଳ ଦୀପ୍ତିମନ୍ତ । ତାଙ୍କୁ ଦେଖିଲେ ମନେ ହେବ ସତେ ଯେପରି ସୂର୍ଯ୍ୟଙ୍କର ସମସ୍ତ ତେଜ ସେଥିରେ ଭରିଯାଇଛି । ଗୁରୁଦେବଙ୍କ ବଚନ ଅମୃତପୂର୍ଣ୍ଣ ଓ ଓଜସ୍ୱିନୀ । ଏସବୁ ଦେଖି ମୁଁ ମୁଗ୍ଧ ହୋଇଗଲି । ଯେ କେତେକ ସମୟ ତାଙ୍କ ପାଖରେ ରହିଲି ସେ ସମୟତକ ମୁଁ ମୋର ସମସ୍ତ ଘର ସଂସାର ଭୁଲିଗଲି । ମନେହେଲା ସବୁଦିନ ପାଇଁ ଏଠାରେ ରହିଲେ ଭଲ ହୁଅନ୍ତା । କିନ୍ତୁ ବସ୍ତୁତଃ ତାହା ହେଲା ନାହିଁ । ତାଙ୍କ ପାଖରେ ରହୁଥିବା ମୋର ବନ୍ଧୁମାନେ ଯଥା ରଜତବାବୁ ଓ ହୃଦାନନ୍ଦବାବୁ ଓଗେର ତାଙ୍କ ସ୍ପର୍ଶରେ ରତ୍ନ ପାଲଟିଗଲେ, କିନ୍ତୁ ଆମେ ଯେଉଁ ପଥର ସେଇ ପଥର ହୋଇ ରହିଲୁ ।

ସେଠାରୁ ଫେରି ଗୁରୁଦେବଙ୍କ ଶକ୍ତି ବଳରେ ହାଇସ୍କୁଲରେ ପଢ଼ୁଥିଲେ ମଧ୍ୟ ପୁରୀରେ ଭଞ୍ଜଜୟନ୍ତୀ ମହାସମାରୋହରେ କଲେଜ ଛକରେ ଜାନକୀବାବୁଙ୍କ ଘରେ ଆରମ୍ଭ କଲୁ । ତା ପରେ ବି.ଏ. ପାଶ୍ କରି ଚାକିରୀ ଜୀବନ ହୀରାକୁଦରେ ଆରମ୍ଭ କଲି । ଗୁରୁଦେବଙ୍କର ସେହି କରୁଣା ଓ ପ୍ରେରଣା ବଳରେ ହୀରାକୁଦ ପରି ଠାଙ୍ଗରା ପଥରଭୂମିରେ ଭଞ୍ଜଙ୍କର ରସପୂର୍ଣ୍ଣ ଭାଷଣ ଓ ନୃତ୍ୟ ନାଟିକା ପରିବେଷିତ ହେଲା । ଗୁରୁଦେଙ୍କର ୨ ଜଣ ପଞ୍ଚ ଶିଷ୍ୟ ସେଠାରେ ଭାଷଣ ଦେଲେ । ଭାଷଣ ଦେଇ ଏ ଜାତିର ଗୌରବମୟ ଭଞ୍ଜ ସାହିତ୍ୟ ପ୍ରତି ସେଠାକାର ଲୋକମାନଙ୍କର ଦୃଷ୍ଟି ଆକର୍ଷଣ କଲେ ।

ଚାକିରିରେ ପରିବର୍ତ୍ତନ କ୍ରମେ ୧୯୫୫ ମସିହାରେ ମୁଁ ଭୁବନେଶ୍ୱରକୁ ଆସିଲି । ଗୁରୁଦେବ ବଞ୍ଛାନିଧିଚରଣ ଓଡ଼ିଆ ସାହିତ୍ୟ ଏକାଡେମୀରେ ଥାଇ ସେତେବେଳେ ଭୁବନେଶ୍ୱରରେ ଅବସ୍ଥାପିତ ହୋଇଥାନ୍ତି । ଏହି ଅବସରରେ ଗୁରୁଦେବଙ୍କ ସହ ମୋର ପ୍ରତ୍ୟକ୍ଷ ସମ୍ପର୍କ ହେଲା । ରବିବାର ସନ୍ଧ୍ୟାରେ ସାହିତ୍ୟ ଆଲୋଚନା ହୁଏ । ସେହି ଆଲୋଚନା ପରେ ଜଣାପଡ଼ିଲା ଗୁରୁଦେବ କେବଳ ସାହିତ୍ୟିକ ନୁହନ୍ତି, ସେ ଏକାଧାରରେ ଜଣେ ସ୍ନେହୀ ପିତା, ସଖା, ଦାର୍ଶନିକ ଓ ନିଷ୍ଠାପର ଓଡ଼ିଆ । ସାହିତ୍ୟ କ୍ଷେତ୍ରରେ ସେ ଗୁରୁଦେବ ହୋଇ-ଥିଲେ ମଧ୍ୟ ତାଙ୍କ ସହିତ ସମ୍ପର୍କ ଅତ୍ୟନ୍ତ ଘରୋଇ ଥିଲା । ସେ ସବୁବେଳେ ଆମ ଘରର ଭଲମନ୍ଦ ବିଷୟରେ ବୁଝନ୍ତି । ସେ ସମ୍ପର୍କରେ ତାଙ୍କ ମତାମତ ଦିଅନ୍ତି । ବହୁଦିନ ପର୍ଯ୍ୟନ୍ତ ମୋର ପୁତ୍ର ସନ୍ତାନ ନ ଥିବାରୁ ସେ ଦୁଃଖିତ ଥିଲେ । କଟକ ଡାକ୍ତରଖାନାରେ ଚିକିତ୍ସିତ ହେଉଥିବାବେଳେ ମୋର ଗୋଟିଏ ପୁଅ ହେବାର ଶୁଣି ଅତ୍ୟନ୍ତ ଖୁସି ହୋଇଥିଲେ । ସେହି ସନ୍ଧ୍ୟାଗୁଡ଼ିକ ଏତେ ମଧୁମୟ ହୋଇଛି ଯେ ତାହା ଆଜି ପର୍ଯ୍ୟନ୍ତ ଭୁଲି ହେଉନାହିଁ ।

ଏହି ଅବସରରେ ଆଲୋଚନା ହେଲା ଭୁବନେଶ୍ୱରରେ କିପରି ଭଞ୍ଜଜୟନ୍ତୀ ଭଲ ଭାବରେ ହେବ । ସେଥିପାଇଁ ଆୟୋଜନ ଚାଲିଲା । ଗୁରୁଦେବ-ଙ୍କର କେତେକ ନିକଟତମ ଲୋକମାନଙ୍କୁ ନେଇ ଗୋଟିଏ ଭଞ୍ଜଜୟନ୍ତୀ କମିଟି ଗଢ଼ାଗଲା । ଯେଉଁ-ମାନଙ୍କୁ ନେଇ ଏ ଅନୁଷ୍ଠାନ କାମ କଲା ସେମାନଙ୍କ ମଧ୍ୟରେ ଶ୍ରୀଯୁକ୍ତ ନଗେନ୍ଦ୍ର ଭୂୟାଁଙ୍କ ନାମ ଅଗ୍ରଗଣ୍ୟ । ଆମେ ଗୁରୁଦେବଙ୍କୁ ନେଇ ବିଭିନ୍ନ ମନ୍ତ୍ରୀମାନଙ୍କ ପାଖକୁ ଯାଉ । ଗୁରୁଦେବ ପହଞ୍ଚିଲା ମାତ୍ରେ ସେମାନେ ଆଦରର ସହ ଯାହା ସହଯୋଗ କରିବାର କରନ୍ତି । ୧୯୫୭ ମସିହାରେ ଖୁବ୍ କମ୍ ଦିନରେ ଆଦିବାସୀ ମଣ୍ଡପରେ ଜୟନ୍ତୀ ଉତ୍ସବ ଆରମ୍ଭ ହେଲା । ଗୁରୁଦେବ ଠିକ୍ କରିଥିଲେ ଯେ କଟକ ଜୟନ୍ତୀ ଉତ୍ସବ ସରିବା ପରେ ଭୁବନେଶ୍ୱରରେ ମେ ୨୩ ତାରିଖଠାରୁ ଏହା ପାଳିତ ହେବ । ସେହି ଅନୁସାରେ ଆଜି ପର୍ଯ୍ୟନ୍ତ ମଧ୍ୟ ଏହି

ମଧ୍ୟରେ ଭୁବନେଶ୍ୱରରେ ଜୟନ୍ତୀଉତ୍ସବ ପାଳିତ ହୋଇ ଆସୁଅଛି । ଗୁରୁଦେବ ଥିଲାବେଳେ ଆମେ ବହୁ ଗଣ୍ୟମାନ୍ୟ ପ୍ରତିଷ୍ଠିତ ସାହିତ୍ୟିକଙ୍କୁ ମଞ୍ଚ ଉପରେ ସ୍ଥାନ ଦେଇ ନିଜେ ଆନନ୍ଦ ଉପଭୋଗ କରିବା ସଙ୍ଗେ ସଙ୍ଗେ ଅନୁଷ୍ଠାନର ମର୍ଯ୍ୟାଦା ବୃଦ୍ଧି କରିପାରିଥିଲୁ । ଏହା କେବଳ ଗୁରୁଦେବଙ୍କ ଉପସ୍ଥିତି ଓ କଳ୍ୟାଣରୁ ମାତ୍ର । ଆଜି ସେ ନାହାନ୍ତି । ତେଣୁ ଅନୁଷ୍ଠାନ ପୂର୍ବପରି ସଗୌରବେ ଜୟନ୍ତୀ ଉତ୍ସବ ପାଳନ କରି ପାରୁନାହିଁ। କେବଳ ତାଙ୍କର କଳ୍ୟାଣ ଥିବାରୁ ବହୁ ଚେଷ୍ଟାଦ୍ୱାରା ପାଳିତ ହେଉଅଛି । ଆମେ ଉତ୍ସବ ପାଳିଲାବେଳେ ଭାବୁଛୁ ଯେ ଗୁରୁଦେବ ଚାଲି ଯାଇଥିଲେ ମଧ୍ୟ ତାଙ୍କର ଅମର ଆତ୍ମା ଆମ ପାଖରେ ଅଛି । ସେ ପେଣ୍ଡାଲ ଉପରେ ପୂର୍ବପରି ତାଙ୍କ ବାଡ଼ିଟିଏ ଧରି ବସିଛନ୍ତି । କୌଣସି ଅଶାଳୀନ କାର୍ଯ୍ୟ କଲେ ସେ ଗାଳି ଦେବେ । ତେଣୁ ସେ ଚାଲି ଯାଇଥିଲେ ମଧ୍ୟ ସେ ଆମ ମଧ୍ୟରେ ଥାଇ ସବୁ କାମ କରୁଛନ୍ତି ବୋଲି ଆମେ ସବୁବେଳେ ଧାରଣା କରୁଛୁ । ଏହି ଧାରଣାରୁ ଗୁରୁଦେବ ଚାଲି ଯାଇଥିଲେ ମଧ୍ୟ ଆମ ଜୟନ୍ତୀ ଉତ୍ସବ ପୂର୍ବପରି ଚାଲିଅଛି। ଜୟନ୍ତୀ ଉତ୍ସବ ପାଳିଲାବେଳେ ସବୁବେଳେ ଗୁରୁଦେବ ଆମ ପାଖରେ ଅଛନ୍ତି ଭାବି ଆମେ କାମ କରୁଅଛୁଁ ।

ଥରେ ଆଦିବାସୀ ମଣ୍ଡପରେ ଭଞ୍ଜ ଜୟନ୍ତୀ ପାଳିତ ହେଉଥିବା ବେଳେ ଆମ୍ଭମାନଙ୍କ ମଧ୍ୟରୁ ଜଣେ ସହକର୍ମୀ ଭାଇ ସଭା ଆରମ୍ଭ ହେବା ପୂର୍ବରୁ ଗୋଟିଏ ହିନ୍ଦି ରେକର୍ଡ ବଜାଇଦେଲେ । ଏହା ଯେମିତି ଗୁରୁଦେବଙ୍କ କାନରେ ପଡ଼ିଛି ସେ ରାଗି ନିଆଁ ହୋଇଗଲେ ଓ କହିଲେ, "ଡାକ ବେଣୁଧରକୁ ! କିଏ କହିଲା ହିନ୍ଦି ଗୀତ ବଜାଇବାକୁ ? ସେ ଗୀତ ବନ୍ଦକର ! ନଚେତ୍ ମୁଁ ସଭା ଛାଡ଼ି ଚାଲିଯିବି ।" ଏ କଥାରେ ଆମର ଚେତା ବୁଡ଼ିଗଲା । ସଙ୍ଗେ ସଙ୍ଗେ ଗୁରୁଦେବଙ୍କୁ କ୍ଷମା ମାଗିବାକୁ ହେଲା ଓ ରେକର୍ଡ ବାଜିବା ବନ୍ଦ ହେଲା । ସେ ଶାନ୍ତ ହେଲେ ଓ ସଭା କାର୍ଯ୍ୟ ଚାଲିଲା । ଏପରି ଗୋଟିଏ ଗୋଟିଏ କଥା ମନେ ପଡ଼ିଲେ ତାଙ୍କର ଆଉ ସବୁ କଥା ମାନସପଟରେ ନାଚିଯାଏ ।

ଏବେ ଆମ୍ଭେମାନେ ଜୟନ୍ତୀ ଉତ୍ସବ ପାଳିଲା-ବେଳେ ସ୍ମରଣ କରୁ ଯେ ଆମ ଗୁରୁଦେବ ତାଙ୍କ ବଙ୍କୁଲି ବାଡ଼ି ଧରି ସଭାମଣ୍ଡପ ଉପରେ ବସିଛନ୍ତି । ତାଙ୍କର ନିର୍ଦ୍ଦେଶରେ ସବୁ ସଭା କାର୍ଯ୍ୟ ଚାଲିଛି ।

ବିଧିର ବିଧାନ ଅନ୍ୟତମ । ତାଙ୍କୁ ଆମକୁ ଶୀଘ୍ର ଛାଡ଼ିବାକୁ ପଡ଼ିବ ଏକଥା ଜମା ଚିନ୍ତା କରି ନ ଥିଲୁ । କିନ୍ତୁ ବିଧାତା ନିଷ୍ଠୁର ଭାବରେ ଆମଠାରୁ ତାଙ୍କୁ ଛଡ଼ାଇନେଲେ । ଆମେ ଭାଙ୍ଗି ପଡ଼ିଲୁ । ଅନୁଷ୍ଠାନ ଦବିଗଲା, କିନ୍ତୁ ତାଙ୍କ ଆଶୀର୍ବାଦରୁ ଅନୁଷ୍ଠାନ ନ ଭାଙ୍ଗି ଗଡ଼ି ଚାଲିଛି ଓ ବଢ଼ି ଚାଲିଛି । ତାଙ୍କର ସଦିଚ୍ଛା କେବଳ ଆମର ସମ୍ବଳ । ତାଙ୍କର ମୃତ୍ୟୁ ଖବର ପାଇ ଏବର ବିଜ୍ଞାନ ପୀଠର ଅଧିକାରୀ ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତି ଦୁଃଖରେ କହି ପକାଇଥିଲେ, "ଜଣେ ଓଡ଼ିଆ ଚାଲିଗଲା, ଯାହାର ପ୍ରାଣ ଏ ଦେଶର ସାହିତ୍ୟ ପାଇଁ କାନ୍ଦୁଥିଲା । ସେ ଥିଲେ ଜଣେ ପ୍ରକୃତ ଓଡ଼ିଆ । ଆଉସବୁ ଭେଜାଲ । ଗୋଟିଏ ସାଧକର ଦୀପ ଲିଭିଗଲା ।" ଆମେ ଯେତେ ବୟସ୍କ ହେଉଛୁ ଏହି କଥାର ତାତ୍ପର୍ଯ୍ୟ ସେତେ ବୁଝୁଛୁ ।

ସେ ନ ଥିଲେ କେବଳ ଜଣେ ସାଧକ, ସେ ଥିଲେ ଜଣେ କବି, ଭକ୍ତ, ଦାର୍ଶନିକ ଓ ସାହିତ୍ୟିକ । ସେ ଜଣେ ବ୍ୟକ୍ତି ନ ହୋଇ ଥିଲେ ବହୁ ଅନୁଷ୍ଠାନର ମୂଳାଧାର । ସେ ବହୁ ଭାବରେ କହି ଯାଇଛନ୍ତି ଏ ଜାତିର ଇତିହାସ ଗୌରବମୟ । ଏ ଗୋଟିଏ ମହାନ୍ ଜାତି, ଯେଉଁଠି ଜନ୍ମଗ୍ରହଣ କରିଛନ୍ତି କବିସମ୍ରାଟ ଉପେନ୍ଦ୍ର, ଗଢ଼ି ଉଠିଛି କୋଣାର୍କ, ଧର୍ମ ରାଜ୍ୟରେ ଅଦ୍ୱିତୀୟ । ଭଞ୍ଜ ଜୟନ୍ତୀ ମାଧ୍ୟମରେ ଏହା ଅନୁଭବ କରି ସମସ୍ତଙ୍କୁ ଏହି ପ୍ରାଣରେ ଅନୁପ୍ରାଣିତ କରିବା ପାଇଁ ସେ ନିର୍ଦ୍ଦେଶ ଦେଇ ଯାଇଛନ୍ତି । ତେଣୁ ଜୟନ୍ତୀ ଉତ୍ସବ ଗୋଟିଏ ସାହିତ୍ୟିକ ଉତ୍ସବ ନ ହୋଇ ଜାତୀୟ ଉତ୍ସବରେ ପରିଣତ ହୋଇଛି । ତାଙ୍କର ଏହି ମହନୀୟ ବାର୍ତ୍ତା ପ୍ରତ୍ୟେକ ଓଡ଼ିଆ ହୃଦୟରେ ବାଜି ଉଠୁ, ଆଜି ଆମର ଈଶ୍ୱରଙ୍କଠାରେ ଏହି ପ୍ରାର୍ଥନା ।

"ଜୟ ମା କଳିଙ୍ଗ ଭାରତୀ"

# ଅନୁବାଦ ସାହିତ୍ୟ ଓ ବିଚ୍ଛନ୍ଦଚରଣ

ଇଞ୍ଜିନିୟର ଚନ୍ଦ୍ରଶେଖର ନନ୍ଦ

ଓଡ଼ିଆ ଭାଷାରେ ଅଦ୍ଭୁତ ବ୍ୟୁତ୍ପତ୍ତି ଥିବା ସ୍ଥଳେ ଗୁରୁଦେବ ସ୍ୱକୀୟ ସୃଷ୍ଟି ପ୍ରତି ଅଧିକ ଧ୍ୟାନ ନ ଦେଇ ଭାଷାନ୍ତର ପ୍ରତି ଅଧିକ ଧ୍ୟାନ ଦେଲେ କାହିଁକି ? କର୍ତ୍ତବ୍ୟବୋଧ ଏବଂ ଦାୟିତ୍ୱଜ୍ଞାନର ଅଙ୍କୁଶ ତାଙ୍କୁ ଅନୁବାଦର ସରଣୀରେ ପଥିକ ହେବାକୁ ବାଧ୍ୟ କଲା । ଗୁରୁଦେବ ଜାଣିଥିଲେ ବିଶ୍ୱଦରବାରରେ ଯେ ପର୍ଯ୍ୟନ୍ତ ଉତ୍କଳର ପ୍ରାଚୀନ ସାହିତ୍ୟ ବିଦିତ ନ ହୋଇଛି ସେ ପର୍ଯ୍ୟନ୍ତ ଆମ୍ଭର କୁମ୍ଭକର୍ଣ୍ଣ ନିଦ ଭାଙ୍ଗିବ ନାହିଁ । ସାର୍ ଉଇଲିୟମ୍ ଜୋନ୍ସ୍ ବିଦେଶରୁ ଆସି ନାନା ନିର୍ଯ୍ୟାତନା ମଧ୍ୟରେ ସଂସ୍କୃତ ଶିକ୍ଷା କରି ସଂସ୍କୃତ ସାହିତ୍ୟର ଗମ୍ଭୀର ବିଦ୍‌ବତ୍ତ୍ୱ ଇଂରାଜୀରେ ପ୍ରକାଶ କଲେ । ବିଚ୍ଛନ୍ଦଚରଣଙ୍କର ଧୈର୍ଯ୍ୟ ନ ଥିଲା ସେହି ଭଗୀରଥଙ୍କୁ ପ୍ରତୀକ୍ଷା କରିବା ପାଇଁ, ଯେ ବିଦେଶରୁ ଆସି ଓଡ଼ିଆ ଭାଷାର ବିଶେଷତ୍ୱକୁ ଉପଲବ୍ଧି କରି ବିଶ୍ୱଦରବାରରେ ଉପସ୍ଥାପନ କରିବେ । ଉଗ୍ର ଜାତୀୟବାଦୀ ଅନମନୀୟ ବିଚ୍ଛନ୍ଦଚରଣ ନିଜେ ଆଗଭର ହେଲେ ଭଞ୍ଜ, ଦୀନକୃଷ୍ଣ, କବିସୂର୍ଯ୍ୟଙ୍କ ବିଦଗ୍ଧ କାବ୍ୟରାଜିକୁ ବିଶ୍ୱବିପଣୀରେ ଉପସ୍ଥାପନ କରିବା ପାଇଁ । ଏକମାତ୍ର ଉପାୟ ଇଂରାଜୀରେ ଅନୁବାଦ । ଓଡ଼ିଆ ଏବଂ ଇଂରାଜୀ ଉଭୟ ଭାଷାରେ ଅତୀବ ପାରଦର୍ଶିତା ଥିବାରୁ, ସ୍ୱାନ୍ତଃକରଣରେ ଓଡ଼ିଆପ୍ରୀତି ଜାଗ୍ରତ ଥିବାରୁ ଏବଂ ଓଡ଼ିଆ ଭାଷା, ଓଡ଼ିଆ ସାହିତ୍ୟର ଗୌରବକୁ ଲୋକଲୋଚନର ଗୋଚରକୁ ଆଣିବାକୁ ବଦ୍ଧପରିକର ଥିବାରୁ ଭାଷାନ୍ତର ହେଲା ତାଙ୍କ କବି ଜୀବନର ଅନ୍ୟ ଏକ ବିଶିଷ୍ଟ ଦିଗ ।

ଅବଶ୍ୟ ଭାଷାନ୍ତର କଲେ ଓଡ଼ିଆ କାବ୍ୟର ଛନ୍ଦ-ରାଗ-ରାଗିଣୀ-ସମନ୍ୱିତ ସଙ୍ଗୀତବିଭବ ଅନ୍ତର୍ହିତ ହେବ, ଓଡ଼ିଆ ଭାଷାର ସ୍ୱକୀୟ ସୌନ୍ଦର୍ଯ୍ୟ ପରାଭୂତ ହେବ, କିନ୍ତୁ ଗୁରୁଦେବଙ୍କର ଦୃଢ଼ ବିଶ୍ୱାସ ଥିଲା ପ୍ରାଚୀନ କବିମାନଙ୍କର କେବଳ ବିଦଗ୍ଧ ଭାବତାରଲ୍ୟକୁ ଯେ କୌଣସି ଭାଷାର ଆଧେୟରେ ଯଦି ଆଧାରିତ କରାଯାଏ ତା'ହେଲେ ତାହା ବିଶ୍ୱବାସୀଙ୍କର ହୃଦୟକୁ ନିଶ୍ଚୟ ସ୍ପର୍ଶ କରିବ ।

ଏତାଦୃଶ ସଂକଳ୍ପରେ ବ୍ରତୀ ହୋଇ ଗୁରୁଦେବ କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ରଚିତ ରସିକହାରାବଳୀ, ଲାବଣ୍ୟବତୀ, କୋଟିବ୍ରହ୍ମାଣ୍ଡସୁନ୍ଦରୀ, ପ୍ରେମସୁଧାନିଧି କାବ୍ୟର ବହୁ କବିତାର ଇଂରାଜୀ ଅନୁବାଦ କରିଛନ୍ତି । କହିବା ବାହୁଲ୍ୟ ଏହି ଅନୁବାଦ ଭାଷାପ୍ରଧାନ ନୁହେଁ, ଭାବପ୍ରଧାନ । ଉଦାହରଣ ସ୍ୱରୂପ ମାତ୍ର କେତୋଟି କବିତାର କେତୋଟି ପାଦ ଏବଂ ତହିଁର ଅନୁବାଦାତ୍ମକ ଉଦ୍ଧୃତି ନିମ୍ନରେ ପ୍ରଦତ୍ତ ହେଲା ।

**ରସିକହାରାବଳୀ—**

ମହା ସୁଖ ନାହିଁ ଦମ୍ପତିରୁ
କି କାର୍ଯ୍ୟ କୁବେର ସମ୍ପତ୍ତିରୁ
ଜୀବନ ଯିବାର ବଡ଼ ତ ନୁହଇ
ଯୁବାଙ୍କୁ ଯୁବତୀ ବିଚ୍ଛେଦରୁ ।

—ଉପେନ୍ଦ୍ର ଭଞ୍ଜ

Life's highest bliss is the beloved
And if she were near, of what use
Are all the treasures of the
God of wealth ?
Even the departing of life
from the body
Is not so fraught with pain
As the separation from her company.

—ବିଛନ୍ଦଚରଣ

**ପ୍ରେମସୁଧାନିଧି—**

ଦୂରେ ଥିଲେ ପାଶେ ଅଛୁ ଥିବୁ ଏହା ଘେନ
କେତେ ଦୂରେ ଚନ୍ଦ୍ର କେତେ ଦୂରେ କୁମୁଦିନୀ
ପ୍ରୀତି ଅଭେଦ ତାଙ୍କର
ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର ।
ଯେତେ ଦୂରେ ପତ୍ର ଉଡ଼ିଥିଲେ ରେ ନବୀନା
ତହିଁ କି ନୁହଇ ଆନେ ବୃକ୍ଷ ନାମ ବିନା
ବନ୍ଧୁ ତେମନ୍ତେ ମୁଁ ତୋର
ସବୁଠାରେ କୁହାଉଛି ସୁନ୍ଦରୀ କେୟୂର ।

—ଉପେନ୍ଦ୍ର ଭଞ୍ଜ

Though away, imagine that I am nigh
The distance that parteth the moon
and the lily
Is no distance
Their love knoweth no barrier
For distance faileth to divide
Whom love doth unite
The dearest is the dearest whether
far or near.
The leaf torn from a tree
Is by the name of the tree known
No matter at what distance
doth it fall.
Even so at this distance
Am I thine
Everywhere do I make myself known
As thy slave, O thou queen
of beauty.

—ବିଛନ୍ଦଚରଣ

**କୋଟିବ୍ରହ୍ମାଣ୍ଡସୁନ୍ଦରୀ—**

ସେ କମ୍ବୁ କଟକ ରାଜା ନାମ ଜଗନ୍ନାଥ
ଚତୁର୍ବର୍ଣ୍ଣେ ଚଉବର୍ଗ ଦେବାକୁ ସମର୍ଥ ହେ ।
ଭକ୍ତି ଦେବୀ ଗୁପ୍ତ ହୋଇଅଛି ଯୁକ୍ତାକ୍ଷରେ
ବୈଷ୍ଣବ ବିହୀନେ କେବା ଜାଣିବ ସଂସାରେ ହେ ।

—ଉପେନ୍ଦ୍ର ଭଞ୍ଜ

And the monarch of that conch shell-
shaped city is Lord Jagannath
Who is capable of bestowing
on the fourfold order of people
His fourfold favour religion, wealth,
fruition of desires and salvation
The hidden etymological meaning of
the word Jagannath is the lord
of Radha
(the embodiment of devotion)
And the fact none in the world do
know except Baisnabs.

—ବିଛନ୍ଦଚରଣ

ଭଞ୍ଜପ୍ରେମୀ ବିଛନ୍ଦଚରଣଙ୍କ ସମ୍ମୁଖସ୍ଥ ସାହିତ୍ୟ ଆକାଶରେ ଭଞ୍ଜ ଏକ ମହାନ୍ ଉଜ୍ଜ୍ୱଳ ଜ୍ୟୋତିଷ୍କ ହେଲେହେଁ ଅନ୍ୟ ବହୁ ଜ୍ୟୋତିଷ୍କଙ୍କର ସ୍ୱକୀୟ ପ୍ରଭାରେ ସେ ଆକାଶ ଉଦ୍ଭାସିତ ହେଉଥିଲା । ଓଡ଼ିଆ ସାହିତ୍ୟର

ଚନ୍ଦ୍ରାଧର ଭଞ୍ଜ ବିହୁନେ ଶୂନ୍ୟ ନ ଥିଲ । ଗୁରୁଦେବ କବିସୂର୍ଯ୍ୟ, ଗୌରଚରଣ, ଗୋପାଳକୃଷ୍ଣ, ଅଭିମନ୍ୟୁ ଆଦି ବହୁ କବିଙ୍କର କାବ୍ୟ ସମ୍ଭାରର ଭକ୍ତିରସାପ୍ଲୁତ କବିତାର ଇଂରାଜୀ, ହିନ୍ଦୀ ଭାଷାନ୍ତର କାର୍ଯ୍ୟ ମଧ୍ୟ ଆରମ୍ଭ କରିଥିଲେ । ଉଦାହରଣ ସ୍ୱରୂପ—

**ଜଗତେ କେବଳ—**

ଜଗତେ କେବଳ
ଜନେ ହସିବେ ଏହି ତହୁଁ ଫଳ ।
ଜଟିଳ କରି ସ୍କନ୍ଧ ରୋମରାଜି
ଶିଖରିଦରୀରେ ମରୁ ଗରଜି
କୁଟିଳ କରି ଭ୍ରୂକୁଟୀକୁ ଗୁହୁଁ
ସରମା କଣ୍ଠୀରବ ହେବ କାହୁଁ ।

—କବିସୂର୍ଯ୍ୟ ବଳଦେବ ରଥ

Evoke ridicule it will sure
And not avail anything
A Lion a dog can never become
Make deafening roars it might from a cave
With furs on the neck upraised
And with eyebrows twisted to overawe.

—ବଞ୍ଛନିଧିଚରଣ

**ସେ ପୀରତି ସତେ—**

ସେ ପୀରତି ସତେ,
କି ପଦାର୍ଥ କହ ପଣ୍ଡିତେ ମୋତେ ।
ଶାରଦା ନୁହେ ସେ ବାବଦୂକ,
ଅମଳ ନୋହେ ଅତି ଉନ୍ମାଦକ,
ହୋଇ ହୃଦୟୁ ଅଦୃଶ୍ୟ ପଦକ,
ହଜାଇ ଦିଅଇ ବିବେକପାକ ।
ସୁମ ନୋହି କରେ ଦିବ୍ୟ ସୁଗନ୍ଧ,
ସମଜଇ ନାହିଁ ନୁହଇ କନ୍ଦି,
ପଟଳ ନୋହି ଚକ୍ଷୁ କରେ ଅନ୍ଧ,
ଶୃଙ୍ଖଳ ନୋହେ ଦୃଢ଼େ କରେ ବନ୍ଧ ।

—କବିସୂର୍ଯ୍ୟ

It is for the wiser to answer
'What exactly then is love ?'
The goddess of speech it is not,
Nevertheless, it imparts eloquence to the tongue
An intoxicant it is not
Yet as an excitant it is potent enough
An invisible talisman bedecking the bosom
It does not protect
But sets at naught all good sense
Without being a flower
It emits aroma ineffable
And not being a denizen of the woods
It refuses to be sensible
Though film it is not
It wraps vision all the same
And though not rope
It binds fast.

—ବଞ୍ଛନିଧିଚରଣ

**ବିଦଗ୍ଧଚିନ୍ତାମଣି—**

ଅପ୍ରାକୃତ ପ୍ରେମମୂର୍ତ୍ତି ଜୟ ରାଧା ହରି
ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କରି ଅବତରି ନେହ
ଆଦି ଅନାଦି କାରଣ ନିର୍ଗୁଣ ସଗୁଣ
ଆତ୍ମାରାମ ସନାତନ ବ୍ରହ୍ମ ନିରୂପଣ ନେ
ଈଶ୍ୱର ସ୍ୱତନ୍ତ୍ର ସ୍ୱୟଂ ଭଗବାନ ତୁହି
ଇଚ୍ଛାମୟ ସର୍ବଶକ୍ତିବନ୍ତ ତତ୍ତ୍ୱ ବହି ଯେ ।

—ଅଭିମନ୍ୟୁ ସାମନ୍ତସିଂହାର

Victory unto you
O Radha (the female principle of
Supreme Divinity)
And Hari (the male principle of
Supreme Divinity) in unison
The embodiment of the
supra-sensuous love
Gracious enough are you to
incarnate yourselves
And make manifest your sports
By nature unmanifest
You are first without a second
And beginning you have not.
The supreme cause of creation are you
Unqualified by nature and by
choice qualified.
You direct your sports by your
own supreme will.

—ସ୍ୱଚ୍ଛନ୍ଦଚରଣ

**ରସକଲ୍ଲୋଳ—**

କୋଟି ବ୍ରହ୍ମାଣ୍ଡ ପ୍ରଭୁ ଜଗନ୍ନାଥ
କରନ୍ତି ପୂର୍ଣ୍ଣ ଜନ ମନୋରଥ
ଜାଣି ମୁଁ ଏହି ହେବ ଅଭିମତ
କରିବାକୁ ରସକଲ୍ଲୋଳ ଗୀତ
କହିଲେ ସେ ଯେଣୁ, କରରେ ମାତ୍ର ଲେଖିଲି ମୁଁ ତେଣୁ ।

× × ×

କବିତ୍ୱ ବନିତା କବି ତା ପିତା
କହିବା ଲୋକ ତାର ଉପମାତା
କାଳେ ତାକୁ ଭୋଗ ରସିକ ନେତା
କେତେହେଁ ଅବା ରହଇ ଯୋଗ୍ୟତା
କୁମତି ଗୁଆଁର, କେବଳ ବଇମାତ୍ର ଭାଇ ତାର ।

—ଧାନକୃଷ୍ଣ

Lord Jagannath
The Lord of myriads of universes
Does fulfil the desires of human beings
And this is the belief impelling
That made me pen my Kavya.
It was verily His dictation
And the humble scribe was I.

× × ×

Poetry is verily a damsel delicate
And of the poet is she begotten
Her stepmother is the critic of
carping words.
If a connoisseur of letters
Becomes her lord
Her head he decks with a diadem
of loving appreciation.
Dullards are so many step-brothers
to her
And total neglect at their hands
is her lot.

—ସ୍ୱଚ୍ଛନ୍ଦଚରଣ

ଗୁରୁଦେବ ସ୍ୱଚ୍ଛନ୍ଦଚରଣ ଏକଦେଶଦର୍ଶୀ ନ ଥିଲେ । ଆତ୍ମକୈନ୍ଦ୍ରିକ ନ ଥିଲେ । କେବଳ ନିଜର ଓଡ଼ିଆ ସାହିତ୍ୟର ବର୍ଣ୍ଣବୈଚିତ୍ର୍ୟ ଦେଖି ଆସ୍ଫାଳନ କରିବା ଏବଂ ଅନ୍ୟ ସମସ୍ତ ପ୍ରାନ୍ତୀୟ, ବହିର୍ଦ୍ଦେଶୀୟ ଭାଷା ପ୍ରତି ଅନ୍ଧ ଭାବ ପୋଷଣ କରିବାର ସେ ପକ୍ଷପାତୀ ନ ଥିଲେ । ସେ ଚାହୁଁଥିଲେ ସାହିତ୍ୟ ସ୍ୱପର୍ଶୀରେ ସବୁ ଦେଶର କଳା, ସଙ୍ଗୀତ ଓ ସଂସ୍କୃତିର ଆଦାନପ୍ରଦାନ ହେଉ, ସାହିତ୍ୟ ବୁଦ୍ଧିମନ୍ତ ହେଉ । ସଂସ୍କୃତ, ଇଂରାଜୀ, ହିନ୍ଦୀ ନ ଜାଣିଥିବା ଓଡ଼ିଶାର ଅଗଣିତ ପାଠକପାଠିକାମାନଙ୍କ ପାଇଁ ସେ ସାହିତ୍ୟର ଅପୂର୍ବ ରସ, ରାଗ, ଭାବ, ବ୍ୟଞ୍ଜନାର ଗଙ୍ଗାଙ୍କୁ ଭଗୀରଥ ସାଜି ଆମନ୍ତ୍ରଣ କରି-ଆଣିଲେ ସ୍ୱଚ୍ଛନ୍ଦଚରଣ । ସେ ସବୁ କବିତାର ଓଡ଼ିଆ

ଅନୁବାଦ କଲେ । ବିଶ୍ୱର ଅନ୍ୟାନ୍ୟ ଦେଶର ସାରସ୍ୱତ-ସମ୍ଭାରଦ୍ୱାରା ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବା ନିମନ୍ତେ ପ୍ରଚେଷ୍ଟା କଲେ । ତାଙ୍କର ଲେଖନୀ ମାଧ୍ୟମରେ ସଂସ୍କୃତ, ହିନ୍ଦୀ, ଇଂରାଜୀ, ଫରାସୀ, ଇଟାଲୀୟ, ମାର୍କିନ ଭାଷା ପ୍ରଭୃତିର କବିତାମାନ ଓଡ଼ିଆ ଭାଷାରେ ଅନୂଦିତ ହୋଇ ନୂତନ ରୂପ ପରିଗ୍ରହ କଲେ ।

**ସଂସ୍କୃତ—**

ଶୃଙ୍ଗାଣି ଦ୍ରୁତ କନକୋଜ୍ଜ୍ୱଳାନି ଗନ୍ଧାଃ
କୌସୁମ୍ଭଂ ପୃଥୁ କୁମ୍ଭସଙ୍ଗି ବାସଃ
ମାର୍ଦ୍ଦୀକଂ ପ୍ରିୟତମସନ୍ନିଧାନମାସ-
ନ୍ନାରୀଣାମିତି ଜଳକେଳି ସାଧନାନି ।
—(ମାଘ-ଅଷ୍ଟମ ସର୍ଗ-୩୦ ପଦ)

ଜଳକେଳି ପାଇଁ ସୁନ୍ଦରୀଗଣ
ସାଜ ରଖିଛନ୍ତି ସବୁ ସାଧନ
ଅଛି ଶିଙ୍ଗାବାରି ହେମେଣ ଯୁତ
ସୁଗନ୍ଧ ହେବାକୁ ଅଙ୍ଗେ ଲେପିତ ଯେ ।
ଛନ୍ତି କାନ୍ତ, ଦ୍ରାକ୍ଷା-ମଦ ଯେ
କୁସୁମାବରଣ ଶାଢ଼ୀ ସୁଯତନ
ତୁଙ୍ଗ କୁଚ ପାଇଁ ଛଦ ଯେ ।
—ବିଚ୍ଛନ୍ଦଚରଣ

**ହିନ୍ଦି—**

ପ୍ରଭୁ ! ମେରେ ଗୁନ-ଅବଗୁନ ନ ବିଚାରୌ ।
କିଜୈ ଲାଜ ସରନ ଆଏ କୀ,
ରବି-ସୁତ-ତ୍ରାସ ନିବାରୌ ।
ଯୋଗ-ଯଜ୍ଞ-ଜପ-ତପ ନହିଁ କୀନ୍ହୌ,
ବେଦ ବିମଲ ନହିଁ ଭାଖୌ ।
ଅତି ରସ-ଲୁବ୍ଧ ଶ୍ୱାନ ଜୂଠନି ଜ୍ୟୌଁ,
ଅନତ ନହିଁ ଚିତ୍ତ ରାଗୌ ।
—ସୁର ଦାସ

ଦୋଷଗୁଣ ନ ବିଚାର ମୋହର !
ଶରଣ ଲେଉଡ଼ିଛି, ଲାଜ ମୋ ଭାରି

ସମ୍ଭାଳ ଏ ଲାଜ, ଦୀନ-ଶରଣ
କର କୃତାନ୍ତ-ଭୀତି ବିନାଶନ
ଯୋଗ ଯଜ୍ଞ ଜପ
କରି ନାହିଁ, ନାହିଁ ଆଚରି ତପ ।

ନିଗମ-ନିର୍ମଳ-ବାଣୀ କଣ୍ଠର
ସ୍ଫୁରିନାହିଁ ବଦନେ ଭ୍ରମରେ ମୋର
ଉଚ୍ଛିଷ୍ଟକୁ ଶ୍ୱାନ ଲେଉଟିଲା ପରି
ବିଷୟ ରସ ବସିଛି ଆବୋରି
ବିଷୟୁଁ ଅନ୍ତର
ମୁହୂର୍ତ୍ତେ ନ ହୋଇଛି ଚିତ୍ତ ମୋର ।
—ବିଚ୍ଛନ୍ଦଚରଣ

**ଇଂରାଜୀ—**

Father of all in every age
In every clime adored—
By saint, by savage and by sage—
Jehovah, Jove, or Lord !
Thou great first cause, least understood
Who all my sense confined
To know but this, that thou art good,
And that myself am blind.
Alexander Pope
( The Universal Prayer )

ହେ ଜଗତ ପିତା ! ଯୁଗେ ଯୁଗେ ଦେଶେ ଦେଶେ
ପୂଜନ୍ତି ତୁମ୍ଭଙ୍କୁ ଜନେ ତଦ୍‌ଗତ ମାନସେ
ସନ୍ଥ, ତାପସ, ବର୍ବର
ନାମ ତୁମ୍ଭପାଇଁ ପରା ଅଛି ସଭିଙ୍କର ।

ଜଗତ-ଆଦିକାରଣ ତୁମ୍ଭେ ଜଗନ୍ନାଥ !
ନ ବୁଝନ୍ତି ବହୁଜନ ଏହୁ ତଥ୍ୟ ଲେଶ
ତୁମ୍ଭେ କରୁଣା ଆକର,
ଅନ୍ଧ ମୁଁ କରଣି ତୁମ୍ଭ ମୋରେ ଅଗୋଚର ।
—ବଲ୍ଲଭ ଚରଣ

ସନ୍ଥକବି ତୁଳସୀ ଦାସ ଆଜି କେବଳ ଭାରତର କବିସମାଜ ଭିତରେ ଆବଦ୍ଧ ନ ରହି ବିଶ୍ୱ-ଦରବାରରେ ବହୁମୂଲ୍ୟ ଆସନ ଅଳଂକୃତ କରିଛନ୍ତି । ତାଙ୍କର କାବ୍ୟରାଜିରେ ଏକାଧାରରେ କବିତାର ଲାଳିତ୍ୟ, ଭକ୍ତିରସର ତନ୍ମୟତା ଏବଂ ତତ୍ତ୍ୱଜ୍ଞାନର ମହାନତା ଅତି ସ୍ପଷ୍ଟ ଭାବରେ ଦେଦୀପ୍ୟମାନ । ତାଙ୍କ ରଚିତ 'ବିନୟ ପତ୍ରିକା' ଭକ୍ତର ଭଗବାନଙ୍କ ନିକଟରେ ହୃଦୟ ନିବେଦନର ଏକ ମନୋଜ୍ଞ ସୃଷ୍ଟି । ଏଥିରେ ବେଦ, ବେଦାନ୍ତ, ପୁରାଣଶାସ୍ତ୍ରର ମହାମାୟ ଦର୍ଶନ ଯେପରି ଦୁଇଶହ ଅଣାଅଶୀଟି କବିତା ସନ୍ନିବେଶିତ ହୋଇଛି । ଗୁରୁଦେବ ବଲ୍ଲଭଚରଣ ଏହି କାବ୍ୟର ଅନୁବାଦ କରିଛନ୍ତି । ଏହି କାବ୍ୟ ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରକାଶ କରିବା ପାଇଁ ଗ୍ରହଣ କରିଛନ୍ତି । ଏହା ପ୍ରକାଶିତ ହେଲେ ଓଡ଼ିଆ ଭକ୍ତିସାହିତ୍ୟମାଳାରେ ଅନ୍ୟ ଏକ ଉଜ୍ଜ୍ୱଳ ମୋତି-ମାଣିକ୍ୟଭଳି ଯେ କେବଳ ଶୋଭା ପାଇବ ତାହା ନୁହେଁ, ଏହା ଓଡ଼ିଶାର ଅଗଣିତ ଭକ୍ତମାନଙ୍କର ତୃଷା ନିବାରଣ ଅବଶ୍ୟ କରିବ ।

ଭକ୍ତକବି ତୁଳସୀଦାସଙ୍କ କୃତ 'ରାମଚରିତ-ମାନସ'ର ପଦଲାଳିତ୍ୟ, ଭାବ ସୌନ୍ଦର୍ଯ୍ୟ କବି ବଲ୍ଲଭଚରଣଙ୍କୁ ଭାବାବେଗରେ ଏତେ ବିମୁଗ୍ଧ, ବିଦଗ୍ଧ କରିଦେଲା ଯେ କବି କଳିଙ୍ଗବାସୀଙ୍କ ପାଖରେ ସେ ଭାବପରିବେଷଣ କରିବାକୁ ଦୃଢ଼ପ୍ରତିଜ୍ଞ ହୋଇ ତାହାର ଓଡ଼ିଆ ଅନୁବାଦ ଆରମ୍ଭ କଲେ ।

**ରାମଚରିତମାନସ—**

ଭ୍ରାଜିତ ଶିର ମୁକୁଟ-ପୁରଟ-ନିରମିତ ମନି-ରଚିତ-ଗୃରୁ
କୁଞ୍ଚିତ କଚ ରୁଚିର ପରମ, ଶୋଭା ନହି ଥୋରୀ
ମନହୁଁ ଚଞ୍ଚରୀକ-ପୁଞ୍ଜ କଞ୍ଜବୃନ୍ଦ ପ୍ରୀତି ଲାଗି
ଗୁଞ୍ଜିତ କଲ ଗାନ ତାନ ଦିନମଣି ରିଝୟୋରୀ ।
—ତୁଳସୀ ଦାସ
( ଉତ୍ତରାକାଣ୍ଡ )

ଏସନ ହୁଏ ପରତେ ଅଳିଜାଳ ଏହୁ ସତେ
ରାମ-ସୁଖ-ନେତ୍ର-ପଦ୍ମ-ବିନୋଦ ପାଇଁ
ମୁକୁଟରୂପୀ ତପନେ ମୋହିବାକୁ ନିଜ ତାନେ
ଗୁଞ୍ଜନ ଗାନେ ନିଜକୁ ଦ୍ୟନ୍ତି ହଜାଇ
ନେତ୍ରେ କଞ୍ଜ-ଦଳ ବିଶାଳ
ଅରୁଣାଭ ବିମଣ୍ଡିତ ସୁଷମା-ଆଳ ।
—ବଲ୍ଲଭଚରଣ

ଅବଶେଷରେ ଏତିକି କହିବି କେବଳ ଅନୁବାଦ କରିବାପାଇଁ ଗୁରୁଦେବ ଅନୁବାଦ କରୁ ନ ଥିଲେ । ଏ ଅନୁବାଦର ପଶ୍ଚାତଭାଗରେ ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ଅନ୍ତର୍ନିହିତ ଥିଲା । ତାହା ଥିଲା—ଓଡ଼ିଶାବାସୀଙ୍କ ଅବହେଳା ଫଳରେ ଭଞ୍ଜ, ଦୀନକୃଷ୍ଣ, କବିସୂର୍ଯ୍ୟ, ଅଭିମନ୍ୟୁ ଇତ୍ୟାଦି ମହାନ୍ କବିମାନଙ୍କର ମହାର୍ଘ କୀର୍ତ୍ତିରାଜି ଯେତେବେଳେ ବିଶ୍ୱଦରବାର, ଭାରତ ଦରବାର ତ ଦୂରର କଥା, ଓଡ଼ିଶା ଦରବାରରେ ଉଗ୍ର ବିଜାତୀୟ ପ୍ରଭାବ ଯୋଗୁ ଅବହେଳିତ ହୋଇ କ୍ରମଶଃ ବିସ୍ମୃତ ହେବାକୁ ଲାଗିଲେ, ଗୁରୁଦେବ ବଲ୍ଲଭଚରଣ ସେତେବେଳେ ବଜ୍ରନିର୍ଘୋଷ ସ୍ୱରରେ ଏହାର ପ୍ରତିବାଦ କଲେ । ଓଡ଼ିଶାରେ ସାହିତ୍ୟ ଜଗତରେ ବିପ୍ଲବ ସୃଷ୍ଟି କରି ଓଡ଼ିଆ ପ୍ରାଣରେ ଏହି କବିମାନଙ୍କୁ ପୁନଃ ପ୍ରତିଷ୍ଠିତ କଲେ । କେବଳ ଏତିକି କରି ସେ ସନ୍ତୁଷ୍ଟ ହୋଇପାରିଲେ ନାହିଁ । ଅନ୍ୟମାନଙ୍କର ଦୃଷ୍ଟି ଆକର୍ଷଣ

କରିବାପାଇଁ ସେ ଅନୁବାଦ କରିବାକୁ ଆଗଭର ହେଲେ । ବିଶାଳ ହୃଦୟର ଅଧିକାଂଶ ବିଚ୍ଛନ୍ଦଚରଣ ସଂକୀର୍ଣ୍ଣମନା ନ ହୋଇ ଅନ୍ୟ ଭାଷାରୁ ସେହି ସବୁ କବିତାର ଅନୁବାଦ କଲେ, ଯାହାର ଚିରନ୍ତନ ମୂଲ୍ୟ-ବୋଧ ରହିଛି, ବୌଦ୍ଧିକ ସତ୍ତା ରହିଛି । ତାଙ୍କର ଇଚ୍ଛା ଥିଲି ଓଡ଼ିଆ ଭାଷାରେ ଓଡ଼ିଆ କବିମାନଙ୍କ ମଧ୍ୟରେ ସଂକୀର୍ଣ୍ଣତା ନ ରହୁ । ଏଠାରେ ସବୁ ସାହିତ୍ୟର, ସବୁ ସଂସ୍କୃତିର, ସବୁ ଧର୍ମର ସମନ୍ୱୟ ହେଉ ଅଥଚ ନିଜର ନିଜସ୍ୱ ସତ୍ତା ଠିକ ବଜାୟ ରହୁ ।

କିନ୍ତୁ କାଳର କୁଟିଳ ଗତିର ଶରବ୍ୟ ହୋଇ ଜୀବନର ଶେଷ କେତେବର୍ଷ ରୋଗରେ ପ୍ରପୀଡ଼ିତ ହୋଇ ଗୁରୁଦେବ ଶଯ୍ୟାଶାୟୀ ହେଲେ । ତାଙ୍କର ଏ ଅମର କୀର୍ତ୍ତି ପରିପୂର୍ଣ୍ଣତା ଲାଭ କରିପାରିଲା ନାହିଁ । ବହୁ କାର୍ଯ୍ୟ ସେ ଆରମ୍ଭ କରି ଯାଇଛନ୍ତି । ବହୁ ଦିଗର ସେ ସନ୍ଧାନ ଦେଇଯାଇଛନ୍ତି । ଆଜିର ଓଡ଼ିଆ ଭାଷାପ୍ରେମୀ, ଜାତିପ୍ରେମୀ, କଳିଙ୍ଗର କବି, ଲେଖକ, ଯୁବକ, ସଂଗଠକମାନେ ତାଙ୍କର ପଥର ପଥିକ ହୁଅନ୍ତୁ; ତାଙ୍କର ଆହ୍ୱାନର ପ୍ରତିଧ୍ୱନି ଦିଅନ୍ତୁ, ତାଙ୍କର ଅପୂର୍ଣ୍ଣ କାର୍ଯ୍ୟରେ ପୂର୍ଣ୍ଣତା ଆଣନ୍ତୁ; ଓଡ଼ିଆ ସାହିତ୍ୟ ନୂତନ ଦୀପ୍ତିରେ ଉଦ୍‌ଭାସିତ ହେଉ, ବିଶ୍ୱବନ୍ଦିତ ହେଉ ।

—ଜୟ ମା କଳିଙ୍ଗଭାରତୀ



ମାତଃ ! ଭାରତୀ ଗୋ ! ଏ ଦେଶେ କରୁଣା କର
ବଲ୍ଲକୀ କରେ ମା ! ତ୍ରିଦିବ ଧାମରୁ ମଧୁମାସେ ଅବତର । ଘୋଷା ।
ତୁମ୍ଭର କରୁଣା ହେବାରୁ ମା ଊଣା !
ଉନ୍ନତ ମଉଳି ତାର
ଅବନତ ଆଜି ଯାଇଛିଟି ଭାଜି
ହେମ-କିରୀଟ ଶିରର । ୧ ।

—ବିଚ୍ଛନ୍ଦ ଚରଣ

# ବିଦଗ୍ଧଗୁରୁ ବିଚ୍ଛନ୍ଦଚରଣ

ଡା: ଅଜିତକୁମାର କର, ଏମ୍.ଡି.

କାଲିପରି ମନେ ହେଉଛି । ପୂଜ୍ୟ ଗୁରୁଦେବଙ୍କର ଏକମାତ୍ର ପୁତ୍ର ମୋର ପରମବନ୍ଧୁ ଓ ସହପାଠୀ ଶ୍ରୀ ପୁରୁଷୋତ୍ତମଙ୍କ ସହ ଯେତେବେଳେ ଏକତ୍ର ମାଟ୍ରିକ୍ୟୁଲେସନ୍ ପରୀକ୍ଷା ପାଇଁ ପ୍ରସ୍ତୁତି ଚାଲିଥାଏ, ମଝିରେ ମଝିରେ ଗୁରୁଦେବ ଆମର ଜ୍ଞାନ ପରୀକ୍ଷା କରିବା ପାଇଁ ପ୍ରଶ୍ନ ପଚାରୁଥିଲେ । ଆମର ଦୁର୍ବଳତାକୁ ଦୂର କରିବା ପାଇଁ ଏଭଳି ସବୁ ସହଜ ଉପାୟ ଓ ଅଭ୍ୟାସମାନ ବତାଉଥିଲେ ମୁଁ କାହାଠାରୁ ଏ ପର୍ଯ୍ୟନ୍ତ ଶିକ୍ଷା କରିପାରି ନ ଥିଲି । ଆମର ଇଂରାଜୀରେ ଶବ୍ଦ ଜ୍ଞାନ ବଢ଼ାଇବା ପାଇଁ ଇଂରାଜୀ ସମ୍ବାଦପତ୍ର-ମାନଙ୍କରୁ ପ୍ରତିଦିନ ପାଞ୍ଚଟି ନୂତନ ଶବ୍ଦ ମନେ ରଖି ତାଙ୍କୁ ଜଣାଇବା ପାଇଁ ଆମ ଦୁହିଁଙ୍କୁ ପ୍ରଥମ ପାଠ ଦିଆଯାଇଥିଲା । କେବଳ ଗଣିତ ଛଡ଼ା ଗୁରୁଦେବଙ୍କର ଅନ୍ୟାନ୍ୟ ଭାଷା, ସାହିତ୍ୟ, ଇତିହାସ ତଥା ଭୂଗୋଳ ସମ୍ବନ୍ଧରେ ଅତି ଅସାଧାରଣ ପ୍ରବେଶ ଥିଲା । ଓଡ଼ିଆ ସାହିତ୍ୟରେ ସେ ଯେତିକି ସମୃଦ୍ଧ ଥିଲେ ଇଂରାଜୀ ସାହିତ୍ୟରେ ତତୋଧିକ ବଳିଷ୍ଠ ଥିଲେ । ତାଙ୍କ ସମୟରେ ହେ ଇଂରାଜୀରେ ସବୁ ପରୀକ୍ଷାରେ ଶତକଡ଼ା ୯୦ରୁ ଅଧିକ ନମ୍ବର ରଖୁଥିଲେ । ତାହା ପୁଣି ଇଂଲିସ୍ ପରୀକ୍ଷକଙ୍କ ନିକଟରେ ।

ଗୁରୁଦେବ ବିଚ୍ଛନ୍ଦଚରଣ ପ୍ରଥମେ ଜଣେ ନିଚ୍ଛକ ଓଡ଼ିଆପ୍ରେମୀ, ସାହିତ୍ୟ ସଂଗ୍ରାମୀ, ନିଷ୍ଠାପର ଜାତୀୟ-ବାଦୀ ରୂପେ ମୋତେ ଆକୃଷ୍ଟ କରିଥିଲେ ଏବଂ ମୁଁ ସେହି ନିରଳସ, ରସିକ କବି ବିଚ୍ଛନ୍ଦଚରଣଙ୍କ ପ୍ରତିଷ୍ଠିତ ଉତ୍କଳ-ଛାତ୍ର-ସାହିତ୍ୟ ସମାଜ ଅନୁଷ୍ଠାନର ସଭ୍ୟରୂପେ ଅଷ୍ଟମ ଶ୍ରେଣୀରେ ଅଧ୍ୟୟନ ସମୟରେ ନିଜକୁ ସାମିଲ କରିଥିଲି । ବିଚ୍ଛନ୍ଦବାବୁଙ୍କ ଉଗ୍ର ଜାତୀୟ ଭାବ, ଅସମ୍ଭବ ସୃଜନାଶକ୍ତି, ଅସାଧାରଣ ବୈଦଗ୍ଧ୍ୟ, ସମ୍ପୂର୍ଣ୍ଣ ଧର୍ମାନୁରାଗ, ବଳିଷ୍ଠ ବ୍ୟକ୍ତିତ୍ୱ ମୋତେ ଅତ୍ୟନ୍ତ ଭାବେ ବିମୁଗ୍ଧ ଏବଂ ବିସ୍ମିତ କରିଦେଇଥିଲା ।

ପରମୁହୂର୍ତ୍ତରେ ବନ୍ଧୁ ପୁରୁଷୋତ୍ତମଙ୍କ ସହ ଗୁରୁଦେବଙ୍କ ନିକଟରେ ସାମୟିକ ଅଧ୍ୟୟନରେ ତାଙ୍କୁ ଜଣେ ଆଦର୍ଶ ଶିକ୍ଷକରୂପେ ସ୍ୱତଃଭାବେ ମାନିନେବାକୁ ବାଧ୍ୟ ହେଲି । ଏପରି ଜଣେ ଗୁରୁଙ୍କ ସାନ୍ନିଧ୍ୟ ମୋ ଜୀବନରେ ପାଇପାରିବି କି ନାହିଁ ମୋର ଆଶଙ୍କା ।

ଓଡ଼ିଆ ଜାତିର ସାହିତ୍ୟ ଓ ସଂସ୍କୃତି ଯେତେ-ବେଳେ ବିଜାତୀୟଙ୍କ ପ୍ରଭାବରେ କୁଣ୍ଠିତ, ଲାଞ୍ଛିତ ଓ ବିଲୁପ୍ତ ହେବାକୁ ଯାଉଥିଲା, କଳିଙ୍ଗଭାରତୀଙ୍କ ଅପାର କରୁଣାରୁ ତାଙ୍କର ବରପୁତ୍ର ଭାବେ ପୂଜ୍ୟ ଗୁରୁଦେବ ବିଚ୍ଛନ୍ଦଚରଣଙ୍କର ଆବିର୍ଭାବ ହୋଇଥିଲା । ସେ ପ୍ରଥମେ ୧୯୨୩ ମସିହାରେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ "ପ୍ରାଚୀ ସମିତି"ରେ ସମ୍ପାଦକ ରୂପେ ଯୋଗ ଦେଇଥିଲେ । ତହିଁରେ ପ୍ରାଚୀନ ସାହିତ୍ୟର ଉଦ୍ଧାର ପାଇଁ ସଫଳ ପ୍ରଚେଷ୍ଟା ହେଉଥିଲା । କିନ୍ତୁ ଆଧୁନିକ ଓଡ଼ିଆ କବିତାଧାରାର ରୂପ ବଦଳାଇବା ପାଇଁ କେହି ଚିନ୍ତା କରୁ ନ ଥିଲେ । ଗୁରୁଦେବ ନିଜେ ଜଣେ ପ୍ରଖ୍ୟାତ କବି ଓ ଅନୁବାଦକ ଥିଲେ । ପ୍ରାଚୀ ସମିତିର ଇଂରାଜୀ ମୁଖପତ୍ର 'ପ୍ରାଚୀ" ପତ୍ରିକାରେ ଓଡ଼ିଶାର କବି, ମହାକବିମାନଙ୍କ କବିତାର ଇଂରାଜି ଅନୁବାଦ ପ୍ରକାଶ କରି ଉତ୍କଳ ସାରସ୍ୱତ ବିଭବକୁ ବିଶ୍ୱ ସମକ୍ଷରେ

ପରିଚିତ କରାଇବା ପାଇଁ ସେ ଆପ୍ରାଣ ଚେଷ୍ଟା ଚଳାଇଥିଲେ ।

ସେ ଉତ୍କଳ ସାହିତ୍ୟ ସମାଜର ସହକାରୀ ସମ୍ପାଦକ ଭାବେ ଛନ୍ଦ ଓ ଓଡ଼ଶୀ ରାଗରେ ଆଧୁନିକ ଭାବଧାରା-ସମ୍ବଳିତ କବିତା ଲେଖି ପ୍ରକାଶ କରିବାର ସୁଯୋଗ ପାଇଥିଲେ । ଏହି କବିତାଗୁଡ଼ିକୁ ତତ୍କାଳୀନ ନିପୁଣ ଗାୟକ ଗାୟିକାଙ୍କ ଦ୍ୱାରା ଗାନ କରାଉଥିଲେ ।

ବିଜାତୀୟତାର ପ୍ରବଳ ପ୍ରଭାବ କବଳରୁ ଜାତୀୟ ପରମ୍ପରାକୁ ରକ୍ଷା କରିବା ନିମନ୍ତେ ଏତିକ ପ୍ରଚେଷ୍ଟା ଆଦୌ ସନ୍ତୋଷଜନକ ପଦକ୍ଷେପ ନୁହେଁ ଭାବି ୧୯୪୩-୪୪ ମସିହାରେ ବିଭିନ୍ନ ଶିକ୍ଷାନୁଷ୍ଠାନର କେତେକ ଛାତ୍ରଙ୍କୁ ନେଇ "ଉତ୍କଳ-ଛାତ୍ର-ସାହିତ୍ୟ-ସମାଜ" ନାମରେ ଗୋଟିଏ ସ୍ୱତନ୍ତ୍ର ଅନୁଷ୍ଠାନ ଗଠନ କରିଥିଲେ । ଏହି ଅନୁଷ୍ଠାନ ମାଧ୍ୟମରେ କୋମଳମତି ବାଳକମାନଙ୍କୁ ଅକ୍ଳାନ୍ତ ପରିଶ୍ରମ କରି ଓଡ଼ିଆ ଜାତି ତଥା କୃଷ୍ଟିର ବୈଶିଷ୍ଟ୍ୟ ଓ କବିମାନଙ୍କର କୃତିର ସମ୍ୟକ ଆଲୋଚନା ଦିନ ଦିନ ଧରି ଶୁଆପରି ଘୋଷାଇଲେ । ଏହି ବାଳକମାନଙ୍କ ମଧ୍ୟରୁ କେତେକ ସଙ୍ଗୀତ ଓ ସାହିତ୍ୟ ରଚନା ଦିଗରେ, କେତେକ ଏହାକୁ ସୁଲଳିତ କଣ୍ଠରେ ଗାନ କରିବାରେ ଓ କେତେକ ବିଶିଷ୍ଟ ବକ୍ତାଭାବେ ତାଲିମପ୍ରାପ୍ତ ହେବାକୁ ଲାଗିଲେ । ଗୁରୁଦେବ ଏମାନଙ୍କୁ ତାଲିମ ଦେବାରେ ଆପ୍ରାଣ ବ୍ରତୀ ହୋଇ ନିଜେ ନିଜର ଅସାଧାରଣ ସୃଜନୀ-ଶକ୍ତିକୁ ଭୁଲି ଯାଇଥିଲେ । ଏପରିକି ବେଳେ ବେଳେ ନିଜର ଖାଦ୍ୟପେୟ ଭୁଲି ଯାଉଥିଲେ । ବିଜାତୀୟତା ବିରୁଦ୍ଧରେ ଜାତୀୟବାଦୀ ବାଳସେନା ଗଠନ କରିବାରେ, ବାଳସେନାଙ୍କ ପରିବାର ତରଫରୁ ଏବଂ ତଥାକଥିତ ସାହିତ୍ୟିକଙ୍କର ଅତି କଟୁ ସମାଲୋଚନାର ଶରବ୍ୟ ହୋଇଥିଲେ । ମାତ୍ର ତାଙ୍କର ସାଧୁ ଉଦ୍ୟମକୁ ଏହି ସାମାନ୍ୟ ବ୍ୟାଘାତ ଛଳେହେଲେ ବିଚଳିତ କରିପାରି ନ ଥିଲା । ଆଜି ସେହି ବାଳସେନାଙ୍କ ଅଭିଭାବକମାନେ ସୁନିଗୁଣରେ ଗୌରବାନ୍ୱିତ ମନେ କରୁଛନ୍ତି ।

ପରିଶେଷରେ ବିଚ୍ଛନ୍ଦବାବୁଙ୍କ ସ୍ୱପ୍ନ ଅନେକାଂଶରେ ସଫଳ ହେବାରେ ଲାଗିଲା । ବିଜାତୀୟମାନେ ପେଚକ ପରି ଲୁଚି ରହି ମଝିରେ ମଝିରେ ରାବ ଦେବାକୁ ଲାଗିଲେ ।

ତାଙ୍କ ଜୀବଦ୍ଦଶା ମଧ୍ୟରେ ସେ ବହୁ ରସାଳ କବିତା, ପ୍ରବନ୍ଧ ରଚନା ଓ ଅନୁବାଦ କରିଯାଇଛନ୍ତି । ତନ୍ମଧ୍ୟରୁ ଭାବିନୀ ଭାବନା, ଗୀତକଳ୍ପତରୁ, ଆଦ୍ୟ ଅର୍ଘ୍ୟ, କବିତା କୁମୁଦ, କବିସ୍ପର୍ଶୀ ସୋଭେନିର (ଇଂରାଜୀ ଅନୁବାଦ), ଜଗନ୍ନାଥ ଜଣାଣ ଭଜନ (୧୦୮ଟି ଜଣାଣ ସଞ୍ଚୟ କରି ସଂକଳନ) ଅତ୍ୟନ୍ତ ସୁନ୍ଦର ହୋଇଛି । ମାତ୍ର ଶାରୀରିକ ଦୁର୍ବଳତା ତାଙ୍କର ଉଦ୍ୟମକୁ ବାରମ୍ବାର ପଣ୍ଡ କରିବାକୁ ଚେଷ୍ଟା କରି ମଧ୍ୟ ହାରି ମାନି ଯାଇଥିଲା । ବହୁମୂତ୍ର ରୋଗୀ ହିସାବରେ ତାଙ୍କର ଶରୀର ପ୍ରତି ଯଥେଷ୍ଟ ଯତ୍ନ ନେବା କଥା; ମାତ୍ର ଜାତୀୟ ସ୍ୱାର୍ଥ ଆଗରେ ବ୍ୟକ୍ତିଗତ ସ୍ୱାର୍ଥକୁ ଜଳାଞ୍ଜଳି ଦେବା ବ୍ୟକ୍ତି ହିସାବରେ ସେ ଅଦ୍ୱିତୀୟ । ବହୁବାର ସେ ଉଗ୍ର ଜାତୀୟଭାବ ପ୍ରକାଶ କରି ସଂକୀର୍ଣ୍ଣ ମନୋଭାବ ପୋଷଣ କରୁଛନ୍ତି ବୋଲି ସମାଲୋଚିତ ହୋଇଛନ୍ତି । ମାତ୍ର ଏହାର ଉତ୍ତରରେ ସେ ସବୁବେଳେ କହି ଆସୁଥିଲେ, "ନିଜ ଘରକୁ ନ ସଜାଡ଼ି ଅନ୍ୟମାନଙ୍କ ଘରର ଆଦର୍ଶ ବିଷୟରେ ଉପଦେଶ ଦେବା ବାତୁଳର ପରିଚାୟକ ।" ନିଜର ନିଜତ୍ୱ ରହିଲେ ବାହାରେ ଆପେ ଆପେ ଆଦର ବଢ଼ିବ ।

ଓଡ଼ିଆ ଜାତିର ସମ୍ମାନକୁ ବିଭିନ୍ନ ସ୍ତରରେ ଉନ୍ନୀତ କରିବାକୁ ହେଲେ ତାଙ୍କ ଶିଷ୍ୟମାନେ ବିଭିନ୍ନ ଉଚ୍ଚ ପଦବୀରେ ରହିବା ଆବଶ୍ୟକ ବୋଲି ସେ ସବୁବେଳେ ପରିକଳ୍ପନା କରି ଆସୁଥିଲେ । ଜୀବଦ୍ଦଶାରେ

ତାଙ୍କ କଳ୍ପନା ଅଧିକାଂଶ ଭାବେ ରୂପାୟିତ ହୋଇ-ପାରିଥିଲା । ଶିକ୍ଷା, ସ୍ୱାସ୍ଥ୍ୟ, ଇଞ୍ଜିନିୟରିଂ ବିଭାଗଠାରୁ ଉଚ୍ଚ ଶାସନ ବିଭାଗରେ ମଧ୍ୟ ତାଙ୍କ ଶିଷ୍ୟମାନେ ଅଧିଷ୍ଠିତ ହୋଇପାରିଲେ ।

ସ୍ୱର୍ଗତ ଗୁରୁଦେବ ଏହି ଜାତିକୁ ବିଶ୍ୱ-ଦରବାରରେ ପ୍ରତିଷ୍ଠିତ କରିବା ପାଇଁ ଓଡ଼ିଶୀ ନୃତ୍ୟ ଓ ସଙ୍ଗୀତ ମହାବିଦ୍ୟାଳୟ, ଜାତୀୟ ସାରସ୍ୱତ ଗ୍ରନ୍ଥାଗାର ନିର୍ମାଣ ଏବଂ ସର୍ବୋପରି ନୂତନ ପ୍ରଣାଳୀରେ ସାହିତ୍ୟ ସର୍ଜନାର ଶିକ୍ଷାଦାନ ପାଇଁ ପରିକଳ୍ପନା କରିଥିଲେ ।

ଗୁରୁଦେବଙ୍କ ପ୍ରତିଷ୍ଠିତ ଅନୁଷ୍ଠାନ ଧୀରେ ଧୀରେ ପ୍ରଖ୍ୟାତ ହେବାକୁ ଲାଗିଲା । ଅନୁଷ୍ଠାନ ତରଫରୁ କଟକ ସହରର ମଧ୍ୟସ୍ଥଳରେ ବଡ଼ ବଡ଼ କବି ଓ ସାହିତ୍ୟିକ-ମାନଙ୍କର ଜୟନ୍ତୀ ମହୋତ୍ସବ ଅତ୍ୟନ୍ତ ଆଡ଼ମ୍ବର ସହକାରେ ବହୁ ଜନସମାବେଶରେ ପାଳିତ ହେବାକୁ ଲାଗିଲା । ଓଡ଼ିଶାର ବହୁ ବିଶିଷ୍ଟ ବକ୍ତା, ସଙ୍ଗୀତଜ୍ଞ, ନୃତ୍ୟଶିଳ୍ପୀ, ପାଲା ଓ ଦାସକାଠିଆ ଗାୟକବୃନ୍ଦ ମହୋତ୍ସବର ବିଭିନ୍ନ ଦିବସରେ ଅଂଶ ଗ୍ରହଣ କରି ଓଡ଼ିଆ କବିମାନଙ୍କ କୃତିକୁ ଅଧିକ ଶ୍ରୁତିମଧୁର ଓ ରସସିକ୍ତ କରାଇଲେ । ଆଜି ଓଡ଼ିଶାରେ ସର୍ବତ୍ର ଜାତୀୟ କବିମାନଙ୍କର ଜୟନ୍ତୀ ଅତି ଉନ୍ମାଦନାର ସହ ପାଳନ କରାଯାଉଛି । କହିବା ବାହୁଲ୍ୟ, ଓଡ଼ିଶାର ପ୍ରାୟ ସବୁ ଅନୁଷ୍ଠାନ ଏହି ମାତୃ ଅନୁଷ୍ଠାନର ସାହାଯ୍ୟ, ସହାନୁଭୂତି ଓ ପରାମର୍ଶ ଗ୍ରହଣ କରିଥାଆନ୍ତି । ମୋର ଆଜି ବି ମନେ ପଡ଼ୁଛି ଯେଉଁ ଓଡ଼ିଶାରେ ରବୀନ୍ଦ୍ରଜୟନ୍ତୀ ସମସ୍ତ ସରକାରୀ ଓ ବେସରକାରୀ ସାହାଯ୍ୟରେ କଟକର ହୃଦୟସ୍ଥଳୀରେ ଅତି ଆଡ଼ମ୍ବର ସହକାରେ ପାଳିତ ହେଉଥିଲା ଏବଂ ସେହି ଜୟନ୍ତୀସ୍ଥଳରେ ଓଡ଼ିଶା ରାଜ୍ୟର ଓଡ଼ିଆ ଜାତି ଓ କବିଙ୍କୁ ଉପହାସ କରାଯାଉ-ଥିଲା, ତାହାର ପ୍ରତିବାଦରେ ଗୁରୁଦେବ ଭଞ୍ଜ ଜୟନ୍ତୀର ପ୍ରବର୍ତ୍ତନ କରିଥିଲେ । ଏଥିପାଇଁ ସାହାଯ୍ୟ ପରିବର୍ତ୍ତେ ସମାଲୋଚନାର ସମ୍ମୁଖୀନ ହେବାକୁ ପଡ଼ିଥିଲା । କିନ୍ତୁ ଆଜି ଅବସ୍ଥା ଠିକ୍ ଓଲଟି ଯାଇଛି କେବଳ ଗୁରୁଦେବଙ୍କ ଅଟଳ ବିଶ୍ୱାସ, ଅସୀମ ଧୈର୍ଯ୍ୟ ଓ ଅସମ୍ଭବ ଧୀଶକ୍ତି ବଳରେ । ଅନ୍ତତଃ ଆଜି ଓଡ଼ିଆ ଜାତି ନିଜ ରାଜ୍ୟରେ ନିଜର ସମ୍ମାନ ରକ୍ଷା କରିବାକୁ ସମର୍ଥ ହୋଇପାରିଛି ।

ତାଙ୍କର ଶାରୀରିକ ଅବସ୍ଥା ଧୀରେ ଧୀରେ ତାଙ୍କୁ ଦୁର୍ବଳ କରି ପକାଇଲା । ସେ ଆଉ ବେଶୀ ଦିନ ପ୍ରକୃତି ବିରୁଦ୍ଧରେ ସଂଗ୍ରାମ କରିପାରିଲେ ନାହିଁ । ୧୯୬୧ ମସିହା ଜାନୁଆରୀ ମାସରେ କଟକ ମେଡ଼ିକାଲ କଲେଜରେ ଗୀତା ପାଠ ଶୁଣୁ ଶୁଣୁ ଶେଷ ନିଃଶ୍ୱାସ ତ୍ୟାଗ କଲେ ।

ଗୁରୁଦେବଙ୍କର ଜୀବଦ୍ଦଶା ମଧ୍ୟରେ ସାନ୍ନିଧ୍ୟ ଲାଭ କରିବାର ଯେଉଁ ଅପୂର୍ବ ସୁଯୋଗ ପାଇଥିଲି, ତାଙ୍କ ମୃତ୍ୟୁ ପରେ ମୋର ଏକ ଦୁରାରୋଗ୍ୟ ଅବସ୍ଥାରେ ସ୍ୱପ୍ନରେ ଅତି ଅଭୂତଭାବେ ଦର୍ଶନ କରି ରୋଗରୁ ଉପଶମ ଲାଭ କଲି । ମୁଁ ମୋର ରୋଗ ଅବସ୍ଥାରେ ବଡ଼ ବିକଳରେ ଭଗବାନଙ୍କୁ ପ୍ରାର୍ଥନା କରୁଥାଏ । କୌଣସି ଔଷଧ ପ୍ରାୟ କାମ କରୁ ନ ଥାଏ । ମୁଁ କିନ୍ତୁ ଗୁରୁଦେବଙ୍କୁ ଭୁଲେ ମାତ୍ର ସ୍ମରଣ କରିନାହିଁ । ହଠାତ୍ ଦିନେ ରାତିରେ ଗୁରୁଦେବଙ୍କୁ ସ୍ୱପ୍ନ ଦେଖିଲି । ସେ ସାଧାରଣ ଦୈନନ୍ଦିନ ଘରୋଇ ପୋଷାକ ଯଥା, ଖାଲି ଦେହରେ ନାଲି ଗାମୁଛାଟି ପରିଧାନ କରି ମୋ ମୁଣ୍ଡ ପାଖରେ ହସ ହସ ମୁଖରେ ଆସି ବସି ମୋ ମୁଣ୍ଡକୁ ଆଉଁସି କହିଲେ, "ବାପା, ବ୍ୟସ୍ତ ହୋ ନା । ତୋ ରୋଗ ଶୀଘ୍ର ଭଲ ହୋଇଯିବ ।" ସେ କଥାରେ ଯେଉଁଭଳି ଆତ୍ମୀୟତା, ସ୍ପର୍ଶରେ ଯେପରି ସ୍ନିଗ୍ଧତା ଥିଲା ତାହା ଭାଷାରେ ଅବର୍ଣ୍ଣନୀୟ । କହିବା ବାହୁଲ୍ୟ ଯେ କିଛିଦିନ ପରେ ସାମାନ୍ୟ ଔଷଧରେ ମୁଁ ସମ୍ପୂର୍ଣ୍ଣ ସୁସ୍ଥ ହୋଇଗଲି ।

ଗୁରୁଦେବଙ୍କୁ ମୁଁ ସ୍ମରଣ କରି ନ ଥିଲେ ମଧ୍ୟ ସେ ନିଜେ ତାଙ୍କର ଆଶୀର୍ବାଦ ଦେଇ ଅନ୍ତର୍ଦ୍ଧାନ ହୋଇଗଲେ । ଜୀବଦ୍ଦଶାରେ ତାଙ୍କର ଭଗବତ୍ ବିଶ୍ୱାସ ବଡ଼ ଅଖଣ୍ଡ ଥିଲା । ସ୍ୱପ୍ନ ପରଠାରୁ ତାଙ୍କୁ ଭଗବାନଙ୍କର ଏକ ସ୍ୱତନ୍ତ୍ର ଅବତାର ରୂପେ ମୋତେ ପ୍ରତୀୟମାନ ହେଲା । ଅବଶ୍ୟ ଏ କଥା ମୁଁ ଏପର୍ଯ୍ୟନ୍ତ କାହାଆଗେ ପ୍ରକାଶ କରି ନ ଥିଲି ।

ଗୁରୁଦେବଙ୍କ କଳ୍ପନାକୁ ରୂପାୟିତ କରିବାରେ ଏ ଅଧମ ବିଶେଷ କିଛି କରିପାରିନାହିଁ । ଆଜି ତାଙ୍କ ଜୟନ୍ତୀବାସରରେ ବିନମ୍ର ପ୍ରାର୍ଥନା କରିବାର ସୁଯୋଗ ହିଁ କେବଳ ଜୀବନର ସାର୍ଥକତା ରୂପେ ଅନୁଭବ କରୁଛି । ଜଣେ ମହାନ୍ ବ୍ୟକ୍ତିଙ୍କର ନଗଣ୍ୟ ଶିଷ୍ୟରୂପେ ସ୍ଥାନ ପାଇପାରିଥିବାରୁ ନିଜକୁ ଧନ୍ୟ ମନେ କରିବା ସଙ୍ଗେ ସଙ୍ଗେ ଏ ଜାତିର ସଂଗ୍ରାମୀ ଯୋଦ୍ଧା ଗୁରୁଦେବ ବିଚ୍ଛନ୍ଦଚରଣଙ୍କ ପ୍ରତି ପ୍ରତ୍ୟେକ ଓଡ଼ିଆର ଦୃଷ୍ଟି ଆକର୍ଷଣ କରୁଛି । ଆଜି ଯଦି ନିଜକୁ ଓଡ଼ିଆ ବୋଲି କହିବାକୁ କିଏ ଅଧିକାର ଦେଇଥାଏ, ତେବେ ସେହି ଗୁରୁଦେବଙ୍କର ଅଦମ୍ୟ ଉଦ୍ୟମ ଓ ଆଶୀର୍ବାଦର ସୁଫଳ ବୋଲି ଧରିନେବାକୁ ଆମେ ବାଧ୍ୟ । କାରଣ ଓଡ଼ିଆ ଜାତି ଓ ଭାଷାକୁ ପ୍ରତିଷ୍ଠିତ କରାଇବା ପାଇଁ ସମସ୍ତ ପ୍ରତିବନ୍ଧକ, ନିଜର ଗୃହକଣି, ପାରିବାରିକ ସୁଖ ଓ ନିଜର ସ୍ୱାସ୍ଥ୍ୟକୁ ଜଳାଞ୍ଜଳି ଦେଇ ସେ ଯେଉଁ ତ୍ୟାଗ କରି ନିଜେ ସଳିତା ପରି ଜଳି ଯାଇଛନ୍ତି, ତାଙ୍କ ସଂସ୍ପର୍ଶରେ ଆସିଥିବା ତଥା ସମସାମୟିକ ବ୍ୟକ୍ତି ନିଶ୍ଚିତ ଭାବେ ମୁକ୍ତ କଣ୍ଠରେ ସ୍ୱୀକାର କରିବେ । ଯେଉଁମାନେ ଏହା ଜାଣିନାହାନ୍ତି, ସେମାନେ ଓଡ଼ିଶା ଇତିହାସର ପୃଷ୍ଠା ଉନ୍ମୋଚନ କରି ଏ ମହାନ୍ ବ୍ୟକ୍ତିଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବାକୁ ମୋର ଅନୁରୋଧ ।

"ଜୟ ମା କଳିଙ୍ଗ ଭାରତୀ"



ଗାଉଛି ଉତ୍କଳ ପରିସଙ୍ଗୀତ
ନ ଜାଣୁଛି ନିଜେ ନିଜର ବିତ୍ତ,
ସେ କାଳ ବିପଞ୍ଚୀ ଏ କାଳ ତାନ
ଯୋଗ ବିନା ଧମା ହାରୁଛି ମାନ
ଛନ୍ଦ କଳ୍ପତରୁ ତଳେ ଯେ
ରହି ରସସୁଧା ନ ମେଣ୍ଟୁଛି ତାର
ଭାଗ୍ୟେ ବଳିବ କେ ବଳେ ଯେ ?

—ବିଚ୍ଛନ୍ଦ ଚରଣ

# ବିଚ୍ଛନ୍ଦଚରଣ କାବ୍ୟମାନସ

**ଅଧ୍ୟାପକ ଶ୍ରୀ ସୁଧୀରଚନ୍ଦ୍ର ମହାନ୍ତି**

କଳିଙ୍ଗପ୍ରାଣ ବିଚ୍ଛନ୍ଦଚରଣ (୧୯୦୧—୧୯୬୦)ଙ୍କର ଦେହରୁ ହେଲାବେଳକୁ 'ଇନ୍ଦ୍ରଧନୁ' ବିଜୁଳିର ସଂଘର୍ଷ ଏକାବେଳକେ ମଳିନ ପଡ଼ିଆସିଲାଣି ସତ; ମାତ୍ର ସେତେବେଳକୁ ରବୀନ୍ଦ୍ର ପ୍ରତିଭାରେ ସାରା ବିଶ୍ୱ ଆଲୋକିତ । ଏଣୁ ବିଶ୍ୱକବି ରବୀନ୍ଦ୍ରନାଥ ଯେତେବେଳେ ସବୁଜ ଯୁଗର ସ୍ୱପ୍ନବିଳାସୀମାନଙ୍କୁ ଆକୃଷ୍ଟ କରନ୍ତି, ପ୍ରାଚୀନ ପରମ୍ପରାର ସାହିତ୍ୟ-କୋଣାର୍କ ସେଇଦିନ ଖଣ୍ଡ ଖଣ୍ଡ ହୋଇ ଖସିପଡ଼େ ।

ଓଡ଼ିଶାରେ ବିଚ୍ଛନ୍ଦଚରଣ ହେଉଛନ୍ତି ହୁଏ ତ ପ୍ରଥମ ବ୍ୟକ୍ତି ଯେ କି ସବୁଜ ସାହିତ୍ୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ତାଙ୍କର 'ସବୁଜପତ୍ରୀ' ପ୍ରକୃତରେ ଥିଲା ସେ ଯୁଗର କବିମାନଙ୍କ ପ୍ରତି ତୀକ୍ଷ୍ଣ ଶର । ଏହାର ଅର୍ଥ ନୁହେଁ ଯେ ବିଚ୍ଛନ୍ଦଚରଣ ରକ୍ଷଣଶୀଳ ଥିଲେ, ବରଂ ସେ ଥିଲେ ପରଂପରାର ଏକନିଷ୍ଠ ଉପାସକ । ନଗ୍ନ ଆଧୁନିକତାକୁ ସେ ଘୃଣା କରୁଥିଲେ ।

୧୯୩୦ ମସିହାରୁ ସେ 'ପ୍ରାଚୀ ସମିତି' ସହିତ ଓତପ୍ରୋତ ଭାବରେ ଜଡ଼ିତ ହୋଇଥିଲେ । ଏଇ ସମୟରେ ସେ ଏକାଧାରରେ ପ୍ରାଚୀ ପତ୍ରିକାର ସମ୍ପାଦକ, ପ୍ରେସର ସୁପରିନ୍‌ଟେଣ୍ଡେଣ୍ଟ ଥାଇ ମଧ୍ୟ 'ଗୁରୁଭକ୍ତି ଗୀତା', 'ଜୟକୃଷ୍ଣ ଭଜନ', 'ଚଉତିଶା ମଧୁଚକ୍ର', 'ସାଧୁଗୀତି', 'ଖାଡ଼ାଙ୍ଗା ଭାଗବତ', 'ଶଶିରେଖା' ପ୍ରଭୃତି କାବ୍ୟ ଓ ପଦାବଳୀର ସଂକଳନ ତଥା ସଂପାଦନା କରିଥିଲେ ।

ଏହି ବହୁମୁଖୀ କାର୍ଯ୍ୟକଳାପ ମଧ୍ୟରେ ବିଚ୍ଛନ୍ଦଚରଣଙ୍କର ଲେଖନୀ ଅଜସ୍ରସ୍ରାବୀ ଥିଲା । ଅବସର ସମୟରେ ସେ କବିତା ଓ ଗୀତମାନ ରଚନା କରୁଥିଲେ । ତାଙ୍କର ସମସ୍ତ କବିତା ପ୍ରାଚୀନ ରାଗରାଗିଣୀ, ଛନ୍ଦ ଓ ବାଣୀରେ ରଚିତ । ଆଧୁନିକ ମୁକ୍ତଛନ୍ଦକୁ ସେ ଘୃଣା କରୁଥିଲେ । ସେ ଲେଖିଥିଲେ—

"ଉତ୍କଳର ଆଧୁନିକ ଯୁଗର କବିମାନେ ମଧ୍ୟ ସନେଟ ଅଥବା ବଙ୍ଗଳା ଅନୁକରଣରେ ସଙ୍ଗୀତହୀନ-ଛନ୍ଦ ବିଶିଷ୍ଟ କବିତା ଲେଖିବାକୁ ଶ୍ଳାଘାର ବିଷୟ ମନେକରୁଅଛନ୍ତି । କିନ୍ତୁ ହାୟରେ ଦେଶଜାତ ଚଉତିଶା ! ସେମାନଙ୍କର ନାସିକା କୁଞ୍ଚନ କେବଳ ତୋ'ର ପାଇଁ ସଞ୍ଚିତ ଥାଏ" (ଚଉତିଶା ମଧୁଚକ୍ର ପ୍ରଥମ ଖଣ୍ଡ) ।

ପୁଣି ଅନ୍ୟତ୍ର ସେ କହନ୍ତି—

× × "ସେମାନେ ଅବଶ୍ୟ ଅବଗତ ଯେ ଉତ୍କଳୀୟ ପ୍ରାଣ ଉପରେ ଏହି ସଙ୍ଗୀତପ୍ରିୟତା ଓ ଛନ୍ଦବିଳାସପ୍ରବଣତାର ପ୍ରଭାବ ସର୍ବଦା ଅକ୍ଷୁଣ୍ଣ । ବିଶେଷ କହିବା ବାହୁଲ୍ୟ, ସ୍ୱାମୀଗୃହ ଗମନୋଦ୍ୟତା ଉତ୍କଳକୁମାରୀର କ୍ରନ୍ଦନ ମଧ୍ୟ ଛନ୍ଦବଦ୍ଧ ।

ବିଚ୍ଛନ୍ଦ ଚରଣଙ୍କର 'କବିତା କୁମୁଦ' ୧୯୪୬ ମସିହାରେ କଳିଙ୍ଗଭାରତୀ ଦ୍ୱାରା ଓ 'ଭାବିନୀ ଭାବନା' ୧୯୫୯ ମସିହାରେ ରାଷ୍ଟ୍ରଭାଷା ପୁସ୍ତକ ଭଣ୍ଡାର ଦ୍ୱାରା ପ୍ରକାଶିତ ହୋଇଅଛି । ଏହା ବ୍ୟତୀତ 'ଶତପତ୍ର'

ଅନୁବାଦ ଗ୍ରନ୍ଥ 'ବାନସ୍ପ ପତ୍ରିକା' 'ତୁଳସୀ ରାମାୟଣ' ମଧ୍ୟ ସେ ରଚନା କରିଯାଇଅଛନ୍ତି । ଶିଶୁମାନଙ୍କ ପାଇଁ ରଚିତ କାହାଣୀ ଗ୍ରନ୍ଥମାଳା 'ଭକ୍ତମୋହନ' ଓ 'ଭକ୍ତ ଚନ୍ଦ୍ର ହାସ' ମଧ୍ୟ ଅନ୍ୟତମ ବିଶେଷ ସୃଷ୍ଟି ।

କବିଙ୍କ ପରିଚୟର ସଂପୂର୍ଣ୍ଣ ସ୍ୱାକ୍ଷର ବହନ କରିଛି ତାଙ୍କର 'କବିତା କୁମୁଦ' ପଦାବଳୀ ସଂକଳନ। ଏଥିରେ ୧୦୧ ଗୋଟି କବିତା ପ୍ରକାଶ ପାଇଛି । ତନ୍ମଧ୍ୟରୁ 'ପୂଜାଡାଲି', 'ମାଆ କରୁଣା ନାହିଁ କି', 'ଭାରତୀ ବନ୍ଦନା', ପ୍ରଭୃତି ନଅ ଗୋଟି ଭଜନ ଓ ଜଣାଣ; 'ଆଦ୍ୟଭେଟେ' 'ଲୋତକାଭିଷେକ', 'ତୁ ଏବେଶ ହୋଇବୁ ନାହିଁ', ପ୍ରଭୃତି ୩୧ ଗୋଟି ପ୍ରେମମୂଳକ ଗୀତିକା; 'ଶକୁନ୍ତଳାର ପତିଗୃହ ଯାତ୍ରା' 'ପଲ୍ଲୀବଧୂ' 'ଗୃହଲକ୍ଷ୍ମୀ' ପ୍ରଭୃତି ସାତ ଗୋଟି ବର୍ଣ୍ଣନାମୂଳକ ଗୀତ; 'ଗୋପାଳ ଚନ୍ଦ୍ର', 'ଉତ୍କଳ କେଶରୀ', 'ନନ୍ଦ କିଶୋର', 'ମୋ ସୁନାଗୃହ', ପ୍ରଭୃତି ୨୮ ଗୋଟି ସ୍ମରଣିକା ଓ ଶୋକଗୀତିକା; 'ବର୍ଷା ବିଦାୟ', 'ମୋ ଦେଶ', 'ଖଣ୍ଡାୟତ' ପ୍ରଭୃତି ୧୩ ଗୋଟି ଜାତୀୟତାବୋଧକ ଗୀତ; 'ଶିଶୁରଞ୍ଜନ', 'ଜହ୍ନ' ପ୍ରଭୃତି ତିନଗୋଟି ଶିଶୁଗୀତି; 'ରତ୍ନରେଣୁ', 'ଅଳସର ଦୁର୍ଦ୍ଦଶା', ପ୍ରଭୃତି ଉପଦେଶାତ୍ମକ ଗୀତ ସ୍ଥାନ ପାଇଛି । ଏହା ବ୍ୟତୀତ ତାଙ୍କର 'ଜୀବର ସଂଖାଳ', 'ଜୀବନର ଗୌରବ', 'କେହି ତ ଧରଣୀ ଜନ ଏକାକୀ ନାହିଁ' ପ୍ରଭୃତି କବିତାରେ କବିଙ୍କର ଜୀବନଦର୍ଶନ ପ୍ରତିଫଳିତ । ଏହି କବିତା-ମାନଙ୍କ ମଧ୍ୟରେ କେତେଗୋଟି ଅନୁବାଦ କବିତା କବିଙ୍କର ସ୍ୱକୀୟ ଭାବସଂପଦଦ୍ୱାରା ପୁଷ୍ଟଳ । ଏହା ସ୍ୱତନ୍ତ୍ର ପର୍ଯ୍ୟାୟରେ ଆଲୋଚିତ ହେବ ।

ବିଚ୍ଛନ୍ଦ ଚରଣ ପ୍ରକୃତରେ ଥିଲେ କଳିଙ୍ଗପ୍ରାଣ । ଉତ୍କଳ ସାହିତ୍ୟର ଦୁର୍ଦ୍ଦଶା ଓ ପ୍ରାଚୀନ ପରଂପରା ପ୍ରତି ଜନ ବିମୁଖତା ଦେଖି ତାଙ୍କର ଅନ୍ତର କାନ୍ଦି ଉଠୁଥିଲା । ନିଜର ଦୃଷ୍ଟିବଳରେ ଯେଉଁ ଉତ୍କଳ ଧିନେ ତାର ନାମକୁ ସାର୍ଥକ କରିଥିଲା, ତାର ଐତିହ୍ୟ ଓ ପରଂପରା ଯୋଗୁଁ ଦେଶ ବିଦେଶରେ ସମ୍ମାନିତ ହେଉଥିଲା, ତାହାର ଉତ୍ତର ଦାୟାଦମାନେ ପାଶ୍ଚାତ୍ୟ ଭାବନାରେ ବୁଡ଼ି ଉତ୍କଳ-ବୀଣାପାଣିଙ୍କର ଅବମାନନା କରୁଅଛନ୍ତି— ଏହା ଥିଲା କବିଙ୍କର ନିରନ୍ତର ଆକ୍ଷେପୋକ୍ତି । ବ୍ୟାସକବି ଫକୀର ମୋହନ ଓ ମଧୁସୂଦନ ଦାସଙ୍କ ପରେ ବିଚ୍ଛନ୍ଦ ଚରଣ ହିଁ ଏ ତ ତୃତୀୟ ସଚେତନ କର୍ମୀ ଓ ଶିଳ୍ପୀ ଯାହାଙ୍କ ହୃଦୟରେ ଏଇ ଦାରୁଣ ଆଘାତ ଲାଗିଥିଲା । ଆଧୁନିକ ସାହିତ୍ୟରେ ଏଇ ନିଷ୍ଠୁର ଅଭାବ ଦେଖି 'ମା କରୁଣା ନାହିଁ କି' କବିତାରେ ସେ ଗାଇ ଉଠିଥିଲେ—

'ବିଶ୍ୱ-ହୃଦତନ୍ତ୍ରୀ ନବୀନ ସଂଗୀତ
ଗାନେ ମା ! ଓଡ଼ିଶା ଭୋକି
ନବଯୁଗ ଗନ୍ଧା ଆଗମେ ତା କରେ
ନ ଦେଲ ମଞ୍ଜୁଳ ରାକ୍ଷୀ' ।

ପ୍ରାଚୀନ ସାହିତ୍ୟ ଓ ସଂସ୍କୃତିକୁ କିପରି ବିକୃତ କରିଯାଉଛି ସେଥିରେ କବି କ୍ଷୋଭ ପ୍ରକାଶ କରିଥିଲେ । ନିମ୍ନରେ ଦେଖନ୍ତୁ—

ଗାଉଛି ଉତ୍କଳ ପରସଂଗୀତ
ନ ଜାଣୁଛି ନିଜେ ନିଜର ବିତ୍ତ
ସେ କାଳ ବିପଞ୍ଚୀ ଏ କାଳ ତାନ
ଯୋଗ ବିନା ଧମ୍ମ ହାରୁଛି ମାନ (ଇତ୍ୟାଦି)
ସେ କାଳ ବିପଞ୍ଚୀ ଏକାଳ ତାନ—

'ଉତ୍କଳ କେଶରୀ', 'କବି ରାଧାନାଥ', 'କବି କଳହଂସ' ପ୍ରଭୃତି କବିତାରେ ଉତ୍କଳର ବରପୁତ୍ର-ମାନଙ୍କର ଜୟଗାନ କରିଥିଲେହେଁ ଏଥିର ଅନ୍ତରାଳରେ ସଂକୀର୍ଣ୍ଣ ପ୍ରାଦେଶିକତାର ମୋହ ନ ଥିଲା । ରବୀନ୍ଦ୍ରନାଥ ଜୟନ୍ତୀରେ ତାଙ୍କର ରଚିତ 'ବିଶ୍ୱକବି ରବୀନ୍ଦ୍ରନାଥ' ପ୍ରାରମ୍ଭିକ ସଂଗୀତ ଭାବରେ ଗୀତ ହେଉଥିଲା ।

ଏଥିରୁ ତାଙ୍କର ମହାଭାରତୀୟ ଚେତନାର ପରିଚୟ ମିଳେ । ଆଲୋଚ୍ୟ କବିତାରେ ନିମ୍ନପରି ଅଛି—

'ଅପସାରି ଆତପ ବାରିଦ ଚନ୍ଦ୍ରାତପ
ଟାଣି ଧରିଛ ନୂଆ ଶୀତକ ହେ'

ଏଣୁ କବି ଯେ ଆଧୁନିକତାକୁ ଘୃଣା କରୁଥିଲେ ତାହା ଭାବିବା ଭୁଲ୍ । ଯେଉଁଠି ସ୍ରଷ୍ଟା ମୌଳିକ ଚିନ୍ତାଧାରାର ପରିବେଷଣ ନ କରି ଅପରକୁ ଅନ୍ଧ ଅନୁକରଣ କରିବେ ଲେ କବି ଥିଲେ ତାର ବିରୋଧୀ ।

ବିଚ୍ଛନ୍ଦଚରଣ ଥିଲେ ଜଣେ ରସିକ କବି । 'କବିତା କୁମୁଦ'ରେ ପ୍ରକାଶିତ ପ୍ରେମମୂଳକ କବିତା ବ୍ୟତୀତ ତାଙ୍କର 'ଭାବିବା ଭାବନା'ରେ ପଚିଶ ଗୋଟି ପ୍ରେମପତ୍ର ଅନୁଧ୍ୟେୟ । ଏହିପରି ଏକଶତ ପତ୍ରାବଳୀ ସେ ରଚନା କରିଥିଲେ ବୋଲି ପୁସ୍ତକର ମୁଖବନ୍ଧରେ ସୂଚନା ଦେଇଅଛନ୍ତି । କବିଙ୍କର ଆଦ୍ୟଯୌବନରେ ପ୍ରଣୟର ଯେଉଁ ବାସ୍ତବ ଅନୁଭୂତି ଥିଲା ତାହା ଏଇ କବିତାମାନଙ୍କରେ ଠାଏଁ ଠାଏଁ ପ୍ରକାଶ ଲାଭ କରିଛି । ଅନୁଭୂତି ସ୍ପର୍ଶ ସାହିତ୍ୟକୁ ଅଧିକ ବାସ୍ତବ କରିଥାଏ । କବି ସ୍ୱୀକାର କରିଅଛନ୍ତି—'ମୋର କବି ବୃତ୍ତି କେତେ ପରିମାଣରେ କଳ୍ପନାକୁ ଘେନି ଏ ରଚନାକୁ ସାର୍ଥକ କରିଛି ତାହା ବିଶ୍ଳେଷଣର ଅଜ୍ଞାତ ।"

ଆଦ୍ୟଯୌବନରେ ଯେଉଁ ମହୀୟସୀ ନବ-ତରୁଣୀଙ୍କ ସହିତ ଗୃହୀତହସ୍ତ ହୋଇଥିଲେ ତାଙ୍କର ଅକାଳ ମୃତ୍ୟୁରେ କବିହୃଦୟ ବିଳାପ କରି-ଉଠିଛି । ଯୁଗଯୁଗ ଧରି ପ୍ରେମିକ ପ୍ରେମିକାର ଏଇ ବିରହ ଦୁଃଖତୋକ୍ତିରେ ସାହିତ୍ୟ ରସସିକ୍ତ ହୋଇ-ଉଠିଛି । 'ଆଦ୍ୟଭେଟି' କବିତାରେ ପ୍ରାଣପ୍ରିୟାର ସ୍ମୃତି ତର୍ପଣ କରି ସେ ଗାଇ ଉଠିଛନ୍ତି—

'କଳପନା-ମହୀରୁହେ ବାସ୍ତବ-ଅଶନି
ଜାଳଦେବ ବନ୍ଧୁଆ ରେ ! ଥିଲି ନାହିଁ ଜାଣି
ଚିର-ବିଚ୍ଛେଦ-ବଜ୍ରଦେ
ଲୁଚିଯାଇ ଥରେ ଆଉ ନ ହୋଇବୁ ଉଦେ ।'

ବିରହର ଏ ଶେଷ ନିର୍ଯ୍ୟାତନା ନୁହେଁ, 'କବିତା କୁମୁଦ'ର ପ୍ରତ୍ୟେକ ପ୍ରେମମୂଳକ କବିତାରେ ଏହାର ନିଃଶବ୍ଦେ ପଦଧ୍ୱନି ଶୁଣିବାକୁ ମିଳେ । 'ବିରହ ବାରମାସୀ', 'ବିଚ୍ଛେଦ ଚଉତିଶା', 'ପ୍ରଭାତେ', 'ଲୋତକାଭିଷେକ' ପ୍ରଭୃତି କବିତାରେ ବିରହର ଦୋହରି ଶବ୍ଦ ମିଳିଥାଏ । ପ୍ରେମିକାର ମରଦେହ ସିନା ମାଟିରେ ମିଶିଯାଏ ମାତ୍ର ତାର ରୂପ ଓ ଗୁଣ ପ୍ରେମିକ ହୃଦୟରେ ଫସିଲ୍ ଭଳି ସାଇତା ହୋଇଥାଏ । ଜୀବନର ପ୍ରତ୍ୟେକ ଅଳସ ମୁହୂର୍ତ୍ତରେ ସେ ଆସି ଉଭା ହୁଏ । ସେଇ ସ୍ୱପ୍ନ, ସେଇ ସ୍ମୃତି ପ୍ରଣୟ ଜୀବନର ପୂଜାଡାଲି । କବି କହନ୍ତି –

"ତୋ ରୂପକୁ ଜପାମାଳି ଗୁଣକୁ ତୋର ସଂଖୀଳି
କଲି ସରି କାମ୍ୟ କିଛି ନ ଦେଖେଁ ଧନ !
ଶ୍ମଶାନ କବଳ ପାଇଁ
ଭକ୍ଷ୍ୟ ନୁହେଁ ଯାହା ତୋର, ଧନ୍ୟ ମୁଁ ତହିଁ ।"

ଏହା ବ୍ୟତୀତ ତାଙ୍କର 'ରତ୍ନମାଳା ପାଖକୁ ମାଧବ', 'କିଶୋର ପାଖକୁ କାମିନୀ', 'ମିନତି ପାଖକୁ ଗୋପ', 'କେଦାର ପାଖକୁ କୁନ୍ଦମାଳା', 'ସ୍ନେହଲତା ପାଖକୁ ବ୍ରଜକିଶୋର' ପ୍ରଭୃତି ପତ୍ରିକାରେ ପ୍ରଣୟର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ କରାଯାଇଛି ।

କବି ବିଚ୍ଛନ୍ଦଚରଣଙ୍କର ଇଂରାଜୀ ଭାଷାରେ ଅଗାଧ ପାଣ୍ଡିତ୍ୟ ଥିଲା । 'ପ୍ରାଚୀ' ପତ୍ରିକାର ଯେ କୌଣସି ସଂଖ୍ୟାରେ ଏହାର ସ୍ୱାକ୍ଷର ସୁସ୍ପଷ୍ଟ । ଉଭୟ ଓଡ଼ିଆ ଓ ଇଂରାଜୀ ଭାଷାରେ ଗଭୀର ପ୍ରବେଶ ଥିବା-ଯୋଗୁଁ ତାଙ୍କର ଅନୁବାଦ ମଧ୍ୟ ସୁନ୍ଦର ହେଉଥିଲା । କବିସମ୍ରାଟ ଉପେନ୍ଦ୍ରଭଞ୍ଜ ଓ କବିସୂର୍ଯ୍ୟ ବଳଦେବ-ରଥଙ୍କ ଲୋକପ୍ରିୟ ଛାନ୍ଦ ଓ ପଦାବଳୀମାନଙ୍କୁ ଇଂରାଜୀରେ ଅନୁବାଦ କରି ସେ ବିଶ୍ୱପାଠକ ପାଇଁ ଉତ୍ସର୍ଗ କରିଯାଇଛନ୍ତି । କେବଳ ସେତିକି ନୁହେଁ, ସେ ଇଂରାଜୀର ଅନେକ କବିତା ଓଡ଼ିଆ ଭାଷାକୁ ଅନୁବାଦ

କରିଛନ୍ତି । ଏଇ ଅନୁବାଦ ପାରଂପାରିକ ଆକ୍ଷରିକ ଅନୁବାଦ ନୁହେଁ । ମନେହୁଏ ମୂଳଲେଖାର ଭାବ ସହିତ କବି ଏକାତ୍ମ ହୋଇ ଯାଇଥିଲେ । ଏଣୁ ସ୍ୱକୀୟ ଭାବସଂପଦରେ ରସାଣିତ ହୋଇ ଏଇ ଅନୁବାଦ କବିତାଗୁଡ଼ିକ ରସମୟ ହୋଇପାରିଛି ।

ପାଠକେ ତାଙ୍କର 'ପ୍ରମଦା ଜୟନ୍ତୁ' କବିତା ପାଠ କରନ୍ତୁ । ମୂଳଲେଖା T. Campbell ଙ୍କ 'Lord Ullin's Daughter'ର ଓଡ଼ିଆ ସଂସ୍କରଣ । ଏହା ବ୍ୟତୀତ "ମୋ ଶିର ସମାଧି ହେଉ ଉରସ ତୋର", 'ସୈନିକର ବିଦାୟ', 'କେହି ତ ଦରିଦ୍ରଜନ ଏକାକୀ ନାହିଁ', 'ପ୍ରିୟା ବିଚ୍ଛେଦ', 'ଜୀବନର ଗୌରବ' ପ୍ରଭୃତି ଅନୁବାଦ କବିତା ମୂଳଭାବକୁ କିପରି ଅକ୍ଷୁଣ୍ଣ କରିପାରିଛି ତାହା ଲକ୍ଷଣୀୟ ।

ଉତ୍କଳୀୟତା ଥିଲି କବିଙ୍କର ପରମ ଆରାଧ୍ୟ ବସ୍ତୁ । ପାରଂପାରିକତାର ସେ ଥିଲେ ଭକ୍ତ ଓ ପ୍ରଚାରକ । ଏଣୁ ସେ ପ୍ରତ୍ୟେକ କବିତା ପ୍ରାଚୀନ ରାଗ, ରାଗିଣୀ, ଛନ୍ଦ କିମ୍ବା ବୃତ୍ତରେ ଲେଖିଯାଇଛନ୍ତି । ଏଇ ଛନ୍ଦ କିମ୍ବା ବୃତ୍ତ ବ୍ୟବହାରବେଳେ କବିତାର ଭାବକୁ ମୂଳକରି ଗ୍ରହଣ କରିଥିବାରୁ ଏହା ଭାବାନୁସାରୀ ହୋଇପାରିଛି । ସେ ଶଙ୍କରାଭରଣ, ଭୈରବୀ, ରସକୁଲ୍ୟା, କାମୋଦୀ, ମାଳବଗୌଡ଼ା ପ୍ରଭୃତି ଲୋକପ୍ରିୟ ରାଗ ତଥା 'ଶ୍ୟାମ ନାଗର ହେ ଏ ବେଶ ହୋଇବ ନାହିଁ', 'ଶ୍ୟାମ ସମ କମନୀୟ ନାହିଁ ଆଉ', 'ଶ୍ରୀରାଧା ବାଉଳୀ', 'ଧୀରେ ରାଧା କର ଧର', 'ଶିଂଶପା ବୃକ୍ଷର ଡାଳେ' ପ୍ରଭୃତି ଛାନ୍ଦର ବୃତ୍ତକୁ ତାଙ୍କ କବିତା ପଦାବଳୀ ଓ ଛାନ୍ଦମାନଙ୍କରେ ବ୍ୟବହାର କରିଅଛନ୍ତି । ଆଧୁନିକ ଛନ୍ଦହୀନ କବିତା ପ୍ରତି ତର୍ଜନୀ ନିକ୍ଷେପ କରି କବି ଅନ୍ୟତ୍ର କହିଛନ୍ତି—

"ଓଡ଼ିଶାର ଆଧୁନିକ ଓ ଅତ୍ୟାଧୁନିକ କବିମାନେ ଏ ମହାର୍ଘ ଭଣ୍ଡାର ପ୍ରତି ଶ୍ରଦ୍ଧାଶୀଳ ନ ହୋଇ ଓଡ଼ିଆ କଣ୍ଠ ଓ ଓଡ଼ିଆ କର୍ଣ୍ଣ ଯେଉଁ-ସବୁ ଛନ୍ଦୋହୀନ ସ୍ୱର-ସରଣୀ ସହିତ ଅପରିଚିତ ତାହାକୁ ହିଁ ନିଜ ନିଜର କବିଭାବର ବାହନ କରିବାରେ ଲାଗିଅଛନ୍ତି ଓ ଏ ପ୍ରଯତ୍ନ ବିରୁଦ୍ଧରେ ଏତାବତ୍ ପ୍ରକଟିତ ଜାତୀୟ ଅନ୍ତରାତ୍ମାର ବିଦ୍ରୋହ ସେମାନଙ୍କ ପ୍ରତି ପର୍ଯ୍ୟାପ୍ତ ଚେତାବନୀ ହୋଇ ପାରି ନାହିଁ ।"

ଏଇପରି ଜାତୀୟ ଭାବଚେତନାର କବି ବିଚ୍ଛନ୍ଦ ଚରଣଙ୍କ ଅସଂଖ୍ୟ ରଚନା, ଅନୁବାଦାଦି ଲୋକ-ଲୋଚନକୁ ଆସିପାରିନାହିଁ । ଶୁଣାଯାଏ ତାଙ୍କର ଅନୂଦିତ 'ବିନୟ ପତ୍ରିକା' ରାଜ୍ୟ ସାହିତ୍ୟ ଏକାଡେମୀ ପ୍ରକାଶ କରିବା ପାଇଁ ସଦୟ ସ୍ୱୀକୃତି ଦେଇଥିଲେ । କବିଙ୍କ 'ତୁଳସୀ ରାମାୟଣ'ର ପ୍ରକାଶନ ମଧ୍ୟ ସମ୍ଭବ ହୋଇପାରିନାହିଁ । ସାହିତ୍ୟର ପୃଷ୍ଠପୋଷକମାନେ ଏଥିପାଇଁ ଧ୍ୟାନ ଦେବେ ବୋଲି ଆଶା କରାଯାଏ ।

●

# କବିତାକୁମୁଦର କବି ବିଚ୍ଛନ୍ଦଚରଣ

ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ

ଓଡ଼ିଶାର ଲୁପ୍ତ ଗୌରବର ପୁନରୁଦ୍ଧାର ସକାଶେ ଓଡ଼ିଆ ସଙ୍ଗୀତ, ସାହିତ୍ୟ ଓ ସ୍ଥାପତ୍ୟକଳାର ପ୍ରସାର ଓ ପରିପୁଷ୍ଟିର ଉପଲକ୍ଷେ ସ୍ୱର୍ଗତ ବିଚ୍ଛନ୍ଦଚରଣଙ୍କର ଆତ୍ମା ବ୍ୟାକୁଳ ହୋଇଉଠିଲା । ସେ ତାଙ୍କ ଆଖି ଆଗରେ ବୀର ଖାରବେଳଙ୍କର ଦୃପ୍ତ ବିଜୟୀ ସାମ୍ରାଜ୍ୟ, ହିଂସ୍ର ଚଣ୍ଡାଶୋକଙ୍କର ହୃଦୟ ପରିବର୍ତ୍ତନ ଓ ଅହିଂସା ଧର୍ମଗ୍ରହଣ, ଓଡ଼ିଆ ସାଧବଙ୍କର ନୌବାଣିଜ୍ୟ ଓ ସାଧବାଣୀମାନଙ୍କର ବିପୁଳ ବନ୍ଦାପନା, ଓଡ଼ିଆ ଶିଳ୍ପୀର ନିଶ୍ଚଳ ପ୍ରସ୍ତର ମୂର୍ତ୍ତିରେ ପ୍ରାଣର ସ୍ପନ୍ଦନ, ଓଡ଼ିଆ ସାହିତ୍ୟର ଅକ୍ଷର କଳାରେ ଛନ୍ଦର ଝଙ୍କାର, ଓଡ଼ିଶୀ ନୃତ୍ୟର ତାଳେ ତାଳେ ଅପୂର୍ବ ଭାବରାଜିର ଦିବ୍ୟ ପାରିଜାତ, ଓଡ଼ିଶୀ ସଙ୍ଗୀତର ମୋହନ ମୂର୍ଚ୍ଛନା ମଧ୍ୟରେ ବିପଞ୍ଚିବାଦିନୀ ସରସ୍ୱତୀଙ୍କ ପ୍ରସନ୍ନ ରୂପ ଦେଖିପାରିଥିଲେ । ତେଣୁ ସେ ପ୍ରାର୍ଥନା କରିଥିଲେ—

"ମା ! କରୁଣା ନାହିଁକି ?
ତବ ପୂଜନ-ପୂତ ଭୂଇଁକି ?
କବି-କୁଞ୍ଜ ବନ ଭଞ୍ଜ ଦେଶରେ ମା
ମୂକ କାହିଁକି ବଲ୍ଲକୀ
କୃପା-ସୁଧା-ଝର ତାଳ ଯୁଗେ ଯୁଗେ
ଶଠା ସତେ ପାଇଲି କି । ୧ ।

× × ×

ଛନ୍ଦ-ରସ-ରାଜ୍ୟ ଲୁଟିଛି ଅଜ୍ଞାତେ
ରଖିନାହିଁ କିଛି ବାକି
ନବଯୁଗ ସିନ୍ଧୁ- ମନ୍ଥନ ଅମୃତ
ଲାଳସୀ, ନାହିଁ ତା ତୃଷି । ୫ ।

କବିକୁଞ୍ଜବନ ଭଞ୍ଜନିକେତନରେ ନବଯୁଗର ଶଙ୍ଖଧ୍ୱନି ଶୁଣିବା ପାଇଁ କବି ଭାରତୀବନ୍ଦନା କରିଛନ୍ତି । ନିଜର ପରମ୍ପରାକୁ ଅକ୍ଷୁଣ୍ଣ ରଖି ନବୀନ ଭାବଧାରାରୁ ସାର ଆହରଣ କରିବାପାଇଁ କବି ଉଦ୍‌ବୋଧନ ଦେଇ "ବାଣୀ ଆବାହନ" କରିଛନ୍ତି । ଉତ୍କଳର ଅତୀତ ଗୌରବରେ ଗର୍ବିତ ହୋଇ ଏ ଦେଶମାଟିରେ ନିତ୍ୟ ମଳୟ ପ୍ରବାହ ସକାଶେ ନିବେଦନ କରି ସେ 'ଭାରତୀ ଆବାହନ ଗୀତିକା' ରଚନା କରିଛନ୍ତି । ଗୌରବାବହ ଐତିହ୍ୟର ସ୍ମୃତି କବିଙ୍କ ପ୍ରାଣକୁ ବହୁ ଭାବରେ ପୁଲକିତ କରିଛି ଏବଂ ସେ ଏହି ମାଟିର ଭବିଷ୍ୟତ ମଧ୍ୟ ସେହିପରି କାହିଁକି ଗୌରବୋଜ୍ଜ୍ୱଳ ହେବନାହିଁ ସେଥିଲାଗି 'ଜିଜ୍ଞାସା' କରିଛନ୍ତି—

ଖାରବେଳ ସୁହାଗିନୀ ତୁହି ମା ଟିକି,
ବିପୁଳ-ବାରଣ-ସେନା ପଦ-କମ୍ର-ଅପଘନା !
ବୀର-ମେଦମୟୀ ତୋର ଏହି ମାଟିକି ?"

କବିଙ୍କ ଦୃଷ୍ଟିରେ "କଳା ଲକ୍ଷ୍ମୀ ମନୋରମା, ନିଖିଳ ବଣିଜରମା, ଅଶେଷ କୀରତିଧାମା, ତ୍ରିଦଶକାମ୍ୟା —ଏହି ଶସ୍ୟଶ୍ୟାମା" 'କଳାକମ୍ର ଉତ୍କଳ' ଭୂମିର ବୀର ସନ୍ତାନମାନଙ୍କ ନିରୁତ୍ସାହିତାବଶତଃ ଏ ଦେଶର ବାଣିଜ୍ୟ ବ୍ୟବସାୟ, ଏ ଦେଶର କଳାସମ୍ପଦ, ଏ ମାଟିର ପୂର୍ବ ଗୌରବ ସବୁ ଅପହୃତ ହୋଇଗଲା । କବି ତେଣୁ "ଜଡ଼ତା ପାଶ ଗଲେ କାହିଁକି ହେ ?" ପ୍ରଶ୍ନ କରି କଳିଙ୍ଗର ପୌରୁଷ ଶକ୍ତିକୁ ଜାଗ୍ରତ କରିବା ସକାଶେ ଚେଷ୍ଟା କରିଛନ୍ତି । 'ବାରବାଟୀ'ର ନବତଳ ପ୍ରାସାଦ ମଧ୍ୟରେ ସ୍ୱାଧୀନତାର ସୁରକ୍ଷା ସକାଶେ ଓଡ଼ିଆ ସୈନିକଙ୍କର ପ୍ରାଣବଳି ଓ ପ୍ରତିପକ୍ଷର ଯୁଦ୍ଧ ଆହ୍ୱାନର

ପ୍ରତିଧ୍ୱନି ତଥା ବିଜୟୀଉଲ୍ଲସିତ ହୁଳହୁଳି ନାଦ ପ୍ରଭୃତି କବିଙ୍କ ମାନସପଟରେ ଅଜ୍ଞାତ ଇତିହାସର ବହୁଚିତ୍ର ଅଙ୍କନ କରିଦେଇଛି । ଯେଉଁ ବାରବାଟୀର ପରିଖା ଜଳରେ ପ୍ରାଚୀର ଆରୋହୀ ସୈନିକମାନଙ୍କର ପ୍ରତିଛବି ପ୍ରତିଫଳିତ ହେଉଥାଏ, ଆଜି ସେହି ପରିଖା ଜଳ ଶୁଷ୍କ ହୋଇଯାଇଥିବା ଏବଂ ସେଥିରେ ଲଙ୍ଗଳର ଗାର ପଡ଼ି କୃଷି ହେଉଥିବା ଉଲ୍ଲେଖ କରି ପ୍ରାଚୀନ କୀର୍ତ୍ତିର ରକ୍ଷଣାବେକ୍ଷଣରେ ଏ ଜାତିର ଉଦାସୀନତାକୁ କବି କଟାକ୍ଷ କରିଛନ୍ତି । ବାରବାଟୀରେ "ଡୁଲାଇଛି ଗାଡ଼ି ନଦେ ଏଥି ସ୍ୱାଧୀନତା" କହି କବି 'ଆସ ଆସ ଉତ୍କଳର ଅସିଜୀବିକୁଳ !' ବୋଲି ଖଣ୍ଡାୟତମାନଙ୍କୁ ଆହ୍ୱାନ କରିଛନ୍ତି ଦେଶମାତୃକାର ପୂଜାପୀଠରେ ଏକତ୍ରିତ ହୋଇ ଜାତୀୟ ଗୌରବ ରକ୍ଷା କରିବା ସକାଶେ । ଏହି ଦୁଇଟି କବିତା ୧୯୩୭ ଖ୍ରୀଷ୍ଟାବ୍ଦରେ ବ୍ରିଟିଶ୍ ରାଜତ୍ୱ ସମୟରେ ରଚିତ ହୋଇଥିଲା ଓ ସ୍ୱାଧୀନତା ପୂର୍ବରୁହିଁ କବିଙ୍କର ଏହିପରି ଅନେକ କବିତା ପ୍ରକାଶ ପାଇଥିଲା । ଦେଶ ଓ ଜାତିର ସ୍ୱାଧୀନତା ସକାଶେ ସ୍ୱର୍ଗତ କବି ବାଞ୍ଛାନିଧିଚରଣଙ୍କ ଏତାଦୃଶ ନିର୍ଭୀକ ଆତ୍ମପ୍ରକାଶ ଓ ଉଦ୍‌ବୋଧନ ତାଙ୍କର ଜାତୀୟତାପୂର୍ଣ୍ଣ ଅନ୍ତରର ଅପୂର୍ବ ପରିପ୍ରକାଶ । 'ମୋ ଦେଶ' 'ମୋ ଟେକ ମଉଳି' କହି ବାଞ୍ଛାନିଧିଚରଣ ଆତ୍ମପ୍ରସାଦ ଅନୁଭବ କରୁଥିଲେ ।

ଜାତି ଓ ଜାତୀୟତା ସକାଶେ ବାଞ୍ଛାନିଧିଚରଣଙ୍କର ପ୍ରାଣ କାନ୍ଦି ଉଠୁଥିଲା । ସେ ନିଜର ଶାରୀରିକ ଅକ୍ଷମତା ଭିତରେ ଦେଶମାତୃକାର ସେବା ଲେଖନୀ ମାଧ୍ୟମରେ ହେଲେ କରିବା ସକାଶେ ବଦ୍ଧପରିକର ହୋଇଥିଲେ । ଦେଶ ଓ ଜାତି ପାଇଁ ଯେଉଁମାନେ କିଛି କାମ କରିଛନ୍ତି, ଦେଶମାତୃକାର ଉନ୍ନତି ସକାଶେ ଯେଉଁମାନଙ୍କର କିଛି ଅବଦାନ ଅଛି, ଦେଶୀୟ ସାହିତ୍ୟର ଉନ୍ନତି-କଳ୍ପେ ଯେଉଁମାନେ ଲେଖନୀ ଚାଳନା କରିଛନ୍ତି, ସେହି ପୂଜ୍ୟ ବରପୁତ୍ରମାନଙ୍କର ପୂଜା କରିବା ପାଇଁ କବି ମୁକ୍ତକଣ୍ଠରେ ସ୍ମୃତିଚାରଣ କରିଛନ୍ତି । ପୂଜ୍ୟପୂଜା ଉଦ୍ଦେଶ୍ୟରେ କବିଙ୍କ ଦ୍ୱାରା ଲିଖିତ ବହୁ ମନୀଷୀମାନଙ୍କ ଉଦ୍ଦେଶ୍ୟରେ ରଚିତ କବିତାବଳୀରୁ ତାଙ୍କର ମହାନୁଭବତା ଜାଣିହୁଏ ।

ଆନ୍ତର୍ଜାତିକ ଓ ଆନ୍ତର୍ଦେଶିକ ଓ ଆନ୍ତଃପ୍ରାଦେଶିକ ଖ୍ୟାତିସମ୍ପନ୍ନ ଭାରତମାତାଙ୍କ ବରପୁତ୍ରମାନଙ୍କ ସ୍ମୃତି-ଚାରଣ ଉଦ୍ଦେଶ୍ୟରେ ଲିଖିତ କବିତାବଳୀ ମଧ୍ୟରେ ସେମାନଙ୍କର ମହାନୁଭବତା ଓ ଦେଶମାତୃକା ସକାଶେ ଅବଦାନକୁ ଉଲ୍ଲେଖ କରି କବି ନିଜର ଗୁଣଗ୍ରାହକତା ପ୍ରକାଶ କରିବା ସଙ୍ଗେ ସଙ୍ଗେ ପୂଜ୍ୟପୂଜା କରିବାରେ ପରାଙ୍ମୁଖତା ପ୍ରକାଶ କରିନାହାନ୍ତି । ଜାତୀୟ ଚରିତ୍ରର ଉଜ୍ଜ୍ୱଳ ଦିଗଟିକୁ ଗୁଣଗ୍ରାହକତାର ସହିତ ଦେଖିବାକୁ ଚେଷ୍ଟା ନ କଲେ ଜାତୀୟ ଜୀବନର ଅଭ୍ୟୁନ୍ନତି ହେବନାହିଁ । ତେଣୁ ବ୍ୟକ୍ତିବିଶେଷଙ୍କର ଗୁଣାନୁକୀର୍ତ୍ତନଦ୍ୱାରା ସେମାନଙ୍କର ମହାନୁଭବତା ସର୍ବ-ସାଧାରଣରେ ପ୍ରକାଶ କରି ସେମାନଙ୍କଠାରୁ କର୍ମପ୍ରେରଣା ଲାଭ କରିବା ସକାଶେ କବିଙ୍କର ଏ ଯେଉଁ ସାରସ୍ୱତ ଉଦ୍ୟମ, ତାହା ଜାତୀୟ ଚରିତ୍ର ବିକାଶ କରାଇବା ଦିଗରେ ଅନ୍ୟ ଏକ ପ୍ରଶଂସନୀୟ ପଦକ୍ଷେପ ।

କବି ବାଞ୍ଛାନିଧିଚରଣ କେବଳ କବିତାର ସ୍ରଷ୍ଟା ନ ଥିଲେ; ସେ ଥିଲେ—କବି ଓ ପ୍ରତିଭାର ସ୍ରଷ୍ଟା । କାହାରିଠାରେ ଉନ୍ମେଷଶାଳିନୀ ପ୍ରଜ୍ଞାର ଆଭାସ ମିଳିଲେ ତାହାର ବିକାଶ ନିମିତ୍ତ ଉପଯୁକ୍ତ ପରିବେଶ ସୃଷ୍ଟି କରି ସେ ପ୍ରତିଭାକୁ ପ୍ରସ୍ଫୁଟିତ କରିବା ସକାଶେ ଚେଷ୍ଟା କରୁଥିଲେ । ପ୍ରାଚୀନ ପରମ୍ପରା ରକ୍ଷାକରି ନୂତନ ସାହିତ୍ୟ ସୃଷ୍ଟି କରିବା ଥିଲା ତାଙ୍କର ଆଦର୍ଶ । ତେଣୁ ସେ ପ୍ରାଚୀନକୁ ଯେତେ ଭଲ ପାଉଥିଲେ, ପରମ୍ପରାକୁ ରକ୍ଷା କରିବାରେ ଯେତେ ରକ୍ଷଣଶୀଳ ଥିଲେ, ଆଧୁନିକ ଭାବଧାରାକୁ ପ୍ରାଚୀନ ଗ୍ରନ୍ଥରେ ପ୍ରାଣବନ୍ତ କରି ଫୁଟାଇବାରେ ତାଙ୍କର ତତୋଽଧିକ ଆଗ୍ରହ ଥିଲା । ତେଣୁ ସେ ପ୍ରାଚୀନ କବି ଓ କାବ୍ୟକୁ ପ୍ରାଣରୁ ବଳି

ଭଲ ପାଉଥିଲେ ଓ ତାହାର ସାର୍ଥକ ସିଦ୍ଧହସ୍ତ ସ୍ରଷ୍ଟା କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କୁ ଏ ଜାତିର ମଉଡ଼ମଣି ଭାବରେ ସ୍ୱୀକାର କରି ନେଇଥିଲେ । ତାଙ୍କର କାବ୍ୟ-କବିତାର ଆଦର୍ଶରେ ପ୍ରାଚୀନ ଛନ୍ଦବନ୍ଧ ମଧ୍ୟରେ ନୂତନ ଭାବଧାରାର ମଞ୍ଜୁଳ ପ୍ରକାଶ ଦ୍ୱାରା ଉତ୍କଳୀୟ ସାହିତ୍ୟର ବୈଶିଷ୍ଟ୍ୟ ରକ୍ଷା କରିବା ଲାଗି ସେ ଯତ୍ନଶୀଳ ଥିଲେ । ତେଣୁ ସେ ସକଳ ଗୌରବର ଉତ୍ତରାଧିକାରୀ ଓ ଜାତିର ଭବିଷ୍ୟତ ସ୍ରଷ୍ଟାସମାଜକୁ ତାଙ୍କର ଆଦର୍ଶରେ ଉଦ୍‌ବୁଦ୍ଧ କରିବା ସକାଶେ ଉତ୍କଳ ସାହିତ୍ୟ ସମାଜ ଗଠନ କରିଥିଲେ । ତାଙ୍କର ପ୍ରତିଷ୍ଠିତ 'କଳିଙ୍ଗଭାରତୀ' ସମଗ୍ର ଉତ୍କଳ କାହିଁକି, ଉତ୍କଳେତର ଅନ୍ୟାନ୍ୟ ପ୍ରଦେଶମାନଙ୍କରେ ମଧ୍ୟ ରାଗ-ରାଗିଣୀମୟ ଭଞ୍ଜ ସାହିତ୍ୟର ପ୍ରଚାରଦ୍ୱାରା ଭଞ୍ଜ ସାହିତ୍ୟ ମାଧ୍ୟମରେ ଏକଉତ୍କଳୀୟ ଅଖଣ୍ଡତା ଓ ଏକାତ୍ମବୋଧ ଆଣି ଦେଇଛି ।

ବଛନ୍ଦଚରଣ ମାତୃସାହିତ୍ୟର ମୂଲ୍ୟ ପ୍ରଖ୍ୟାପନ ସକାଶେ ତାହାର ଅନ୍ୟାନ୍ୟ ଭାଷାରେ ଭାଷାନ୍ତରୀକରଣ ଏବଂ ଅନ୍ୟାନ୍ୟ ସାହିତ୍ୟର ସମୁଚ୍ଚ ଭାବରାଜିଦ୍ୱାରା ନିଜ ସାହିତ୍ୟକୁ ସମୃଦ୍ଧ କରିବା ସକାଶେ ସେଗୁଡ଼ିକର ଓଡ଼ିଆ ଅନୁବାଦ କରିବା ଅପରିହାର୍ଯ୍ୟ ମନେ କରିଥିଲେ । ତେଣୁ ସେ ଭଞ୍ଜ ଓ କବିସୂର୍ଯ୍ୟଙ୍କର କେତେକ କବିତା ଇଂରାଜୀ ଭାଷାରେ ନିଜେ ଅନୁବାଦ କରି ଭଞ୍ଜୀୟ ଭାବରାଜି ମଧ୍ୟ କିପରି ସୁରୁଚିରୂପେ ଭାଷାନ୍ତରିତ ହୋଇପାରେ, ତାହା ଦେଖାଇ ଦେଇଥିଲେ । ସଂସ୍କୃତ ପରି ଭାରତୀୟ ସାହିତ୍ୟ ତଥା ଇଂରାଜୀ ପରି ଆନ୍ତର୍ଜାତିକ ସାହିତ୍ୟରୁ ରତ୍ନରାଶି ଆହରଣ କରି ନିଜର ମାତୃ-ସାହିତ୍ୟର ଭଣ୍ଡାରକୁ ସମୃଦ୍ଧ କରିବା ପାଇଁ ସେ ଆଗ୍ରହୀ ଥିଲେ । ତେଣୁ ନମୁନା ସ୍ୱରୂପ ମହାକବି କାଳିଦାସଙ୍କ 'ଅଭିଜ୍ଞାନ ଶାକୁନ୍ତଳମ୍‌'ରୁ 'ଶକୁନ୍ତଳାଙ୍କ ପତିଗୃହଯାତ୍ରା'କୁ ଯେଉଁଭଳି ଅନୁବାଦ କରିଥିଲେ, ସେହିପରି 'ଜଗଜ୍ଜନ ହର୍ଷଣୀୟା ମମ ଗଳାମାଳା' 'କେହିତ ଦରଦୀ ଜନ ଏକାକୀ ନାହିଁ', 'ପ୍ରମଦା-ଜୟନ୍ତ, ଜୀବନ ଗୌରବ, ଲୋତକାଭିଷେକ, ପ୍ରିୟାବିଚ୍ଛେଦ, 'ମୋ ଶରୀର ସମାଧି ହେଉ ଭରସା ତୋର' ପ୍ରଭୃତି କବିତା ଇଂରାଜୀ ସାହିତ୍ୟରୁ ଅନୁବାଦ କରିଥିଲେ । କବି ବଛନ୍ଦଙ୍କର ଅନୁବାଦ ଛନ୍ଦବନ୍ଧ ମଧ୍ୟରେ ସ୍ୱଚ୍ଛନ୍ଦ ଭାବରେ ପ୍ରକାଶ ପାଇ ମୌଳିକ ଭାବଧାରାକୁ ଅକ୍ଷୁର୍ଣ୍ଣ ରଖି ପାଠକର ହୃଦୟକୁ ସ୍ପର୍ଶ କରୁଛି । ପ୍ରାଚୀନ ମଧ୍ୟଯୁଗୀୟ ସାହିତ୍ୟର ଶୃଙ୍ଗାରିକ ଭାବ ଅମରୁ କବିତାରେ ଉତ୍କୃଷ୍ଟ ଭାବରେ ପ୍ରକାଶ ପାଇଥିବାରୁ କବି ବଛନ୍ଦଚରଣ ତାହାର ଅନୁବାଦ ମଧ୍ୟ ସୁନ୍ଦର ଭାବରେ କରିଥିଲେ ଓ ତାହା ଓଡ଼ିଶା ସାହିତ୍ୟ ଏକାଡେମିକୁ ପ୍ରକାଶ ପାଇଁ ଦେଇଥିଲେ । କିନ୍ତୁ ଦୁଃଖର କଥା ତାହାର ପ୍ରକାଶ ତ ଦୂରର କଥା, ତାହାର ପୁନରୁଦ୍ଧାର ମଧ୍ୟ ବିଧିର ବିଡ଼ମ୍ବନାବଶତଃ ସମ୍ଭବ ହେଲାନାହିଁ ।

କବି ବଛନ୍ଦଚରଣ ପ୍ରାଚୀନ ସାହିତ୍ୟର ସର୍ବ-ଶ୍ରେଷ୍ଠ ପୂଜାରୀ ଭାବରେ ପ୍ରାଚୀନ କାବ୍ୟ କବିତା ଓ ରସ-ସମ୍ପଦକୁ ଅତି ନିବିଡ଼ ଭାବରେ ଭଲପାଉ-ଥିଲେ । ଓଡ଼ିଶାର ମଧ୍ୟଯୁଗୀୟ ସାହିତ୍ୟ ଅସଂଖ୍ୟ କାବ୍ୟ-କବିତାର ଭଣ୍ଡାର ହୋଇଥିବାରୁ ବଛନ୍ଦ-ଚରଣ ତାଦୃଶ ଅନ୍ୟ କୌଣସି କାବ୍ୟ ରଚନା ନ କରି ଆଜିର କ୍ଷୁଦ୍ର କବିତାର ଯୁଗରେ କର୍ମବ୍ୟସ୍ତ ମାନବକୁ ଅଳ୍ପ ସମୟ ମଧ୍ୟରେ ଅନଳ୍ପ ରସର ଆସ୍ୱାଦନ କରାଇବା ପାଇଁ ପ୍ରାଚୀନ ରାଗ-ରାଗିଣୀରେ ବିଭିନ୍ନ ଭାବ-ବିଭବକୁ ଖଣ୍ଡକବିତା ମାଧ୍ୟମରେ ପ୍ରକାଶ କରି-ଥିଲେ । ପ୍ରାଚୀନ ସାହିତ୍ୟର ବର୍ଣ୍ଣନା ବୈଶିଷ୍ଟ୍ୟ ମଧ୍ୟରେ ସମୟେ ସମୟେ ଶବ୍ଦାଳଙ୍କାରର ଝଙ୍କାର ଦ୍ୱାରା କାବ୍ୟର କୋମଳ ଅନ୍ତର୍ବୃତ୍ତି ଅନ୍ତର୍ହିତ ହୋଇଯାଉ-ଥିବାରୁ ସେ ତାହାକୁ ପରିହାର କରିବା ପାଇଁ ଚେଷ୍ଟା କରିଥିଲେ । ନାୟକ-ନାୟିକାଙ୍କ ବିରହ-ମିଳନକୁ ରୂପ ଦେବାକୁ ଯାଇ ଓ ସେମାନଙ୍କର ସରସ ମଧୁର

ଭାବାବଳୀକୁ ପ୍ରକାଶ କରିବାକୁ ଯାଇ ମଧ୍ୟଯୁଗୀୟ କବି ଯେତେବେଳେ ଶ୍ଳେଷର ଇନ୍ଦ୍ରଜାଲ ମଧ୍ୟରେ ଆତ୍ମହରା ହୋଇଯାଏ, ସେତେବେଳେ ଉକ୍ତ ରଚନା ଶବ୍ଦକାବ୍ୟ ନାମରେ ଅଭିହିତ ହୁଏ । କିନ୍ତୁ ପ୍ରାୟ ସମସ୍ତ କାବ୍ୟରେ ନାୟକ-ନାୟିକାଙ୍କର ପତ୍ରାଳାପଦ୍ୱାରା ଭାବବିନିମୟ ଅତ୍ୟନ୍ତ ସରସ ସରଳ ପଦାବଳୀ ସାହାଯ୍ୟରେ ସମ୍ପନ୍ନ କରାଯାଇଥାଏ । ହୃଦୟର ବେଦନାବୋଧ ସକାଶେ, ଅନ୍ତରର ଏକତାନ ନିମିତ୍ତ ଓ ମନର ମିଳନ ଲାଗି ହୃଦୟରୁ ଅବାରିତ ଓ ଅକୁଣ୍ଠ ପରିପ୍ରକାଶ ଆବଶ୍ୟକ । ଏପରି ପରିପ୍ରକାଶ ଅଭିଧା ବୃତ୍ତି ଦ୍ୱାରା ଅଭିଧାନର ଶବ୍ଦମାନଙ୍କ ସାହାଯ୍ୟରେ କରାଯାଇ ନ ପାରେ । କମଳ ପୁଷ୍ପର କୋମଳ ବହୁପତ୍ରକୁ ଯେପରି ଗୋଟିଏ ସୂକ୍ଷ୍ମସୂଚୀ ଅନାୟାସରେ ଭେଦ କରିଥାଏ, ଠିକ୍ ସେହିପରି କୋମଳ ବୃତ୍ତିକୁ ସୂକ୍ଷ୍ମ ବ୍ୟଞ୍ଜନା ଦ୍ୱାରା ପ୍ରକାଶ କରି-ପାରିଲେ, ତାହା ମନୁଷ୍ୟର ହୃଦୟ କମଳର ଅନ୍ତଃସ୍ଥଳକୁ ସ୍ପର୍ଶ କରିପାରେ । ନାୟକ-ନାୟିକାଙ୍କର ଭାବ-ବିଭବକୁ ସକଳ କାବ୍ୟକବିତାର ଏକ-ମୂଳ ଭାବରେ ଗ୍ରହଣ କରି ପତ୍ରଲଖନ ଶୈଳୀରେ ସେସବୁ ପ୍ରକାଶ କରିଯାଇଛନ୍ତି । ପ୍ରେମ ଜଗତରେ ଭଞ୍ଜ ପ୍ରଭୃତି ରସସିଦ୍ଧ କବି ଓ ଅଧ୍ୟାତ୍ମ ଜଗତରେ ତୁଳସୀ ଦାସ ପ୍ରଭୃତି ଭକ୍ତକବି ପତ୍ରାବଳୀ ମାଧ୍ୟମରେ ସେମାନଙ୍କର ଭାବରାଜିକୁ ସ୍ୱଚ୍ଛନ୍ଦ ଭାବରେ ପ୍ରକାଶ କରିଯାଇଛନ୍ତି । ବିଚ୍ଛନ୍ଦଚରଣଙ୍କ ସକଳ ଉତ୍କୃଷ୍ଟ କବିତା ତେଣୁ ଏହି ପତ୍ରାବଳୀ ମାଧ୍ୟମରେହିଁ ପ୍ରକାଶ ପାଇଛି ।

ନାୟକ-ନାୟିକାଙ୍କର ପରସ୍ପର ପ୍ରତି ପତ୍ରାଳାପ ମାଧ୍ୟମରେ କବି କେବଳ କାଳ୍ପନିକ ବିଷୟବସ୍ତୁକୁ ଆଶ୍ରୟ ନ କରି ନିଜ ଜୀବନର ଘଟଣାଚକ୍ରକୁ ମଧ୍ୟ ପ୍ରକାରାନ୍ତରେ ପ୍ରକାଶ କରିଯାଇଛନ୍ତି । ଜ୍ୟାମିତିକ କ୍ଷେତ୍ରରେ ଅସମ୍ଭବ ହେଲେହେଁ ପ୍ରେମିକ-ପ୍ରେମିକା ରୂପକ ଦୁଇବିନ୍ଦୁ ମଧ୍ୟଦେଇ ସାହିତ୍ୟ ରାଜ୍ୟରେ ଯେ ଅଜସ୍ର ସରଳରେଖା ଟଣାଯାଇପାରେ, ତାହା ପତ୍ର-ଲେଖାର ବିଭିନ୍ନ ଭାବ ଓ ଭାବନା ମଧ୍ୟ ଦେଇ ଏକ ଶୃଙ୍ଗାର ରସର ପୁଷ୍ଟିସାଧନ ଦ୍ୱାରା ପ୍ରମାଣିତ କରି-ଯାଇଛନ୍ତି ।

ପ୍ରେମିକାହିଁ ପ୍ରେମିକର ସର୍ବସ୍ୱ । ପ୍ରେମରେ ଜାତି, ଧର୍ମ ଇତ୍ୟାଦିର ବାଧାବନ୍ଧନ ନ ଥାଏ । ତେଣୁ "ମଞ୍ଜୁଳା ସମାଜ ମୋର, ମଞ୍ଜୁଳା ମୋ ଜାତି । ମଞ୍ଜୁଳା ବିହୁନେ ମୋର ନାହିଁ ଆନ ଜ୍ଞାତି ।" ଇତ୍ୟାଦି ମାଧ୍ୟମରେ କବି ପ୍ରେମିକାକୁ ସର୍ବସ୍ୱ ଭାବରେ ଗ୍ରହଣ କରିଛନ୍ତି । ଏଠାରେ କବିଙ୍କ 'ମଞ୍ଜୁଳା' ସମଗ୍ର ପ୍ରେମିକ ଦୃଷ୍ଟିରେ 'ପ୍ରେମିକାର ମଞ୍ଜୁଳ ସୌନ୍ଦର୍ଯ୍ୟ ସମ୍ପଦ ଭାବରେ ଗ୍ରହଣ କରାଯାଇପାରେ । ସମାଜରେ ପ୍ରେମିକ ହେଲେ ବା ପ୍ରେମ କଲେ ସମାଜ ଶୃଙ୍ଖଳର ବିଭିନ୍ନ ବାଧା ବନ୍ଧନ ମଧ୍ୟରେ ଦାରୁଣ ପୀଡ଼ା ପାଇବାକୁ ହୋଇଥାଏ । ସେ ସମସ୍ତ ବାଧାବନ୍ଧକୁ ଅତିକ୍ରମ କରିବାକୁ ହେଲେ ଇତର ଲୋକଙ୍କର ଟାହି ଟାପରାକୁ ଭ୍ରୂକ୍ଷେପ ନ କରି ଅଟଳ ପ୍ରେମରେ ନିଶ୍ଚଳ ରହିବାକୁ ହେବ । ସେଥିପାଇଁ ପ୍ରେମିକ-ପ୍ରେମିକା ନିର୍ଭୀକ ଭାବରେ 'ଦୂଷଣ ଘୋଷଣ ବାଜୁ ନାହିଁ ମୋର ଡର' ବୋଲି କହିବାକୁ ହେବ ।

ପ୍ରେମରେ ମିଳନର ସୁଖ ଅପେକ୍ଷା ବିରହର ଯନ୍ତ୍ରଣା ଅଧିକ ଅବଶ୍ୟମ୍ଭାବୀ । ବିଚ୍ଛେଦର ଦାବଦାହ ମଧ୍ୟରେ ପ୍ରେମ ହେମ ସମଧିକ ସମୁଜ୍ଜ୍ୱଳ ହୋଇଥାଏ ଓ ତାହା ହୃଦୟରୂପକ ନିକଷ ଉପଲରେ ଏକ ଉତ୍କୃଷ୍ଟ ଅଳିଭା ରେଖା ଅଙ୍କନ କରିଯାଏ । ପ୍ରେମ-ରାଜ୍ୟରେ ଏହି ଶାଶ୍ୱତ ବିଚ୍ଛେଦ ଯନ୍ତ୍ରଣାକୁ କବି ବିଚ୍ଛନ୍ଦ-ଚରଣ ଅତ୍ୟନ୍ତ ପ୍ରାଣସ୍ପର୍ଶୀ ଭାଷାରେ ପ୍ରକାଶ କରି ଯାଇଛନ୍ତି । ତେଣୁ ସେ କହିଛନ୍ତି—

"କଳପନା-ମହୀରୁହ ବାସ୍ତବ-ଅଶନି
ଜାଳଦେବ ବନ୍ଧୁ ଆରେ ! ଥିଲି ନାହିଁ ଜାଣି ।
ଶର-ବିଚ୍ଛେଦ-ବଜ୍ରଦେ,
ଲୁଚିଯାଇ ବାରେ ଆଉ ନ ହୋଇବୁ ଉଦେ ।"

କବିଙ୍କ ଲିଖିତ 'ବିରହ ବାରମାସୀ' ଓ 'ବିଚ୍ଛେଦ ଚଉତିଶା' ମଧ୍ୟ ବିରହ ଭାବକୁ ପ୍ରକାଶ କରିବା ସକାଶେ ପ୍ରାଚୀନ ଓଡ଼ିଆ ସାହିତ୍ୟର ଅନ୍ୟ ଦୁଇ ମାଧ୍ୟମ । ପ୍ରତି ମାସରେ, ପ୍ରତି ବର୍ଣ୍ଣରେ ନାୟକ ପାଇଁ ନାୟିକାର ଓ ନାୟିକା ପାଇଁ ନାୟକର ବିରହାନୁଚିନ୍ତା ଯେ ହୋଇଥାଏ, ତାହାହିଁ ଉପର୍ଯ୍ୟୁକ୍ତ କବିତା ଦୁଇଟିରେ ପ୍ରକଟିତ ହୋଇଅଛି । ପ୍ରେମିକ ଜୀବନରେ ଏକାନ୍ତ ସତ୍ୟ ହେଲେହେଁ ଅତ୍ୟନ୍ତ ଅନଭିବାଞ୍ଛିତ ବିଚ୍ଛେଦ-ଦୁଃଖକୁ ନ ଦେବାପାଇଁ ବିଧାତାଙ୍କୁ ପ୍ରାର୍ଥନା କରି ରସିକ କବି ବଞ୍ଚନ୍ଦ ଚରଣ କହିଛନ୍ତି—

"ବିଚ୍ଛେଦ ଦୁଃଖ ଫଳ ସେ ସୁଖ ତରୁ
କରୁଣାକର ଧାତଃ କେଭେଁ ନ ଧରୁ ।"

'କାମିନୀ ପାଖକୁ କଣୋର' କବିତାରେ କବି ବଞ୍ଚନ୍ଦ-ଚରଣ ମଧ୍ୟଯୁଗୀୟ ନାରୀର ଏକ ନିଖୁଣ ଚିତ୍ର ଆଙ୍କିଛନ୍ତି ।

ପ୍ରୀତିରୁ ବଡ଼ ହୋଇ ଜଗତେ କି ଅଛଇ
ଯେନା ପ୍ରେମିକା ପଦତଟେ
ମଣିମାଣିକ୍ୟଭରା ନୃପ ମୁକୁଟ ପରା
ଧୂଳିଧୂସର ହୋଇ ଲୋଟେ ରେ ।

ହୃଦୟର ମିଳନରେ ସକଳ ଭେଦଭାବ ଓ ବାଧା-ବିଘ୍ନର ଉତ୍ତୁଙ୍ଗ ପ୍ରାଚୀର ଉଭେଇଯାଏ ଓ ଦୁଇଟି ଶରୀର ମଧ୍ୟରେ ଥିବା ଜାଗତିକ ଦୂରତା ଅପସରି ଯାଇ ଏକପ୍ରାଣ ହୋଇଯାଏ । ତେଣୁ କବି କହିଛନ୍ତି—

"ପୀରତିରେ କାହିଁ ଦୂରାଦୂର
ହୃଦୟର ମେଳ ଯହିଁ
ଗଉଣ ଶରୀର ତହିଁ
ମୁହିଁ କେକୀ ତୁହି ଜଳଧର ରେ ।"

ମନର ମିଳନହିଁ ଯଥାର୍ଥ ମିଳନ । ମନର ମିଳନ ବ୍ୟତିରେକେ ଦେହର ମିଳନକୁ ଏକ ପାଶବ ପ୍ରବୃତ୍ତି ବୋଲି ଅଭିହିତ କରାଯାଏ । ତେଣୁ କବି "ମନର ମିଳନ ମିଳନରେ ଲେଖା ଦେହ ମେଳ ବଶ ତହିଁର" କହି ହୃଦୟ ସହିତ ହୃଦୟକୁ ମିଶାଇବା ପାଇଁ ହେଲେ କୌଣସି ବାହ୍ୟ ଉପଚାର ବା ପ୍ରକାଶଭଙ୍ଗୀର ଆବଶ୍ୟକତା ନାହିଁ ବୋଲି କହିଛନ୍ତି । ହୃଦୟର ମେଳ ଥିଲେ ବାକ୍‌ପ୍ରକାଶ ବିନା ଲୁହ ଆଉ କୋହ ମଧ୍ୟ ଅଧିକ ଭାବ ପ୍ରକାଶ କରି ଏକକୁ ଆରେକର ନିକଟରୁ ନିକଟତର କରିଥାଏ । ତେଣୁ କବି କହିଛନ୍ତି—

"ଲୁହ କୋହ ଯେତେ କଥା କହନ୍ତିରେ ରସନା
ନ ପାରେ ବଖାଣି ।"

ସୌନ୍ଦର୍ଯ୍ୟପିପାସୁ କବି ବଞ୍ଚନ୍ଦଚରଣଙ୍କ ମନ ସ୍ୱାଭାବିକ ଭାବରେ ନାରୀ ସୌନ୍ଦର୍ଯ୍ୟରେ ଅଭିଭୂତ ହୋଇଯାଇଛି । ତେଣୁ 'ଶିଳ ଅବମା ଶୋଭା' ତାଙ୍କର ମାନସୀ । ସେ 'ତୁ ଏ ବେଶ ହୋଇବୁ ନାହିଁ' କହି ପ୍ରିୟତମାର ବେଶ-ବିନ୍ୟାସ ଦ୍ୱାରା ତା'ର ସ୍ୱାଭାବିକ ସୌନ୍ଦର୍ଯ୍ୟ କପରି ସମଧିକ ଲାବଣ୍ୟମୟ ହୋଇଥାଏ ଓ ପ୍ରାଣରେ କପରି ପୁଲକିତ ହୁଏ "ଲାଳସୀ ଏ ସାରା ପରାଣ" କହି ପ୍ରକାଶ କରିଛନ୍ତି—

"ଲାଜର ମନା ନ ମାନି ଅବାଧ ନୟନ ବେନି
ଅଳି ସମ ଅୟି ଧନି ! ମୁଖେ ତୋ ମଜ୍ଜେ
ଅନ୍ତର ତରଳ ହୋଇ ଅଜାଣତେ ଯାଏ ବହି
ଚୁମିବ ଆବର୍ତ୍ତ ହୋଇ ତୋ ପଦ କଞ୍ଜେ
ଲାଳସୀ ଏ ସାରା ପରାଣ
ନିଃଶେଷି ତୋ ରୂପସୁଧା କରିବ ପାନ ।"

'ପଲ୍ଲୀବଧୂ' ଓ ଶିଶୁର ସାରଲ୍ୟ ତାଙ୍କୁ ମୁଗ୍ଧ କରିଥିଲା । ଶିଶୁମାନଙ୍କ ଉଦ୍ଦେଶ୍ୟରେ ସେ 'ଶିଶୁରଞ୍ଜନ', 'ପିଲାଙ୍କ ଭାରତ ଜନନୀ', 'ଅଜଟ ନିତାଇ', 'ପିଲାଙ୍କ ଉତ୍କଳମଣି', 'ଜହ୍ନ' ପ୍ରଭୃତି କେତେକ କବିତା ଅତି ସରଳ ଭାଷାରେ ରଚନା କରି ସୁଧୀଜନ ଉଦ୍ଦିଷ୍ଟ କାବ୍ୟକ ଶୈଳୀ ସହ ଶିଶୁଜନୋଚିତ ସରଳ ରଚନା ଭଙ୍ଗୀରେ ସେ ସମାନ ପାରଦର୍ଶିତା ଲାଭ କରିଥିବା ପ୍ରତିପାଦନ କରିଛନ୍ତି ।

ଜୀବନଯାପନ ଯେତେ ବିଳାସମୟ ଓ ପ୍ରେମପୂର୍ଣ୍ଣ ହେଉନା କାହିଁକି ଭବିଷ୍ୟତ ଗଠନ ସକାଶେ ଜୀବନ-

କ୍ଷେତ୍ରରେ ଗୀତର ଆବଶ୍ୟକତା ଅପରିହାର୍ଯ୍ୟ ବୋଲି ହୃଦୟଙ୍ଗମ କରି କବି ବିଚ୍ଛନ୍ଦଚରଣ 'ରତ୍ନରେଣୁ' ଓ 'ଅଳସର ଦୁର୍ଦ୍ଦଶା' ପରି କେତେକ ଗୀତଗର୍ଭକ କବିତା ତାଙ୍କର 'କବିତା କୁମୁଦ'ରେ ରଚନା କରିଛନ୍ତି ।

ଏହାଛଡ଼ା ପ୍ରାଚୀନ ଓଡ଼ିଆ ସାହିତ୍ୟର ଅନ୍ୟ ଏକ ଋଦ୍ଧିମନ୍ତ ବିଭାଗ 'କୋଇଲି' ରଚନାରେ ମଧ୍ୟ କବି ହାତ ଦେଇ କବି 'ପ୍ରିୟତମା କୋଇଲି' ଓ 'ପ୍ରିୟତମ କୋଇଲି' ରଚନା କରିଥିଲେ । ବର୍ଣ୍ଣଲିପି ମାଧ୍ୟମରେ ଇଙ୍ଗିତ ଦେଇ କୌତୂହଳ ସୃଷ୍ଟି କରିବା ପ୍ରେମିକ-ପ୍ରେମିକାଙ୍କ ପତ୍ରାଳାପର ଏକ ପ୍ରାଚୀନ ରସିକ ପରମ୍ପରା । ବାତ୍ସାୟନଙ୍କ କାମସୂତ୍ରରେ ମଧ୍ୟ ଏପରି ଗୃଢ଼ୁର୍ଯ୍ୟକଳା ସମର୍ଥିତ ହୋଇଛି ।

ଜୀବନର ଶେଷ ପର୍ଯ୍ୟାୟରେ କବି ମନ ଲାବଣ୍ୟ-ବତୀରୁ ବୈଦେହୀଶ ବିଳାସ ପ୍ରତି ବା ପ୍ରକାରାନ୍ତରେ କହିଲେ ଭୌତିକତାରୁ ଆଧ୍ୟାତ୍ମିକତା ପ୍ରତି ଆକୃଷ୍ଟ ହୋଇଛି । ତେଣୁ ଯୌବନରେ ଶୃଙ୍ଗାର ରସାତ୍ମକ କାବ୍ୟ-କବିତା ରଚନା କରି ଯୌବନର ରସାଳ ଅନୁଭୂତିକୁ ପ୍ରକାଶ କରିସାରିବା ପରେ ପ୍ରୌଢ଼ ବୟସର ଆଧ୍ୟାତ୍ମିକ ଚିନ୍ତାଧାରାକୁ ରୂପ ଦେବାପାଇଁ ସେ ବିଭିନ୍ନ ଅଧ୍ୟାତ୍ମ ଗ୍ରନ୍ଥ ରଚନା, ସଂକଳନ ଓ ଅନୁବାଦରେ ମନ ଦେଇଥିଲେ । 'ତୁଳସୀ ରାମାୟଣ, ବାଳକାଣ୍ଡ'ର ଅନୁବାଦ, ଗୌରଚରଣ ଗ୍ରନ୍ଥାବଳୀ ସମ୍ପାଦନା ଓ ଶ୍ରୀଜଗନ୍ନାଥ ଜଣାଣ ଭଜନ ସଂକଳନ ଦ୍ୱାରା କବିଙ୍କର ଆଧ୍ୟାତ୍ମିକ ମନୋବୃତ୍ତିର ସ୍ପଷ୍ଟ ପରିଚୟ ମିଳେ ।

ତାଙ୍କର 'କବିତା କୁମୁଦ'ରେ ନିଜର ଯୌବନୋତ୍ତରଳ ରସାଳ ଭାବ ଯେପରି ପ୍ରକାଶ ପାଇଛି, 'ମୋ ସୁନାଗୁନ୍ଦ' ପରି କବିତାରେ ପୁତ୍ରଶୋକ ପରି ବ୍ୟକ୍ତିଗତ ଜୀବନର ଦାରୁଣ ଦୁର୍ବିପାକ କଥା ସେପରି ବ୍ୟକ୍ତ ହୋଇଛି । "ଅଛ ମୋର ନେତ୍ରମଣି ହେ ପୁରୁଷୋତ୍ତମ ! ମାୟାଧର, ହରିାନନ୍ଦ କି କରିବ ତମ ?" ପରି ଅଂଶ ବିଶେଷରେ କବିଙ୍କର ପ୍ରିୟତମା ପତ୍ନୀ ନେତ୍ରମଣି, ଆତ୍ମଜ ପୁରୁଷୋତ୍ତମ, ବିଶ୍ୱସ୍ତ ସହାୟକ ମାୟାଧର ଓ ଶିଷ୍ୟ ହରିାନନ୍ଦ ରାୟଙ୍କ ନାମୋଲ୍ଲେଖ ପ୍ରକାରାନ୍ତରେ କରି ତାଙ୍କର ହୃଦୟର ସ୍ନେହାଭିବ୍ୟକ୍ତି କରିଛନ୍ତି । ତାଙ୍କର ବ୍ୟକ୍ତିଗତ ଜୀବନର ବିଶେଷ ସହାୟକ ଓ ବନ୍ଧୁ ଗୋପାଳଚନ୍ଦ୍ର ପ୍ରହରାଜ ଓ ଲକ୍ଷ୍ମୀକାନ୍ତ ଚୌଧୁରୀଙ୍କ ପ୍ରତି ସେ କବିତା ମାଧ୍ୟମରେ କୃତଜ୍ଞତା ପ୍ରକାଶ କରିଛନ୍ତି । ସାହିତ୍ୟ ଯଦି ଭାବର ଉଚ୍ଛ୍ୱଳ ପ୍ରବାହ ବା ବ୍ୟକ୍ତିଗତ ଜୀବନର ପ୍ରତିଚ୍ଛବି ହୁଏ, ତେବେ 'କବିତା କୁମୁଦ' ସେ ଦୃଷ୍ଟିରୁ ଯଥାର୍ଥତଃ ଏକ ସଫଳ ସାହିତ୍ୟିକ ସୃଷ୍ଟି । କବିଙ୍କ ମତରେ 'ସାହିତ୍ୟ' ହେଉଛି—

"ମୁକୁରୋଦରରେ ବିମ୍ବ ପଡ଼ଇ ଯଥା
ଜାତି ଜୀବନ ବିମ୍ବ ସାହିତ୍ୟେ ତଥା ।"

ଏହି ଦୃଷ୍ଟିରୁ ବିଚାର କଲେ ମଧ୍ୟ 'କବିତା କୁମୁଦ' ଏକ ସାର୍ଥକ ସୃଷ୍ଟି । ଏଥିରେ ଦାରିଦ୍ର୍ୟର ଚିତ୍ର ଦେବାକୁ ଯାଇ 'ଭିକ ନ ମିଳିଲା ଆଉ' ପରି ଅନେକ କବିତାରେ ସାମାଜିକ ଚିତ୍ର ଅଙ୍କନ ହୋଇଛି । 'କବିତା କୁମୁଦ'ରେ ଏ ଜାତିର ଗୌରବୋଜ୍ଜ୍ୱଳ ଅତୀତ ଇତିହାସ, ରାଗରାଗିଣୀମୟ ପ୍ରାଚୀନ ସାହିତ୍ୟ, ବିଶ୍ୱ-ବିଖ୍ୟାତ 'କୋଣାର୍କ' ପରି ଭାସ୍କର୍ଯ୍ୟ ଶିଳ୍ପ ଓ ଦ୍ୱୀପାନ୍ତରରେ ଓଡ଼ିଆ ପୁଅଙ୍କ ବାଣିଜ୍ୟ-ବ୍ୟବସାୟ ପରି ଅନେକ ଐତିହ୍ୟପୂର୍ଣ୍ଣ ଘଟଣାଚୟ ସ୍ଥାନ ପାଇଛି । ଏ ଜାତିର ଆଶା, ଆକାଙ୍କ୍ଷା ଓ କାମ୍ୟ ଭବିଷ୍ୟତର ମଞ୍ଜୁଳ ଛବି ବହନ କରି 'କବିତା କୁମୁଦ' ପ୍ରତି ପାଠକଙ୍କ ହୃଦୟର ଆନନ୍ଦ ଚନ୍ଦ୍ର ସହିତ ସମ୍ପର୍କ ସ୍ଥାପନ କରି ସାର୍ଥକ ହୋଇଛି । ପ୍ରାଚୀନ ଓଡ଼ିଆ କବି, ପ୍ରାଚୀନ ଓଡ଼ିଆ ସାହିତ୍ୟ, ପ୍ରାଚୀନ ରାଗରାଗିଣୀ ପ୍ରଭୃତି ଯାହା କିଛି ପ୍ରାଚୀନ ଶୁଦ୍ଧ-ସୁବର୍ଣ୍ଣ ସେଥିରେ ଆଧୁନିକ ଭାବ କୁମୁଦର ଆମୋଦ ଧରି ବିଚ୍ଛନ୍ଦଚରଣଙ୍କ 'କବିତା କୁମୁଦ' 'ହେମରେ ସୁଗନ୍ଧ' ନ୍ୟାୟରେ ଧନ୍ୟ ହୋଇଛି ।

# ଯଥାର୍ଥ ପୁରୋଦୃଷ୍ଟିତାର ଜାତୀୟ ପ୍ରତୀକ ଥିଲେ ବିଚ୍ଛନ୍ଦଚରଣ

**ଶ୍ରୀ ପରମାନନ୍ଦ ଅଧିକାରୀ,** ସମ୍ପାଦକ 'କଳାବିନୋଦ'

କୋଟିବ୍ରହ୍ମାଣ୍ଡସୁନ୍ଦରୀ, ସର୍ବବନ୍ଦ୍ୟା ଉତ୍କଳ ଜନନୀଙ୍କର ଶ୍ରେଷ୍ଠ ସନ୍ତାନମାନଙ୍କ ମଧ୍ୟରେ କବି ବିଚ୍ଛନ୍ଦଚରଣ ପଟ୍ଟନାୟକ ବି ଥିଲେ ଅନ୍ୟତମ । ଯଥାର୍ଥ ପୁରୋଦୃଷ୍ଟିତାର ସେ ଥିଲେ ଜାତୀୟ ପ୍ରତୀକ । ତାଙ୍କର ଦୁର୍ଲ୍ଲଭ ବ୍ୟକ୍ତିତ୍ୱ ଓ ମନୀଷାର ସଫଳ ରୂପାୟନ ଘଟିଥିଲା ବହୁଭାବରେ, ବହୁ କ୍ଷେତ୍ରରେ ।

ମଣିଷ ଜୀବନ ନୁହଇ କେବଳ
ବର୍ଷ ମାସ ଦିନ ଦଣ୍ଡ
କର୍ମେ ଜୀଏ ନର, କର୍ମ ଏକା ତାର
ଜୀବନର ମାନଦଣ୍ଡ ।

ଉତ୍କଳମଣି ଗୋପବନ୍ଧୁଙ୍କର ଏହି ଅମର ବାଣୀକୁ ସେ ମର୍ମେ ମର୍ମେ ଅନୁଭବ କରିଥିଲେ । କବି ବିଚ୍ଛନ୍ଦଚରଣ ସୁକର୍ମଦ୍ୱାରା କେବଳ ସୁଧନ୍ୟ ହୋଇନାହାନ୍ତି । ସୁକୃତି ଦ୍ୱାରା ସେ ସୁକୀର୍ତ୍ତିର ଉତ୍ତୁଙ୍ଗ ଶିଖରକୁ ଆରୋହଣ କରି ମରଣକୁ ଅମୃତ ସୋପାନରେ ପରିଣତ କରିଛନ୍ତି ।

ସେ ଏକାଧାରରେ ଥିଲେ ସୁନାମଧନ୍ୟ ସାମ୍ବାଦିକ, ବିଶିଷ୍ଟ ଅନୁବାଦକ, ପ୍ରତିଷ୍ଠିତ ସାହିତ୍ୟିକ, ଅନମନୀୟ ସାହିତ୍ୟ ସଂଗଠକ, ବିନମ୍ର ଭକ୍ତ, ଉଗ୍ର ଜାତୀୟବାଦୀ ଓ ନବନବଉନ୍ମେଷଶାଳିନୀ ପ୍ରଜ୍ଞାର ବାହକ ସୁକବି ।

ତାଙ୍କର କବିତ୍ୱ ଯେ ଖୁବ୍ ପୁଷ୍ପିତ ଓ ବିକଶିତ ହୋଇ ଉତ୍କଳ ଭାରତୀଙ୍କ ହସ୍ତମୁଦ୍ରିତ ମାହାଲି ବାଣୀ-ଭଣ୍ଡାରକୁ ସମୃଦ୍ଧ କରିଥିଲା—ଏହା ଅସ୍ୱୀକାର କରିବାର ଉପାୟ ନାହିଁ । ଇଂରାଜୀ ସାହିତ୍ୟର କ୍ଷଣଜନ୍ମା କବି ଗୋଲଡ୍‌ସ୍ମିଥ୍ ଯେପରି ଅଳ୍ପ ଲେଖି ଇଂରାଜୀ ସାହିତ୍ୟରେ ଅମର ହୋଇଛନ୍ତି, ବିଚ୍ଛନ୍ଦଚରଣ ସେହିପରି ସ୍ୱଳ୍ପ ଲେଖି ବିଦଗ୍ଧ କବି ଭାବେ ଓଡ଼ିଆ ସାହିତ୍ୟରେ ଅମର ହୋଇଛନ୍ତି । ତାଙ୍କର ମାଟି-ଦେହକୁ ସିନା ଶ୍ମଶାନ ଗ୍ରାସିଛି ମାତ୍ର ତାଙ୍କର ଅମର ଆତ୍ମାର କଳାତ୍ମକ, କାବ୍ୟିକ ରିଜୁସ୍ୱରର ପ୍ରତିଧ୍ୱନିରେ ଏବେ ବି ଜଳ, ସ୍ଥଳ, ଆକାଶ ନିନାଦିତ ହେଉଛି ।

ଓଡ଼ିଆ-ଓଡ଼ିଶାର ଉନ୍ନତି ବିଧାନ ନିମିତ୍ତ ସତତ ତାଙ୍କର ପ୍ରାଣ କାନ୍ଦୁଥିଲା । ଓଡ଼ିଆ-ଓଡ଼ିଶାର ଆତ୍ମାକୁ ଚିହ୍ନିବାରେ ସେ ଥିଲେ ପ୍ରକୃଷ୍ଟ ଜହ୍ରୀ । ଜାତିର ଉନ୍ନତି ଓ ଜାତୀୟତାର ସମୃଦ୍ଧି ନ ଘଟିଲେ କାହାରି ଯେ କିଛି ଲାଭ ହେବ ନାହିଁ ସେ ଭଲ ଭାବରେ ହୃଦୟଙ୍ଗମ କରିଥିଲେ । 'ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ' କଥାଟି ତାଙ୍କ ପ୍ରାଣ ବିପଞ୍ଚିରେ ସତତ ଝଂକୃତ ହେଉଥିଲା । କପିଳ ସଂହିତାରେ ଯେପରି ଅଛି—

ବର୍ଷାନାଂ ଭାରତ ଶ୍ରେଷ୍ଠଃ
ଦେଶାନାମୁତ୍କଳ ସ୍ମୃତଃ
ଉତ୍କଳସ୍ୟ ସମୋ ଦେଶଃ
କ୍ୱଚିତ୍ ନାସ୍ତି ମହୀତଳେ ।"

ଦେଶପ୍ରାଣ ବିଚ୍ଛନ୍ଦଚରଣ ସେହିପରି ଲେଖିଥିଲେ—

କଳିଙ୍ଗ ଭୂଇଁ କି ସାରଦା
ଅପାର କାଳରୁ ବରଦା ।

କଳିଙ୍ଗେ ଯେଉଁ ରୂପ ବହି
ଜନମ ମୋହନ୍ତି ଏ ମହୀ ।
ସେ ରୂପ ଅତି ଅଭିରାମ
ସକଳ ସଉନ୍ଦର୍ଯ୍ୟ ଧାମ ।
କଳିଙ୍ଗ ଭାରତୀ ତାହାରେ
କଳପି ଧାଏଁ ନିରନ୍ତରେ ।"

ଓଡ଼ିଆ ସାହିତ୍ୟ, ସଂସ୍କୃତି, କଳାର ଉନ୍ନତି ବିଧାନ ନିମନ୍ତେ, ନାନା ଘାତ ପ୍ରତିଘାତ, ବାଧାବିଘ୍ନ ଭିତରେ, ନିଜର ଆଭିମୁଖ୍ୟରେ, ନୀତିରେ, ପ୍ରତିଜ୍ଞାରେ ଅଟଳ ରହି, ଉଦାତ୍ତ କଣ୍ଠରେ ଜାଗୃତିର ଜୟଗାନ ଗାଇ, ତୀବ୍ର ଜାତୀୟତାବୋଧର ମୌଳିକ ଭିତ୍ତି-ଭୂମି ଉପରେ ସେ ପ୍ରତିଷ୍ଠା କରିଥିଲେ କଳିଙ୍ଗଭାରତୀ । ସେ ଗମ୍ଭୀର ଭାବରେ ଅବଧାରଣା କରିଥିଲେ ଯେ—

"ପ୍ରତିବଧ୍ନାତିହି ଶ୍ରେୟଃ
ପୂଜ୍ୟପୂଜା ବ୍ୟତିକ୍ରମଃ ।"

ପୂଜ୍ୟ-ପୂଜାର ବ୍ୟତିକ୍ରମ ଘଟିଲେ କାହାରି ମଙ୍ଗଳ ହୁଏ ନାହିଁ । ତେଣୁ ସେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ବଳଦେବ ରଥ, କବିକଳହଂସ ଗୋପାଳକୃଷ୍ଣ, ଭକ୍ତକବି ବନମାଳୀ ଓ ଗୌରହରି ପ୍ରଭୃତି ବରେଣ୍ୟ, କ୍ଷଣଜନ୍ମା କବିମାନଙ୍କ ଲାଗି ସତତ ଓ ସଶ୍ରଦ୍ଧ ଜାଳି ଦେଇଥିଲେ ଭକ୍ତି-ପୂତ-ବନ୍ଦନା ଦୀପାଳୀ । ଇନ୍ଦ୍ରଧନୁ-ବିଜୁଳିର ଅହେତୁକୀ ଯୁଦ୍ଧରେ ନିଷ୍ପ୍ରଭ ହୋଇ ଯାଇଥିବା ଭଂଜୀୟ ପ୍ରଚଣ୍ଡ ପ୍ରତିଭାକୁ ପୁଣି ଉଠାଇ ଦେଲେ ସେ ଭାସ୍ୱରତାରେ । ଓଡ଼ିଶୀ ସଙ୍ଗୀତର କମନୀୟତାକୁ ସର୍ବତ୍ର ପ୍ରଚାର କରିବା ପାଇଁ ସେ ପ୍ରବଳ ପ୍ରଚେଷ୍ଟା କରିଥିଲେ ।

କବି ବିଚ୍ଛନ୍ଦଚରଣ ଜଣେ ଉଚ୍ଚକୋଟୀର ଟାଣୁଆ, ନିଷ୍ଠାପର ସାହିତ୍ୟ ସଂଗଠକ ଭାବରେ ଉତ୍କଳ ସାହିତ୍ୟ-ସମାଜ, ପ୍ରାଚୀ ସମିତି, ଭାଷାକୋଷ ଓ ଅର୍କସପ୍ତ ସାହିତ୍ୟ ସଂଗଠନଗୁଡ଼ିକୁ କେବଳ ସଜାଡ଼ି ନ ଥିଲେ, ସେ ବହୁ ସାହିତ୍ୟିକ ସୃଷ୍ଟି କରିଥିଲେ । ସେ ଜଣେ ପ୍ରବୀଣ ଅନୁବାଦକ ଭାବରେ ପ୍ରସିଦ୍ଧି ଅର୍ଜନ କରିବା ମୂଳରେ ଥିଲା—ଇଂରେଜି ସାହିତ୍ୟରେ ତାଙ୍କର ଅଗାଧ ଜ୍ଞାନ ଓ ବ୍ୟୁତ୍ପତ୍ତି ।

ସତ୍ୟ-ଶିବ-ସୁନ୍ଦରର ପରମ ପୂଜାରୀ ଭାବରେ ନୁହନ୍ତି, ଜଣେ ନୈଷ୍ଠିକ ଜାତୀୟତାବାଦୀ ଭାବରେ ଓଡ଼ିଆ ଓଡ଼ିଶା ଥିବାଯାଏ ସେ ଜୀବିତ ରହିବେ । ଜାତି ଓ ଜାତୀୟତାର ଉନ୍ନତିହିଁ ତାଙ୍କର ସତତ କାମ୍ୟ ଥିଲା । ଜାତିର ଅଧଃପତନକୁ ଲକ୍ଷ୍ୟକରି ଉତ୍କଳ-ଜନନୀଙ୍କ ନିକଟରେ ନିଉଚ୍ଛୁଳି ହୋଇ ତେଣୁ ସେ ଗାଇଥିଲେ—

"ହେ ଜନନୀ ସ୍ୱପ୍ନ ତ ଭାଙ୍ଗୁନାହିଁ
କାଳସରିତ ପରି ଯାଉଚ୍ଛି ବହି
ଖାରବେଳ ଭାରତ ଭୁଲିଲେଣି ସନ୍ତତି
ଅଧୋଗତି ପାଦୁକା ଶିରେ ବହି ।"

# କଳିଙ୍ଗପ୍ରାଣ ବାଞ୍ଛାନିଧିଚରଣ

ଡାକ୍ତର ଶୈଳେଶ୍ୱର ନନ୍ଦ, ଏମ୍. ଡ. ସମ୍ପାଦକ, 'କଳିଙ୍ଗଭାରତୀ'

କଳିଙ୍ଗ ସଂସ୍କୃତିର ଜାଗ୍ରତ ପ୍ରହରୀ ଓ ଶାଶ୍ୱତ ପୂଜାରୀ ସଂଗ୍ରାମଧର୍ମୀ, ଅନମନୀୟ ସଙ୍ଗଠକ କଳିଙ୍ଗ-ପ୍ରାଣ ବାଞ୍ଛାନିଧି ଚରଣ ବଂଶ ଖୋର୍ଦ୍ଧାର ଅୟୂମାରମ୍ଭରେ ଜାଆଁଲା ଗ୍ରାମରେ ଭୂମିଷ୍ଠ ହୋଇଥିଲେ । ଜୀବନର ନାନା ଘାତପ୍ରତିଘାତକୁ ଲଙ୍ଘନ କରି ଜୀବନ ଓ ଜୀବିକାକୁ ଭ୍ରୂକ୍ଷେପ ନ କରି, ଚାକିରୀ ଓ ଅର୍ଥୋପାର୍ଜନକୁ ପଦାଘାତ କରି କବି ସାହିତ୍ୟ ଜଗତରେ ଏକ ବିପ୍ଳବାତ୍ମକ ଅଧ୍ୟାୟ ସୃଷ୍ଟି କଲେ । ବିଜାତୀୟତାର ପ୍ରବାହରେ ଓଡ଼ିଆ କଳା, ସାହିତ୍ୟ ଓ କୃଷ୍ଟି ଯେତେ-ବେଳେ ଭଗ୍ନମୁଖୀ, ଯେତେବେଳେ ଓଡ଼ିଆର ନିଜସ୍ୱ ସାଂସ୍କୃତିକ ପ୍ରବାହ ମନ୍ଥର ଓ ପଥଭ୍ରଷ୍ଟ, ସେତେବେଳେ ବାଞ୍ଛାନିଧିଚରଣ ମା ଭାରତୀର ବୀଣାରେ ଜାତୀୟତାର ନୂତନ ଝଙ୍କାର ତୋଳିବାକୁ ଅଭିପ୍ରେତ ହେଲେ । ଜାତୀୟ ଚେତନାରେ ଯୁବଗୋଷ୍ଠୀକୁ ଉଦ୍‌ବୁଦ୍ଧ ଓ ଉନ୍ମାଦିତ କରି ସଂଗଠକ ବାଞ୍ଛାନିଧିଚରଣ କହନ୍ତି— "କୌଣସି ଦେବାଳୟର କାରୁକାର୍ଯ୍ୟ ଉପରେ ଶିଉଳି ମାଡ଼ିଯାଇ ଯେପରି ସେ କାରୁକାର୍ଯ୍ୟକୁ ଲୋକ-ଚକ୍ଷୁ ସମକ୍ଷରୁ ଅପସାରିତ କରିରଖେ, ବିଜାତୀୟତା ପ୍ରଭାବରେ ଆଜି କଳିଙ୍ଗ କୃଷ୍ଟି ସେହି ଦୁର୍ଦ୍ଦଶା ଲାଭ କରିଛି । କଳିଙ୍ଗ କୃଷ୍ଟିକୁ ଏଥିରୁ ବିମୁକ୍ତ କରିବାକୁ ପଡ଼ିବ । ଏହା ଯାହାଦ୍ୱାରା ସମ୍ଭବ ହେବ ସେ ମହା-ଶକ୍ତିଧର ପୁରୁଷ ହେବା ଏକାନ୍ତ ପ୍ରୟୋଜନ ।" ଗୁରୁଦେବଙ୍କର ଏହି ଆଗ୍ନେୟ ବାଣୀର ଓଜସ୍ୱିନୀ ପ୍ରକାଶରେ ସଙ୍ଗଠିତ ହେଲା 'କଳିଙ୍ଗ ଭାରତୀ' ଓ 'ଉତ୍କଳ ଯୁବ ସାହିତ୍ୟ ସମାଜ' ୧୯୪୩ ମସିହାରେ । ଓଡ଼ିଶାର ଉଦ୍‌ବୁଦ୍ଧ ତରୁଣଗୋଷ୍ଠୀକୁ ଜାତୀୟ ସଂସ୍କୃତିର ସୁରକ୍ଷା ଓ ଐତିହ୍ୟ ଅନୁସାରୀ ଯୁଗୋପଯୋଗୀ ସାହିତ୍ୟ ଓ କଳା ସୃଷ୍ଟି କରିବାର ମନ୍ତ୍ରରେ ଦୀକ୍ଷିତ କଲେ ସେ । କେବଳ ଭାଷଣ ମାଧ୍ୟମରେ ଯୌବନର ଉଚ୍ଛଳ ତରଙ୍ଗାୟିତ ସ୍ରୋତର ଦିଗ ବଦଳାଇବାକୁ ସେ ଚାହିଁ ନ ଥିଲେ । ନିଜର ପରମ୍ପରାସମ୍ମତ ରାଗରାଗିଣୀସମନ୍ୱିତ କବିତା ସର୍ଜନାରେ ସେ ଆଦର୍ଶ ସୃଷ୍ଟି କରି ନିବିଡ଼ଗଧ କଣ୍ଠରେ ମା ଭାରତୀ ପାଖରେ ଗାଇଛନ୍ତି—

> "ହେ ଜନନୀ ଶୟନ ତ ଭାଙ୍ଗୁନାହିଁ,
> କାଳ ସରିତ ପରି ଯାଉଛି ବହି
> ଖାରବେଳ କୀରତି ଭୁଲିଲେଣି ସନ୍ତତି
> ଅଧୋଗତି ପାଦୁକା ଶିରେ ବହି ।"

ତାଙ୍କର ଅଶେଷ କଷଣମୟ ଶାରୀରିକ ଦୁରବସ୍ଥା ତାଙ୍କୁ ସାହିତ୍ୟ ସଂଗ୍ରାମ ଓ ସାଧନା ପଥରୁ ବିଚ୍ୟୁତ କରି ପାରି ନ ଥିଲା, ବରଂ ଉତ୍କଳଭାରତୀର ବେଦନାକୁ ନିଜର ଭୌତିକ ବେଦନା ଅପେକ୍ଷା ସେ ବେଶି ଅନୁଭବ କରିଥିଲେ । ଏଣୁ ସମସ୍ତ ଜୀବନ କାଳ ମଧ୍ୟରେ ବହୁ ବାଧା ବିଘ୍ନ, ଘାତ ପ୍ରତିଘାତକୁ ଭ୍ରୂକ୍ଷେପ ନ କରି ନିଜର ସଂଗ୍ରାମ ପଥରେ ଅଟଳ ରହିଥିଲେ । ନିଜର ଶିଷ୍ୟମଣ୍ଡଳୀକୁ ମଧ୍ୟ ତଦନୁରୂପ ଆଶାବାଦୀ ହୋଇ ସମ୍ମୁଖ ଯୁଦ୍ଧରେ ଅବତୀର୍ଣ୍ଣ ହେବାକୁ ପ୍ରେରଣା ଦେଇ ଗୁରୁଦେବ ବାଞ୍ଛାନିଧି ଚରଣ କହିଥିଲେ –

"କୌଣସି ସାଧକର ନୈରାଶ୍ୟବାଦ ପୋଷଣହିଁ ଜୀବନ୍ମୃତ ଅବସ୍ଥା । ମୋର ପ୍ରାଣପ୍ରିୟ ଶିଷ୍ୟମଣ୍ଡଳୀ ମନେ ରଖିବା ଉଚିତ ଯେ ସେମାନେ ହିମାଳୟ ପରି

ସୁଦୃଢ଼ ଓ ଉନ୍ନତ । ରୁଷୋ, ଭୋଲଟାୟାରଙ୍କ ଲେଖନୀ ଶକ୍ତି ଓ ଗାନ୍ଧୀଙ୍କର ନିଷ୍ଠାପର ସାଧନାରେ ଅଧ୍ୟାୟ ପରିବର୍ତ୍ତିତ ହୋଇ ଯାଇଅଛି । ଅଙ୍କଲ୍ ଟମ୍‌ସ କାବିନ୍‌ର (ଟମକକାଙ୍କ କୁଟୀର)ର ଲେଖକ ଦାସ ବ୍ୟବସାୟର ମୂଳୋତ୍ପାଟନ କରିଥିଲେ । ତେଣୁ ମୁଁ ମୋର ଶିଷ୍ୟ-ମଣ୍ଡଳୀକୁ ଆଉ ଥରେ ସତର୍କ କରି ଦେଉଛି ଯେ ସେମାନଙ୍କର ନିଜ ଉପରେ ଖର୍ବୀକୃତ ଧାରଣା ବା ଅବିଶ୍ୱାସ ଯେପରି ନ ଜନ୍ମେ । ସେହି ଧାରଣା ପତନର ପଥ ପରିଷ୍କୃତ କରିଦେବ ।”

ନିଜ ଉପରେ ଅସୀମ ଆତ୍ମବିଶ୍ୱାସ ନ ରଖିଲେ, ଏ ଜାତିର ଉତ୍‌ଥାନ ଅସମ୍ଭବ । ଏହା ସେ ହୃଦୟଙ୍ଗମ କରିଥିଲେ । ଗରିମାମୟ ଐତିହ୍ୟର ଭିତ୍ତିଭୂମି ଉପରେ ପୁଣି ଗୌରବୋଜ୍ଜ୍ୱଳ ଭବିଷ୍ୟତ ସ୍ଥାପିତ ହୋଇପାରିବ ସେ ବିଶ୍ୱାସ ତାଙ୍କର ଥିଲା । କଳିଙ୍ଗର ଅତୁଳନୀୟ ସୁଷମା, ଭୌଗୋଳିକ ରୂପାୟନ, କମନୀୟ କଳା ଓ ସାଂସ୍କୃତିକ ଐତିହ୍ୟରେ ଉଦ୍‌ବୁଦ୍ଧ ହୋଇ ଦେଶପ୍ରେମୀ କଳିଙ୍ଗପ୍ରାଣ ବାଞ୍ଛାନିଧି ଗାଇଛନ୍ତି—

“କେଉଁ ଭୂମି କହ ଭଲ ତୋହ ସମା ଗୋ
ଶସ୍ୟଶ୍ୟାମା,
ଉତ୍କଳରେ ବଙ୍ଗ ସାଗର ତରଙ୍ଗ,
ଧୂଅଇ ଜନନୀ ତୋହ ଅଧମାଙ୍ଗ,
ତରଣୀ ବିଶାଳ ଭୂଷିତ ମା କଳିଙ୍ଗ,
କଳା ଲକ୍ଷ୍ମୀ—ମନୋରମା ଗୋ ।

× × × ×

କ୍ଷୀର ନୀର ବକ୍ଷେ ବହି ଆଉ ବାରେ
କେଶରୀ ଗହ୍ୱର ଭରୁ କେଶରୀରେ
ବାଞ୍ଛାନିଧିଙ୍କ ନତ କାହାଠାରେ ନୋହୁ ମା ।
ତ୍ରିଦଶ-କାମ୍ୟା ଗୋ ।”
(କବିତା କୁମୁଦ)

ସାହିତ୍ୟ ସଂଗ୍ରାମୀ ବାଞ୍ଛାନିଧି ଚରଣ ସ୍ୱୀୟ ସଂଗ୍ରାମ ପଥରେ ଅଚଳ, ଅଟଳ ରହି ବିଜାତୀୟତା ପରିହାର-ପୂର୍ବକ ଜାତୀୟ ପରମ୍ପରା-ସମ୍ମତ ସାହିତ୍ୟ ସୃଷ୍ଟି ଓ କଳା ସ୍ଥାପତ୍ୟର ପ୍ରତିଷ୍ଠା ପାଇଁ ଯେ ବଦ୍ଧପରିକର ଥିଲେ ତାହା ଉପରୋକ୍ତ ଅଭିବ୍ୟକ୍ତିରୁ ବେଶ୍ ଅନୁମେୟ ।

ଜାତୀୟ ଜାଗରଣ ନିମିତ୍ତ ସେ ବାରମ୍ବାର ନିଜର ଅଭିଭାଷଣମାନଙ୍କରେ, ସାହିତ୍ୟ ପ୍ରକାଶନମାନଙ୍କରେ, ପ୍ରାଚୀ ପତ୍ରିକାରେ, ଇଂରାଜୀ ବୈତରଣୀ ଏବଂ ଦି ଜର୍ଣ୍ଣାଲ ଅଫ୍ ଦି ଓଡ଼ିଶା ଏକାଡେମୀରେ ଓ ଓଡ଼ିଆ ଜାଗରଣ ପତ୍ରିକା ସମ୍ପାଦନା କରୁଥିବା ସମୟରେ ଏ ଜାତିକୁ ଉଦ୍‌ବୁଦ୍ଧ କରିଥିଲେ । ସାହିତ୍ୟ ସମାଜର ସହ-ସମ୍ପାଦକ ଭାବେ ମଧ୍ୟ ବାଞ୍ଛାନିଧି ଓଡ଼ିଶାର ସାହିତ୍ୟିକମାନଙ୍କୁ ବାରମ୍ବାର ନିଜସ୍ୱ ସାହିତ୍ୟିକ ପରମ୍ପରା ବିଷୟରେ ସଚେତନ କରି ଏ ଜାତୀୟ ଜାଗରଣରେ ସ୍ୱାର୍ଥାହୂତି ଦେଇ ଲକ୍ଷ୍ୟ ପ୍ରଦାନ କରିବାକୁ ଆହ୍ୱାନ କରିଥିଲେ । ବହୁ ସାହିତ୍ୟିକ ବନ୍ଧୁ ତାଙ୍କୁ ପ୍ରଶ୍ନ କରି-ଛନ୍ତି ଯେ – ଅତୀତର କାବ୍ୟ କବିତାରେ ଆଉ କୋଉ ଛନ୍ଦ ରସର ବାକି ଅଛି ଯେ ଏ ଯୁଗର ସାହିତ୍ୟରେ ତାହା ପ୍ରକଟିତ ହେବ ? ତାର ଉତ୍ତରରେ କବି ଲେଖିଛନ୍ତି—

“ଛନ୍ଦ ରସ ରାଜ୍ୟ ଲୁଟିଛି ଅତୀତ
ରଖିନାହିଁ କିଛି ବାକୀ
ନବ ଯୁଗ ସିନ୍ଧୁ ମନ୍ଥନୁ ଅମୃତ
ଲାଳସୀ, ନାହିଁ ତା ଗୃଖି ।”

ନବ ଯୁଗର ସିନ୍ଧୁ ମନ୍ଥନରୁ ଉଦ୍ଧୃତ ଅମୃତର ଲାଳସାରେ ଆମ୍ଭେମାନେ ଆଶାୟୀ, ତାହାହିଁ କଳିଙ୍ଗ ଭାରତୀର ନୂତନ ସାରସ୍ୱତ ବିମଣ୍ଡନା । କବି ନିଜର ଚିନ୍ତାଧାରାକୁ ଆହୁରି ସ୍ପଷ୍ଟତର କରିବାକୁ ଯାଇ ଅନ୍ୟତ୍ର ଲେଖିଛନ୍ତି—

ସେ କାଳ ବିପଞ୍ଚ ଏକାଳ ତାନ—
ଯୋଗବିନା ଧର୍ମ ହାରୁଛି ମାନ
ଛନ୍ଦ କଳ୍ପତରୁ ତଳେ ଯେ ।
ରହି ରସସୁଧା ନ ମେଣ୍ଟୁଛି ତାର
ଭାଗ୍ୟ ବଳିବ କେ ବଳେ ଯେ ॥

କବିଙ୍କ ଭାଷାରେ ଛନ୍ଦ କଳ୍ପତରୁ ତଳେ ରହି ମଧ୍ୟ ଉତ୍କଳୀୟମାନଙ୍କର ରସସୁଧା ମେଣ୍ଟୁନାହିଁ, ଏଣୁ ସେ ରସସୁଧା ମେଣ୍ଟାଇବା ପାଇଁ ଉତ୍କଳୀୟମାନଙ୍କୁ ପୁଣି ପ୍ରାଚୀନ ଛନ୍ଦରେ ବିଶ୍ୱଭାବନାର ସଂଯୋଗ କରାଇ (ସେ କାଳ ବିପଞ୍ଚ ଏକାଳ ତାନ) ଗାଇବାକୁ ଉଦ୍‌ବୋଧନ ଦେଇଛନ୍ତି ।

ଅତୀତ ଓ ଭବିଷ୍ୟତ ମଧ୍ୟରେ ଯୋଗସୂତ୍ର ରୂପେ ବର୍ତ୍ତମାନର ସ୍ଥିତି ବୋଲି କବି ବିଚ୍ଛନ୍ଦଚରଣଙ୍କର ଯୁକ୍ତି । ଅତୀତର ପୃଷ୍ଠଭୂମି ଉପରେ ଗଠିତ ବର୍ତ୍ତମାନର ପୁଣ୍ୟ ଫଳ ଭବିଷ୍ୟତ ବଂଶଧରମାନଙ୍କ ପାଇଁ ମଧ୍ୟ ଦିଗଦର୍ଶନ ଦେବ । ଏହାହିଁ ସଂସ୍କୃତି ତଥା ସାହିତ୍ୟର ଦର୍ଶନ ହେବା ବିଧେୟ ବୋଲି ତାଙ୍କର ମତ ।

ଜାତୀୟ ଜୀବନ ପରମ୍ପରାର ସମଷ୍ଟିରୁ ଉଦ୍ଭୂତ ହୁଏ । ପୁରାତନର ଯାହା ଉପଯୋଗୀ ତାକୁ ସଂରକ୍ଷଣ କରି ତତ୍‌ସହ ନୂତନର ମଧୁର ସମାବେଶ କରି ଜାତୀୟ ପ୍ରାଣକୁ ଦୃଢ଼ ଭାବରେ ସଂଗଠିତ ତଥା ସଂସ୍ଥାପିତ କରିବା ଯୁଗପ୍ରବର୍ତ୍ତକମାନଙ୍କର ଧର୍ମ । ଯେଉଁମାନେ କେବଳ ନୂତନର ପକ୍ଷପାତୀ ସେମାନେ ଏକଦିଗଦର୍ଶୀ । ଏହାହିଁ ବିଚ୍ଛନ୍ଦଚରଣଙ୍କର ଜାତୀୟ ସାହିତ୍ୟ ସଂଗ୍ରାମର ଘୋଷଣା । ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତି କବିଙ୍କର ଏହି ଜାତୀୟ ସାହିତ୍ୟର ପ୍ରକାଶ "କବିତାକୁମୁଦ" ଉପରେ ମନ୍ତବ୍ୟ ଦେଇ କହିଛନ୍ତି—"ପ୍ରାଚୀନ ଛନ୍ଦ ବନ୍ଧରେ ବିପରି ଜଗତର ନୂତନ ଭାବରାଜି ସୁବିମଳ ଆଭାରେ ପ୍ରକଟିତ ହୁଏ ତାହା ସ୍ୱରଚିତ କବିତା କୁମୁଦରେ ଶ୍ରୀମାନ୍ ବିଚ୍ଛନ୍ଦ ଚରଣ ଦର୍ଶାଇ ଅଛନ୍ତି ।"

କବି ବିଚ୍ଛନ୍ଦଚରଣଙ୍କର ଦେଶପ୍ରାଣତା ତାଙ୍କର ଜୀବନର ଗତିରେ ଅପ୍ରତିହତ । କବିଙ୍କର ବାଲ୍ୟଜୀବନ ବର୍ଣ୍ଣନାତୀତ ଦାରିଦ୍ର୍ୟ ଓ ଦୁଃଖ କଷ୍ଟରେ ସଂଗଠିତ । ତତ୍‌ସଙ୍ଗକୁ ଶାରୀରିକ ଅସାମର୍ଥ୍ୟ ତଥା ଖଞ୍ଜ ପଣର ତାଙ୍କର ଜୀବନକୁ ଅଧିକ କଷଣମୟ କରିଥିଲା । କିନ୍ତୁ ଏସବୁରେ ସେ ଭାଙ୍ଗି ପଡ଼ିବାର ନୁହନ୍ତି । ଏପରିକି ଏ ସମସ୍ତ ବାଧା ସତ୍ତ୍ୱେ ସେ ମହାତ୍ମା ଗାନ୍ଧୀଙ୍କର ଅସହଯୋଗ ଆନ୍ଦୋଳନକୁ ଡେଇଁପଡ଼ିଥିଲେ । ଏହା ତାଙ୍କର ଜାତୀୟତାର ଏକ ଜାଜ୍ୱଲ୍ୟମାନ ସ୍ୱାକ୍ଷର ।

କବିଙ୍କର ଜାତୀୟତାବାଦର ଅନ୍ୟ ଦିଗ ଥିଲା ତାଙ୍କର ଅନୁବାଦ ସାହିତ୍ୟ । କବିଙ୍କର ଅଗାଧ ଇଂରାଜୀ ସାହିତ୍ୟ ଜ୍ଞାନ ତାଙ୍କୁ ଜଣେ ଶ୍ରେଷ୍ଠ ଅନୁବାଦକ ରୂପେ ପ୍ରତିଷ୍ଠା କରିପାରିଛି । ଇଂରାଜୀ ମାଧ୍ୟମରେ ଓଡ଼ିଆ ଭାଷା ଓ ସାହିତ୍ୟକୁ ସର୍ବଭାରତୀୟ ତଥା ବିଶ୍ୱବ୍ୟାପୀ କରିବାକୁ ଓ ତାର ନମନୀୟ ସୂକ୍ଷ୍ମାତିସୂକ୍ଷ୍ମ ବର୍ଣ୍ଣନା-ପାଟବକୁ ଭାରତୀୟ ଅନ୍ୟାନ୍ୟ ପ୍ରାନ୍ତୀୟ ସାହିତ୍ୟଠାରୁ ମନୋଜ୍ଞଭାବେ ଅନ୍ୟମାନଙ୍କ ନିକଟରେ ପ୍ରତିପାଦନ କରିବାକୁ ସେ ଏହି ଇଂରାଜୀ ଅନୁବାଦର ମାଧ୍ୟମ ଗ୍ରହଣ କରିଥିଲେ ।

ଇଂରାଜୀ ପ୍ରାଚୀ ପତ୍ରିକାରେ ଉପେନ୍ଦ୍ର, ଦୀନକୃଷ୍ଣ, ଅଭିମନ୍ୟୁ ଓ କବିସୂର୍ଯ୍ୟାଦିଙ୍କର କବିତାର ଇଂରାଜୀ ଅନୁବାଦ ପ୍ରକାଶ କରି ସେ କେବଳ ଭାରତରେ କାହିଁକି ଭାରତ ବାହାରେ ମଧ୍ୟ ସାହିତ୍ୟ ସମାଲୋଚକମାନଙ୍କୁ ବିମୁଗ୍ଧ କରିପାରିଥିଲେ । All India P. E. N. (ସର୍ବଭାରତୀୟ କବି, ଲେଖକ ଓ ଗଳ୍ପକାରମାନଙ୍କ ସମ୍ମିଳନୀରେ) କବି ବିଚ୍ଛନ୍ଦଚରଣଙ୍କର ଏହି ଅନୁବାଦ ସାହିତ୍ୟର ଭୂରି ଭୂରି ପ୍ରଶଂସା ହୋଇଥିଲା । ତାଙ୍କ ସାବଲୀଳ ଋଦ୍ଧିମନ୍ତ ଇଂରାଜୀ ଅନୁବାଦ ପାଇଁ ଅଭିନନ୍ଦନ ଜଣାଇବାକୁ ଉତ୍କଳଗୌରବ ମଧୁସୂଦନ ତାଙ୍କ ନିକଟକୁ ଧାଇଁ ଆସିଥିଲେ । ଭାଷାକୋଷ ପ୍ରଣୟନରେ

ସହାୟତା କରୁଥିବା ସମୟରେ ଭାଷାକୋଷକାର ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜ ଇଂରାଜୀ ଭାଷାରେ ତାଙ୍କର ଦଖଲ ଦେଖି କହିଥିଲେ, "ବିଚ୍ଛନ୍ଦ ଚରଣଙ୍କର ଓଡ଼ିଆ ଓ ଇଂରାଜୀ ଭାଷାରେ ଏତେ ଦଖଲ ଅଛି ଯେ, ତାହା ଦେଖି ମୋର ତାଙ୍କପ୍ରତି ଈର୍ଷା ହୁଏ।

ଉପେନ୍ଦ୍ର ଭଞ୍ଜଙ୍କର କାବ୍ୟାଂଶମାନଙ୍କର ଇଂରାଜୀ ଅନୁବାଦ ରୂପେ "Bhanja Souvenir" ଓ କବିସୂର୍ଯ୍ୟଙ୍କ କେତେକ ପଦ୍ୟାବଳୀର ଅନୁବାଦ "Glimpses into Kabisurya" ସଙ୍କଳନ କରି ଓଡ଼ିଶା ବାହାରେ ଭଞ୍ଜ, କବିସୂର୍ଯ୍ୟଙ୍କର ରଚନାବଳୀର ବୈଶିଷ୍ଟ୍ୟ ପ୍ରତିପାଦନ କରିଥିଲେ । ଆମର ଜାତୀୟ କବିମାନଙ୍କୁ ଦେଶ ବିଦେଶରେ ପରିଚିତ କରାଇବାର ଗୁରୁ ଜାତୀୟ ଦାୟିତ୍ୱର ନୂତନ ସରଣୀର ନିର୍ଦ୍ଦେଶ ଦେଇଥିଲେ ଗୁରୁଦେବ ବିଚ୍ଛନ୍ଦ ଚରଣ । ଏତଦ୍‌ବ୍ୟତୀତ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବା ପାଇଁ ନବାକ୍ଷରୀ ବୃତ୍ତରେ ସନ୍ଥ ତୁଳସୀ ଦାସଙ୍କର 'ରାମଚରିତ ମାନସ'ର ଅନୁବାଦ ମଧ୍ୟ କରିଥିଲେ ।

ଗୁରୁଦେବ ବିଚ୍ଛନ୍ଦ ଚରଣଙ୍କର ଅନୁବାଦ ସାହିତ୍ୟ ଦୃଷ୍ଟାନ୍ତ ଦେବାର ଧୃଷ୍ଟତା ଏ ସ୍ୱଳ୍ପ ପରିସର ମଧ୍ୟରେ କରୁନାହିଁ । କିନ୍ତୁ ତାଙ୍କର ଜନ୍ମଭୂମି ପ୍ରୀତି ଓ ଜାତୀୟତାବାଦର ଦୃଷ୍ଟାନ୍ତ ନିମ୍ନୋକ୍ତ ଇଂରାଜୀ କବିତାରୁ ବେଶ୍ ଅନୁମେୟ । କବି My Mother Land to Me କବିତାରେ ଲେଖିଛନ୍ତି—

Cosier far from my Mother's arm
That roused my childhood to dreams of bliss
Loving more than my Father's embrace
Wherein I feel the touch of hand divine
Lovable more than my Brother's face
That promiseth succour against the
wicked world's hissing storm
Sweeter far than my sister's smiles of joy
When fame Inkbrand my brow with laurel;

ସାହିତ୍ୟ ସାଧକ-କବି-ଜାତୀୟତାବାଦୀ ସଙ୍ଗଠକ ବିଚ୍ଛନ୍ଦଚରଣଙ୍କର ଜୀବନ ଓ କାର୍ଯ୍ୟାବଳୀ ଯୁବଗୋଷ୍ଠୀଙ୍କୁ ଆଗାମୀ ଭବିଷ୍ୟତ ପାଇଁ ନୂତନ ପ୍ରେରଣା ଦେଉ ଓ ପରମ୍ପରାସମ୍ମତ ସାହିତ୍ୟ ସୃଷ୍ଟି ପାଇଁ ଉଦ୍‌ବୁଦ୍ଧ କରୁ ।



# ଓଡ଼ିଆ ସଂସ୍କୃତିର ବରେଣ୍ୟ ସେବକ—ବିଚ୍ଛନ୍ଦ

**ଅଧ୍ୟାପକ ଗୌରୀକୁମାର ବ୍ରହ୍ମା**

ବିଚ୍ଛନ୍ଦବାବୁ 'ବିଗତଛନ୍ଦ' ନ ଥିଲେ, ଥିଲେ ବିଶେଷରେ ଛନ୍ଦ-ସମ୍ପନ୍ନ । ଗିରିଗିରିଣୀର ଅନାବିଳ ପ୍ରବାହରେ ସେ ଥିଲେ ନିତ୍ୟ ସନ୍ତରଣଶୀଳ । ଓଡ଼ିଆ ଜାତିର ବିଶିଷ୍ଟ ସାରସ୍ୱତ ସମ୍ପଦ ରୂପେ ଛନ୍ଦ-ବହୁଳ ଯେଉଁ ପ୍ରାଚୀନ ସାହିତ୍ୟ ଆଜି ସୁଦ୍ଧା ପ୍ରିରପଲ୍ଲୀରେ ସମାଦୃତ, ବିଚ୍ଛନ୍ଦବାବୁ ଥିଲେ ତାହାର ବରେଣ୍ୟ ସେବକ । ତାଙ୍କର ଅନ୍ତରରେ ମଧ୍ୟଯୁଗ ଓଡ଼ିଆ ସାହିତ୍ୟର ମୋହନ ମାଦକତା ଅନୁକଂପନର ଉଚ୍ଛଳ ତରଙ୍ଗମାଳା ସୃଷ୍ଟି କରୁଥିଲା । ଓଡ଼ିଆ ଭାଷା, ଜାତି ଓ ସାହିତ୍ୟ ସମ୍ପର୍କରେ ପ୍ରତିକୂଳ ମନ୍ତବ୍ୟ ଶୁଣିବା ମାତ୍ରେ ସେ ଉଗ୍ରମୂର୍ତ୍ତି ହୋଇ ·ଉଠୁଥିଲେ । ତାଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ, ପ୍ରାଚୀନ ଓଡ଼ିଆ ସାହିତ୍ୟ ମାନବିକତା, ସହୃଦୟତା, ସମ୍ବେଦନଶୀଳତା ଓ ପ୍ରୀତିପ୍ରବଣତାର ଅଦମ୍ୟ ଉତ୍ସ । ଏହା ସେ କେବଳ ଅନୁଭବ କରୁ ନ ଥିଲେ, ବଜ୍ରଗମ୍ଭୀର ସ୍ୱରରେ ପ୍ରଚାର ମଧ୍ୟ କରୁଥିଲେ । ଇଂରାଜୀ ଭାଷା ଉପରେ ତାଙ୍କର ଥିଲା ଅଖଣ୍ଡ ଆଧିପତ୍ୟ । ପ୍ରାଚୀନ ଶୈଳୀର ଦୁର୍ଭେଦ୍ୟ ଦୁର୍ଗ ମଧ୍ୟରେ କିପରି ପ୍ରବେଶ କରିବାକୁ ହେବ, ତାହା ସେ ଉତ୍ତମରୂପେ ଜାଣିଥିଲେ । ସେଥିପାଇଁ ଆବଶ୍ୟକ ବେଳେ ସ୍ୱ-ପକ୍ଷ ସଂସ୍ଥାପନ ଓ ପ୍ରତିପକ୍ଷ ଖଣ୍ଡନ ଲାଗି ଅନାୟାସରେ ଦୃଷ୍ଟାନ୍ତମାନ ସେ ଉପସ୍ଥାପନ କରିପାରୁଥିଲେ । ତାଙ୍କ ଭଳି ଓଡ଼ିଆ ସାହିତ୍ୟର ଗ୍ରାହକ, ପ୍ରେମିକ ଓ ରସିକ ସମସାମୟିକ ଉତ୍କଳରେ ବିରଳ କହିଲେ ସତ୍ୟର ଲବମାତ୍ର ଅପଳାପ ହେବନାହିଁ ।

ଭଞ୍ଜ-ଜୟନ୍ତୀ ଆଜି ଏକ ଜାତୀୟ ମହୋତ୍ସବରେ ପରିଣତ ହୋଇଯାଇଛି । ରାଉରକେଲାରୁ ସୁନାବେଡ଼ା ପର୍ଯ୍ୟନ୍ତ ଭଞ୍ଜଜୟନ୍ତୀର ଅଖଣ୍ଡ ପ୍ଲାବନରେ ସତେ ଯେପରିକି ତରଙ୍ଗାୟିତ । ଭଞ୍ଜୀୟ ସଙ୍ଗୀତର ପରିବେଷଣ, ଭଞ୍ଜୀୟ କାବ୍ୟ-କଥାର ନାଟ୍ୟରୂପାୟନ ପ୍ରଦର୍ଶନ ଏବଂ ଭଞ୍ଜୀୟ ପ୍ରତିଭାର ସାହିତ୍ୟିକ ବିଶ୍ଳେଷଣ, ଏସବୁ 'ଜୟନ୍ତୀ' ଉତ୍ସବମାନଙ୍କରେ କିପରି ସହସ୍ର ସହସ୍ର ଶ୍ରୋତାଙ୍କୁ ପ୍ରୀତି-ସ୍ନିଗ୍ଧ ଓ ପ୍ରେମ-ପୁଲକିତ କରି ରଖିଥାଏ, ତାହା ବାସ୍ତବରେ ଦେଖିବାର କଥା । ଏହି ସାରସ୍ୱତ-ପ୍ଲାବନ-ମହୋତ୍ସବର ମନ୍ଦାକିନୀ ହେଉଛି ବିଚ୍ଛନ୍ଦବାବୁଙ୍କ ପ୍ରାଚୀନ ସାହିତ୍ୟପ୍ରୀତି । ଯେଉଁ କେତେଜଣ ଲବ୍ଧପ୍ରତିଷ୍ଠ ଓଡ଼ିଆ, ପଡ଼ୋଶୀ ପ୍ରଦେଶର ସାହିତ୍ୟିକ ପ୍ରଭାବରେ ବିମୁଗ୍ଧ ହୋଇ, ଭଞ୍ଜ-ଜୟନ୍ତୀର ପ୍ରସାର କ୍ଷେତ୍ରରେ ବାଧା ସୃଷ୍ଟି କରୁଥିଲେ, ଖ୍ରୀମବନ୍ଧମରେ ବିଚ୍ଛନ୍ଦବାବୁ ସେମାନଙ୍କୁ କହୁଥିଲେ—"With you, without you and inspite of you, Bhanja Jayanti will develop into a national festival" । ତାଙ୍କର ଏହି ଆତ୍ମବିଶ୍ୱାସ ଆଜି ମହାପୁରୁଷଙ୍କ ବଚନରୂପେ ସମଗ୍ର ଓଡ଼ିଆ ଜାତିକୁ ଉଦ୍ଦୀପିତ ଓ ପ୍ରୋତ୍ସାହିତ କରିଅଛି । ବିଚ୍ଛନ୍ଦବାବୁଙ୍କ ବ୍ୟବଚ୍ଛିନ୍ନତାରେ ଭଞ୍ଜଜୟନ୍ତୀର କଳ୍ପନା ହିଁ ଅସମ୍ଭବ । ଏବେ ମଧ୍ୟ "ଯଶୋଦେହେ, ସେ ଆୟୁଷ୍ମାନ୍" । ତାଙ୍କର ପୌରୁଷପୂର୍ଣ୍ଣ ଉଗ୍ର ଓଡ଼ିଆ-ପ୍ରୀତି ନିକଟରେ ଏ ଅବସରରେ, ମୋର ସଶ୍ରଦ୍ଧ ଅଭିବାଦନ । ତାଙ୍କର ସେହି ଉଦ୍ଦାମ ଆବେଗ ଆମ୍ଭମାନଙ୍କୁ ଚିରଜାଗ୍ରତ ରଖୁ ।

●

# ଭକ୍ତିପ୍ରାଣ ବିଚ୍ଛନ୍ଦଚରଣ

**ଶ୍ରୀଯୁକ୍ତ ମହାପାତ୍ର ନୀଳମଣି ସାହୁ**, ସମ୍ପାଦକ 'ଉତ୍କଳ ପ୍ରସଙ୍ଗ'

ଆଧୁନିକ ଓଡ଼ିଆ ସାହିତ୍ୟରେ ବିଚ୍ଛନ୍ଦଚରଣ ଆବିର୍ଭୂତ ହୋଇଥିଲେ ଜଣେ ପରମ୍ପରା ରକ୍ଷାକାରୀ ବୀର ସଂଗ୍ରାମୀ ପୁରୁଷ ରୂପେ । ବିଂଶ ଶତକର ପ୍ରାରମ୍ଭ କାଳରୁ ଆଧୁନିକ ଓଡ଼ିଆ ସାହିତ୍ୟ ଯେପରି କ୍ଷିପ୍ରଗତିରେ ବିପୁଳ ସମ୍ଭାବନା ନେଇ ଗତି କରୁଥିଲା—ସେତେବେଳେ ସେହି ଗତି-ମଦମତ୍ତତାରେ ବହୁ ଆଧୁନିକ ସାହିତ୍ତ୍ୟିକ ଅତି ଉନ୍ନତ ପ୍ରାଚୀନ ବା ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟକୁ ଅତି ହେୟ ଦୃଷ୍ଟିରେ ଦେଖୁଥିଲେ । ତଦବଧି ମଧ୍ୟ ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର ବହୁ ଲୁପ୍ତପ୍ରାୟ ରତ୍ନ ଉଦ୍ଧୃତ ହୋଇ ନ ଥିଲା । ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଓ ବିଚ୍ଛନ୍ଦଚରଣ ପଟ୍ଟନାୟକ ପ୍ରାଚୀ ସମିତି ଗଠନ କରି ପ୍ରାଚୀନ ଓ ମଧ୍ୟଯୁଗୀୟ ବହୁ କାବ୍ୟ କବିତା ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ସଂଗ୍ରହ କରି, ତାର ଟୀକା ଟିପ୍ପଣୀ ସହ ସଂଶୋଧିତ ସଂସ୍କରଣମାନ ପ୍ରକାଶ କରି ନ ଥିଲେ, ଆମେ ଆଜ ଅର୍ଦ୍ଧଶତ ସଂଖ୍ୟକ ପ୍ରାଚୀ ଗ୍ରନ୍ଥମାଳା ପାଇ ପାରି ନଥାନ୍ତୁ ଓ ସେଗୁଡ଼ିକର ଗୌରବ ବୁଝି ପାରି ନ ଥାନ୍ତୁ । ଏଥିପାଇଁ ସମଗ୍ର ଓଡ଼ିଆ ଜାତି ଏହି ଦୁଇ ମହାରଥୀଙ୍କ ନିକଟରେ ଚିରଦିନ କୃତଜ୍ଞ ରହିବ ।

ଆର୍ତ୍ତବଲ୍ଲଭ ଥିଲେ ଗୁରୁ । ତାଙ୍କର ଉଦ୍‌ବୋଧନରେ ବିଚ୍ଛନ୍ଦଚରଣ ଅନୁପ୍ରାଣିତ ହୋଇ ଶେଷକୁ କଳିଙ୍ଗଭାରତୀ ଭଳି ଏକ ମହାନ୍ ସାହିତ୍ୟ ସଂସ୍ଥା ଗଠନ କଲେ ଏବଂ ଏହି ସଂସ୍ଥା ତରଫରୁ ମଧ୍ୟ ସେ ବହୁ ମଧ୍ୟଯୁଗୀୟ କାବ୍ୟକବିତା ଉଦ୍ଧାର କରି ସଂକଳନ ପୂର୍ବକ ପ୍ରକାଶ କଲେ । କିନ୍ତୁ କଳିଙ୍ଗ ଭାରତୀର କାର୍ଯ୍ୟ ଆହୁରି ଗଭୀର ଓ ବ୍ୟାପକ ଥିଲା । ଆଜିର ଓଡ଼ିଆ ଯୁବସମାଜ ଜାଣନ୍ତି କି ନାହିଁ କେଜାଣି ଯେ ଏହି ବିଚ୍ଛନ୍ଦଚରଣଙ୍କ ନେତୃତ୍ୱରେ ତତ୍‌କାଳୀନ ବହୁ ପ୍ରାଜ୍ଞ ଓ ପ୍ରତିଭାବାନ ଓଡ଼ିଆ-ସଂସ୍କୃତିସଚେତନ ଓ ଅଭିମାନୀ ଯୁବକ, କଳିଙ୍ଗଭାରତୀ ଜରିଆରେ ସାରା ଉତ୍କଳରେ ଏକ ସାଂସ୍କୃତିକ ଚେତନାର ବନ୍ୟା ବୁହାଇ ଦେଲେ । ଉପେନ୍ଦ୍ର ଭଞ୍ଜ ଥିଲେ ସେମାନଙ୍କ ଆଗରେ ମଧ୍ୟଯୁଗୀୟ ଓଡ଼ିଆ କାବ୍ୟ ସାମ୍ରାଜ୍ୟର ସମ୍ରାଟ । ଉପେନ୍ଦ୍ର ଭଞ୍ଜଙ୍କର କାବ୍ୟାଦର୍ଶ, ସୌନ୍ଦର୍ଯ୍ୟବୋଧ, ରୀତିବାଦ ଓ ସଂସ୍କୃତି-ଅଭିମାନ ଏହି ଅତ୍ୟନ୍ତ ଜାତ୍ୟାଭିମାନୀ ବୀରହୃଦୟ ଗୁରୁ ଓ ତଦୀୟ ସମଚେତା ଅନୁପ୍ରାଣିତ ଯୁବଶିଷ୍ୟମାନଙ୍କୁ ଆକୃଷ୍ଟ କରିଥିଲା । ବୈଦେହୀଶ ବିଳାସ, ଲାବଣ୍ୟବତୀ, କୋଟିବ୍ରହ୍ମାଣ୍ଡସୁନ୍ଦରୀ, ପ୍ରେମସୁଧାନିଧି କାବ୍ୟଗୁଡ଼ିକ ଭିତରେ ଯେଉଁ ବଳିଷ୍ଠ ପ୍ରାଣଧର୍ମିତା ରହିଛି ବା ଯେଉଁ ଯୌବନସୁଲଭ ଜୀବନବାଦର ପ୍ରତିଷ୍ଠା ରହିଛି, ପୁଣି ଭଂଜୀୟ ରୀତିବାଦର ଯେଉଁ ଯାଦୁକରୀ ସୂକ୍ଷ୍ମ ମାର୍ଜିତ ଅଭିଜାତ ସୌକୁମାର୍ଯ୍ୟ ଓ ସୌନ୍ଦର୍ଯ୍ୟବୋଧ ଶକ୍ତି ସମନ୍ୱିତ ହୋଇ ପ୍ରାଣବନ୍ତ କାବ୍ୟଲୀଳାର ଚମତ୍କାରିତା ସୃଷ୍ଟି କରିଛି ତାକୁଇ ଉପଜୀବ୍ୟ କରି ସମଗ୍ର ଓଡ଼ିଆ ଜାତିର ହୃଦୟରେ ଜାତୀୟ ସଂସ୍କୃତି ଓ ରମ୍ୟଚେତନା ଜାଗ୍ରତ କରିଦେଲେ କଳିଙ୍ଗ ଭାରତୀର ସାଂସ୍କୃତିକ ନେତୃବୃନ୍ଦ । ତା' ଫଳରେ ଆଉ ସବୁ ଦିଗରୁ ଓଡ଼ିଆ-ମାନଙ୍କର ଯାହା ତ ହେଲା ହେଲା, ଓଡ଼ିଆ ଜାତିର ହୀନମନ୍ୟତା ବହୁ ପରିମାଣରେ କଟିଗଲା ଏବଂ ଜାତି ତାର ସାଂସ୍କୃତିକ ଚେତନାର ମୂଳ ଧର୍ମ ଓ ଶକ୍ତି ସଙ୍ଗେ ପରିଚିତ ହୋଇଗଲା ଏବଂ ତା' ପଛରେ ଯେଉଁ ଦୃଢ଼

ବିଳାସ୍ତ ପରମ୍ପରା ରହିଛି, ସେ ସମ୍ବନ୍ଧେ ସଚେତନ ହୋଇ ଉଠିଲି । ୧୯୫୦-୫୧ ଠାରୁ ୧୯୭୭ ଭିତରେ ଓଡ଼ିଆ ଜାତିର ଯେଉଁ ସାଂସ୍କୃତିକ ଅଭ୍ୟୁଦୟ ଘଟିଲି ବା ଘଟିଛି ଏବଂ ବିଭିନ୍ନ ଦିଗରେ ତାହା ପ୍ରସ୍ଫୁଟିତ ହୋଇ ଚାଲିଛି, ତାର ମୂଳରେ ଥିଲା ଏହି ବିଳାସ-ପ୍ରାଣ କଳିଙ୍ଗ ଭାରତୀର ଉଦ୍ୟମ ଓ ତାର ପ୍ରତିଷ୍ଠାତା ଓଡ଼ିଆ ସଂସ୍କୃତିର ସୁରକ୍ଷାକାରୀ ବୀରପୁରୁଷ ବିଚ୍ଛନ୍ଦଚରଣଙ୍କ ଅଦମ୍ୟ ପ୍ରେରଣା ।

ବିଚ୍ଛନ୍ଦଚରଣ ବୀରପୁରୁଷ ଥିଲେ । ଏତେ ଚମତ୍କାର ଜାତ୍ୟାଭିମାନୀ ଏବଂ ସଂସ୍କୃତି ସମ୍ପନ୍ନ ଉତ୍ସାହବନ୍ତ ପ୍ରାଣୋଚ୍ଛଳ ରସିକ ପୁରୁଷ ମୁଁ ଆଉ ଦ୍ୱିତୀୟ ଦେଖିନାହିଁ । ତାଙ୍କ ଭିତରେ କୋଣାର୍କ, ଲିଙ୍ଗରାଜ, ଜଗନ୍ନାଥ, ବଉଦାଣ୍ଡ, ବିନ୍ଦୁସାଗର, ମାର୍କଣ୍ଡ, ଇନ୍ଦ୍ରଦ୍ୟୁମ୍ନ, ଅନଙ୍ଗଭୀମ, ଉପେନ୍ଦ୍ରଭଞ୍ଜ, ଭୀମ ଭୋଇ, ଲାଙ୍ଗୁଳା ନରସିଂହ, ମହାନଦୀ, ଚିଲିକା, ମହେନ୍ଦ୍ରଗିରି, ମେଘାସନ, ପ୍ରାଚୀ, ସାରଳା ଦାସ, ଜଗନ୍ନାଥ ଦାସ, ଅଭିମନ୍ୟୁ, ବକ୍ସି ଜଗବନ୍ଧୁ, ସୁରେନ୍ଦ୍ର ସାଏ, ଲାବଣ୍ୟବତୀ, ସମୁଦ୍ର, ସାଧବପୁଅ ଆଦି ଚେତନା ଭରି ରହିଥିଲା । ତାଙ୍କଭଳି ମର୍ଯ୍ୟାଦାବନ୍ତ ଖାଣ୍ଟି ଓଡ଼ିଆ ପୁରୁଷ ଆଜି ପର୍ଯ୍ୟନ୍ତ ବି ଆମ ଆଖିରେ ପଡ଼ିନାହିଁ । ତାଙ୍କଭଳି ଗର୍ବୀ, ଉଦ୍ଧତ, ଦୁର୍ବାର, ଦୃପ୍ତ ଅଥଚ ରସବନ୍ତ ପୁରୁଷ ବି ଓଡ଼ିଶାରେ ଖୁବ୍ ବେଶୀ ମିଳିବେ ନାହିଁ । ସେ ଯାହା ଇଚ୍ଛା କରିଥିଲେ, ଯେଉଁ ଜାତୀୟ ଅଭିଳାଷ ପୋଷଣ କରିଥିଲେ, ତାହା ସାଧନ କରି ଯାଇଛନ୍ତି । ସେ ଆମର ଚିରସ୍ମରଣୀୟ ଜାତୀୟ ବୀରମାନଙ୍କ ମଧ୍ୟରେ ଅନ୍ୟତମ । ସେ ପୁଣି ପ୍ରାଚୀନ ଓ ମଧ୍ୟଯୁଗୀୟ ରୀତିକାବ୍ୟର ଆଧୁନିକ ପ୍ରତିଷ୍ଠାତା ଥିଲେ । ରୀତିଯୁଗର ଆଲଙ୍କାରିକ ଭଙ୍ଗୀ ବା ଶୈଳୀରେ ସେଇ ସବୁ କାବ୍ୟଯୁଗର ଛନ୍ଦରେ ଆଷାଢ଼ଶୁକ୍ଳ, ଦୀର୍ଘ ବା ଲଘୁ କାମୋଦୀ, ଗୁର୍ଜରୀ, ବରାଡ଼ି, କଳହଂସ କେଦାର ଆଦି ରାଗରାଗିଣୀରେ ଆଧୁନିକ ନାୟକ ନାୟିକାଙ୍କ ଜୀବନର କାହାଣୀକୁ ନେଇ ଅତି ସ୍ପର୍ଦ୍ଧାର ସହିତ ନିଜେ କାବ୍ୟ କବିତା ଲେଖିଗଲେ । ଉପେନ୍ଦ୍ରଭଞ୍ଜଙ୍କୁ ଇଂରାଜୀରେ ଜବରଦସ୍ତି ଅନୁବାଦ କଲେ ।

ବିଚ୍ଛନ୍ଦଚରଣଙ୍କର ଏହି ପ୍ରୟାସକୁ ସେତେବେଳେ ବହୁ ତଥାକଥିତ ଆଧୁନିକ ସାହିତ୍ୟିକ ଥଟ୍ଟା କରୁଥିଲେ । ଉପେନ୍ଦ୍ରଭଞ୍ଜଙ୍କ କାବ୍ୟ କବିତା ଇଂରାଜୀରେ ଅନୁବାଦିତ ହୋଇପାରିବ ନାହିଁ ତେଣୁ ତାହା ଉତ୍କୃଷ୍ଟ କାବ୍ୟ ନୁହେଁ—ଏ ପ୍ରକାର ମତବାଦ ମଧ୍ୟ ଖୁବ୍ ପ୍ରଚଳିତ ଥିଲା ଓ ଏବେ ବି ଅଛି । ପ୍ରାଚୀନ ରାଗରାଗିଣୀରେ ଆଧୁନିକ ମନର ଅନୁଭୂତି ପ୍ରକାଶ ପାଇପାରିବ ନାହିଁ ଏବଂ ଏହା ଜଣେ ଏକଜିଦିଆ ଏକବାଜିଆ ଲୋକର ହାସ୍ୟକର ଚେଷ୍ଟାବିଳାସ ବୋଲି ମଧ୍ୟ ମତ ପ୍ରକାଶ ପାଉଥିଲା । କିନ୍ତୁ ବିଚ୍ଛନ୍ଦଚରଣ ଯାହା ବୁଝିଥିଲେ ତାହା କରୁଥିଲେ । ତାଙ୍କର ଅନମନୀୟ ଆତ୍ମବିଶ୍ୱାସ ଓ ନିଜର ଆଦର୍ଶ ଉପରେ ଏକାନ୍ତ ନିଷ୍ଠା ତାଙ୍କୁ କାଳଜୟୀ କରିଥିଲା । କାଳର ଭ୍ରୂକ୍ଷେପ ଦାବୀକୁ ଅସ୍ୱୀକାର କରି, ମହାକାଳର ସତ୍ୟକୁ ଯେ ପ୍ରତିଷ୍ଠା ଦିଏ, ସେଇ ତ କାଳଜୟୀ ।

କିନ୍ତୁ କୋଉଠୁ ପାଇଲେ ବିଚ୍ଛନ୍ଦଚରଣ ଏହି ଅଟଳ ଆତ୍ମବିଶ୍ୱାସ ? ଏହି ଅନମନୀୟ କାଳଜୟୀ ବ୍ୟକ୍ତିତ୍ୱ ? ତାଙ୍କ ବ୍ୟକ୍ତିତ୍ୱର ମୂଳଗଭୀରରେ କଣ ଥିଲା ? କୋଉ ମୌଳିକ ଉପାଦାନରେ ଏହି ଅନମନୀୟ ସଂଗ୍ରାମୀ ବ୍ୟକ୍ତିତ୍ୱଟି—ଏହି ସାଧନାମୟ ବ୍ୟକ୍ତିତ୍ୱଟି ତିଆରି ହୋଇଥିଲା ? ତାଙ୍କର ଏତେ ଆତ୍ମବିଶ୍ୱାସ, ଏତେ ଜାତି-ପ୍ରୀତି, ସଂସ୍କୃତି ଅନୁରାଗ, ଏତେ ଆତ୍ମ-ମର୍ଯ୍ୟାଦାବୋଧ ଓ ଏତେ ଆଦର୍ଶାନୁପ୍ରାଣତା ଆସିଲା କୋଉଠୁ ? ଜୀବନ ସଂଗ୍ରାମର ଏହି ନିଷ୍ଠୁର ବାସ୍ତବତା ଭିତରେ, ଏହି ନିରାଶ୍ରୟ ସଂସାରମରୁରେ, ଏହି ସ୍ୱାର୍ଥ-ସଂଘର୍ଷମୟ ପ୍ରପଞ୍ଚମଞ୍ଚରେ ସେ କୋଉଠୁ ପାଇଲେ ଏତେ ପ୍ରବଣତା ? ଏତେ ସ୍ୱପ୍ନ ? ଏତେ ଭାବାକୁଳତା ?

ଏବେ ଜୀବନବୋଧ ? ଏବେ ସଂଗଠନ କ୍ଷମତା ? ଏବେ ଜୀବନଭୋଗଧର୍ମିତା ? ଶେଷରେ ଏବେ ଶକ୍ତି ? ଏବେ ସାମର୍ଥ୍ୟ ?

ସେଇ କଥାଟି ଜାଣିବାକୁ ହେଲେ ବଚ୍ଛନ୍ଦଚରଣଙ୍କ ବ୍ୟକ୍ତିତ୍ୱର ମୂଳଗଭୀରଟିକୁ ଖୋଳି ଦେଖିବାକୁ ହେବ । ତାଙ୍କ ମନର ଅବଚେତନଟିକୁ ଅଣ୍ଡାଳିବାକୁ ହେବ । ତାଆରି ଭିତରେ ଥାଏ ସବୁ ବଳିଷ୍ଠ ବ୍ୟକ୍ତିତ୍ୱର ମୂଳବୀଜ । ଆଉ ସେହି ମୂଳବୀଜଟି ସବୁ କ୍ଷେତ୍ରରେ ହେଉଛି ପ୍ରେମ । ପ୍ରେମ କାହାପ୍ରତି ? କେହି ଜଣକ ପ୍ରତି—ତାପରେ ସମସ୍ତଙ୍କ ପ୍ରତି—ଏବଂ ପରିଶେଷରେ ସେଇ ସର୍ବମୟ ଈଶ୍ୱରଙ୍କ ପ୍ରତି । ବଚ୍ଛନ୍ଦଙ୍କ ହୃଦୟରେ ଆଦ୍ୟ ଯୌବନରେ ଜଣେ ନାରୀଙ୍କ ପ୍ରତି ଗଭୀର ରୋମାଣ୍ଟିକ୍ ପ୍ରୀତି ଥିବାର ଶୁଣା ଯାଉଥିଲା । ନାରୀ ପ୍ରୀତି ପ୍ରତି ତାଙ୍କର ଗଭୀର ଓ ଉଗ୍ର ଆକର୍ଷଣ ଥିଲା । ସେ ଇତିହାସ ଉଖାରିଲେ ଏବଂ ତାକୁ ଯଥାଯଥ ବର୍ଣ୍ଣନା କରିପାରିଲେ ଆମେ ଆଶ୍ଚର୍ଯ୍ୟ ହୋଇ ଭାବିବା—ଏଭଳି ପ୍ରେମିକ ପୁରୁଷଟି, ଏହି ବୀର ପୁରୁଷଟି, ଓଡ଼ିଶା ମାଟିରେ କେମିତି ଜନ୍ମିଲା ? ସେସବୁ ପ୍ରେମପୂର୍ଣ୍ଣ କବିହୃଦୟର କାହାଣୀ ବିଦେଶ ମାଟିରେ ସମ୍ଭବ ହୋଇଥାଏ । ଓଡ଼ିଶାରେ, ପୁଣି ଆଧୁନିକ ଓଡ଼ିଶାରେ ଖୁବ୍ କମ୍ ସେମିତି ଉଦାହରଣ । ପ୍ରେମ ଗୋଟାଏ ପାଗଲାମି ଏବଂ ଏକ ସୃଜନଧର୍ମୀ ପାଗଲାମି । ପ୍ରେମରେ ନପଡ଼ି, ପ୍ରେମ ନ କରି, କେହି କୌଣସି ବିରାଟ କାମ କରିବା ଜଣାଯାଇ ନାହିଁ । ଏ ପ୍ରେମ ଜଣେ ମଣିଷ ପାଇଁ ହେଉ, ପ୍ରାଣୀ ପାଇଁ ହେଉ, ଦେଶ ବା ଜାତି ପାଇଁ ହେଉ । କିନ୍ତୁ ଏକ ଗଭୀର ଉନ୍ମାଦନାମୟ ନିଶାଗ୍ରସ୍ତ ଉଚ୍ଛାଟନାମୟ ପ୍ରେମାନୁଭୂତିରେ ଜର୍ଜରିତ-ହୃଦୟ ନ ହେଲେ, କେହି ମଧ୍ୟ ସେହି ବିରାଟ ରହସ୍ୟମୟ ପୁରୁଷୋତ୍ତମଙ୍କ ଭାବକୁ ପ୍ରାପ୍ତ ହୋଇ-ପାରେନାହିଁ । ତାଙ୍କୁ ପ୍ରାପ୍ତ ହେଉ ବା ନ ହେଉ, ଅମ୍ଳାନ-ପୁରୁଷ ସେଇଆଡ଼କୁ ଉନ୍ମୁଖ ହୋଇପାରେ-ନାହିଁ । ପ୍ରେମାନୁଭୂତି ଏକ ଅସ୍ତିବାଚୀ ଏଷଣାର ସୂଚକ ।

ବଚ୍ଛନ୍ଦଚରଣଙ୍କ ଅମ୍ଳାନ-ପୁରୁଷ ଶେଷ ଅବଧି ସେହି ପୁରୁଷୋତ୍ତମଙ୍କ ଆଡ଼କୁ ଉନ୍ମୁଖ ହୋଇ-ଉଠିଥିଲା । ନାରୀ, ଜାତି, ଦେଶ, ଧର୍ମ, ଭାଷା ଓ ସାହିତ୍ୟ ପ୍ରୀତି ସମେତ ତାଙ୍କର ସମସ୍ତ ଅଭିମାନାତ୍ମକ ଆବେଗ ଶେଷ ଅବଧି ସେଇ ପରମ ଆକର୍ଷକଙ୍କ ଆଡ଼କୁ ମୁହାଇଁ ଯାଇଥିଲା । ତାଙ୍କ ହୃଦୟ ଭିତରେ ଆସିଥିଲା ପ୍ରେମଭକ୍ତିର ଅପୂର୍ବ ପ୍ଲାବନ, ଶୁଷ୍କ ବିରକ୍ତ ବୈରାଗ୍ୟ ନୁହଁ—ଏକ ଭକ୍ତିସ୍ନିଗ୍ଧ ଅଶ୍ରୁଳ ଶରଣାପତ୍ତିର ଭାବ । ଗରୁଡ଼ଖମ୍ବକୁ ଧରି, ଚକା-ଡୋଳାଙ୍କୁ ଚୁହିଁ ଚୁହିଁ ତାଙ୍କ ପ୍ରାଣ ବିକଳ ଆକୁତିରେ କାନ୍ଦି ଉଠିଥିଲା—

କୃପାସିନ୍ଧୁ ଜଗବନ୍ଧୁ
କେବେ ପାରିହେବି ଏ ଭବସିନ୍ଧୁ—ସାମନ୍ତ ହେ ।
କହ ସିନ୍ଧୁ-ଜେମା-ପ୍ରାଣବନ୍ଧୁ । ସାମନ୍ତ ହେ ।

ଜୀବନ-ଘାଟରୁ ବେଳ ସରି ସରି ଆସୁଛି—ସଂସାରର ସାଧାରଣ ଇନ୍ଦ୍ରିୟଗ୍ରାହ୍ୟ ସୁଖ ଉପରୁ ମନ ଛାଡ଼ି ଆସିଲାଣି । ବିଷୟୀ-ବିଷରେ ଘାରି ହୋଇ ସାରା ଜୀବନ ଦଗ୍ଧ ହେଲା ଭଳି ଲାଗୁଛି । ପ୍ରପଞ୍ଚ ଜୀବନ-ଧାରାର ଆକର୍ଷଣ ଆଉ ନାହିଁ । ଧନ, ମାନ, ଯଶ, କୀର୍ତ୍ତି,—ଆଉ କିଛି ମନେ ହେଉନାହିଁ ସାରସତ୍ତ୍ୱ ବୋଲି । ସମଗ୍ର ଜୀବନ ମନେ ହେଉଛି ବୃଥା—ଅର୍ଥହୀନ ଏବଂ ଏହି ଅର୍ଥହୀନତାଇ ସତତ କି ପାପବୋଧରେ ମନକୁ ନିପୀଡ଼ିତ କରୁଛି ! ଅଥଚ ଦେହୀର ଇନ୍ଦ୍ରିୟ-ମାନେ ଆତ୍ମାର ଏ ବିରକ୍ତିକୁ ଖାତିରି ନ କରି ସେମାନଙ୍କର ଶେଷ ତୃଷ୍ଣା ନିବାରଣ କରିବାକୁ ଆତୁର ପ୍ରମତ୍ତ ହୋଇ ଉଠୁଛନ୍ତି । ଏହିଭଳି ଅନୁଭୂତିର ଏକ ସନ୍ଧିକ୍ଷଣରେ ବିଚଳିତ ବଚ୍ଛନ୍ଦଚରଣ ଗାଇ ଉଠିଛନ୍ତି—

ସ୍ବର ଇନ୍ଦ୍ରିୟ ଲାଲସା
ତୁଟିଗଲା ନାହିଁ ମୋ ବଢ଼ିଲା ତୃଷା—ସାମନ୍ତ ହେ
ଛନ୍ଦ ନୁହଇଁ ହରି ମୋ ଭ୍ରଷା—ସାମନ୍ତ ହେ ।

ଏହି ଆର୍ତ୍ତି ଓ ଆକୁତି ଭିତରେ ବି ସ୍ପଷ୍ଟ ବଚ୍ଛନ୍ଦ-ଚରଣ ବୁଝିଛନ୍ତି ମନୁଷ୍ୟ ଜୀବନର ଏ ଅସହାୟ ସୀମିତତା କାହିଁଥିପାଇଁ ? ପଞ୍ଚଭୂତର ଫାନ୍ଦ ଭିତରେ କିଏ ସେ ନିଷ୍ଠୁର ଏଇ ମୁକ୍ତଶୁଦ୍ଧ ଆତ୍ମାଟିକୁ ବନ୍ଦୀ କରିଛି ? ଯେତେ କଦର୍ଥନା, ସବୁ ଏଇ ପଞ୍ଚଭୌତିକ ପଦାର୍ଥର ରାସାୟନିକ ସଂଯୋଗରେ ଦେହପ୍ରାଣ ଓ ମନର ଘୋର କ୍ରିୟା ପ୍ରତିକ୍ରିୟାଜନିତ ଉତ୍ତେଜନାରୁ ହିଁ ସମ୍ଭବ । ଆତ୍ମା ଏହି ଘେର ଭିତରେ ପଡ଼ି ସର୍ବଦା ଛଟପଟ ହେଉଛି । ଊର୍ଦ୍ଧ୍ୱଗତି ଲାଗି ଏହି ପ୍ରତିବନ୍ଧକ ମୁମୁକ୍ଷୁ ପକ୍ଷରେ ଅତ୍ୟନ୍ତ ପୀଡ଼ାଦାୟକ । ତେଣୁ ବଚ୍ଛନ୍ଦ-ଚରଣ ଜଗବନ୍ଧୁଙ୍କୁ ଏଥିପାଇଁ ଦାୟୀ କରିଛନ୍ତି—

ଜଗବନ୍ଧୁ ! ମାଟିଘଟ
କୁଟାଇ ଭିଆଇଛ ଯାବତ ଲଟ—ସାମନ୍ତ ହେ
ଜୀବ-ମୀନ ମୋର ଛଟପଟ । ସାମନ୍ତ ହେ ।

ମାତ୍ର କେବଳ ଦାୟୀ କରି ନୁହଁ । ସେ ବିକଳରେ ଡାକିଛନ୍ତି, ହେ ମୋକ୍ଷଦାୟକ ! ଏ ଭବ-ହାଟରୁ ମୋର ସବୁ ସଉଦା ସରିଗଲାଣି । ଏଣିକି ଆଉ କିଛି ମୋର ଆକର୍ଷଣ ରଖନାହିଁ । ତେଣୁ, "ଇନ୍ଦ୍ରିୟର ଭାଙ୍ଗିଦିଅ ଥାଟ । ସାମନ୍ତ ହେ !"

ବଚ୍ଛନ୍ଦଚରଣ ଥିଲେ କବି ଓ କର୍ମୀ ଏବଂ ସେଇ ମାଧ୍ୟମରେ ସେ ଜଗତରେ ଯାହା କିଛି ପାଇଛନ୍ତି ଓ ଯାହା କିଛି ନ ପାଇଛନ୍ତି, ସେଥିଯୋଗୁଁ ତାଙ୍କ ହୃଦୟରେ ଯେଉଁ ମାନ ଅଭିମାନ, ଗର୍ବ ବା ଟେକପଣ ରୂପେ ଠିଆହୋଇ ରହିଥିଲା ଯାହା ଯୋଗୁଁ ସେ ସେ ଆତ୍ମାର ବିନତିକୁ ଉପଲବ୍ଧି କରିପାରୁ ନ ଥିଲେ, ସେହି ସ୍ୱାଭିମାନକୁ ଭାଙ୍ଗି ଚୂନା କରିଦେବାକୁ ସେ ଜଗନ୍ନାଥଙ୍କୁ ନିବେଦନ କରିଛନ୍ତି—

ଟାଳ ମୋ ଗରବ-ଗିରି
ଟେକପଣ ସବୁ ଦିଅ ମୋ ଚୂରି—ସାମନ୍ତ ହେ
ଟାଣ ପାଶେ ତୁମ୍ଭ ଟାଣି ଡୋରି । ସାମନ୍ତ ହେ ।

କିନ୍ତୁ ଈଶ୍ୱରଙ୍କୁ ପାଇବାକୁ ହେଲେ ତାର ପଥ ହେଲା ଯୋଗମାର୍ଗ । କିନ୍ତୁ ବଚ୍ଛନ୍ଦଚରଣ କବି, ଏହି ରୂପରସମୟ ଜଗତର ଉପାସକ । ତାଙ୍କ ବାହ୍ୟ ଦୃଷ୍ଟିରେ ସେ ଏ ଜଗତର ସମସ୍ତ ଲୀଳା ସୌନ୍ଦର୍ଯ୍ୟକୁ ପ୍ରତ୍ୟକ୍ଷ କରିଛନ୍ତି ଏବଂ ସେ ଚାହାନ୍ତି ତାଙ୍କର ଅନ୍ତର୍ଦୃଷ୍ଟିରେ ସେ ଯେପରି ପ୍ରତ୍ୟକ୍ଷ କରିବେ ଏହି ସମସ୍ତ ବ୍ୟକ୍ତ ସୌନ୍ଦର୍ଯ୍ୟ ଓ ରସର ମୂଳ କାରଣକୁ । ରୂପ ଭିତର ଦେଇ ସେ ଅପରୂପଙ୍କୁ ଓ ରସ ଭିତର ଦେଇ ସେ ରସରତ୍ନାକରଙ୍କୁ ପ୍ରତ୍ୟକ୍ଷ କରିବାକୁ ବ୍ୟଗ୍ର ହୋଇ ଉଠିଛନ୍ତି । ତେଣୁ ସେ ଜଗନ୍ନାଥଙ୍କୁ ଜଣାଣ କରୁଛନ୍ତି—

ରହି ହୃଦେ ରମା ସାଇଁ
ରାହା ଦେଲେ କହି ମୁଁ ଗମିବଇଁ—ସାମନ୍ତ ହେ
ରସରତ୍ନାକର ତୁମ୍ଭଠାଇଁ । ସାମନ୍ତ ହେ ।

ସେ ଚାହାନ୍ତି—ତାଙ୍କ ଲିଙ୍ଗଶରୀରର ବିଲୟ, ମାତ୍ର ମହାପ୍ରଭୁଙ୍କର ଲୀଳାପରିକର ହେବାଲାଗି ତାଙ୍କ ହୃଦୟ ବ୍ୟାକୁଳ ହୋଇ ଉଠିଛି । ଭକ୍ତିର ଉନ୍ମାଦନାରେ, ଆକୁତି କାକୁତିରେ ସେ ଆତୁର ହୋଇ ଉଠିଛନ୍ତି ।

ବଡ଼ ଦାଣ୍ଡ ଧୂଳି ହରି !
ବିଭୂତି ହେବ କି ଅଙ୍ଗେ ମୋହରି—ସାମନ୍ତ ହେ
ହେବି ବିଦେହ ଶ୍ରୀମୁଖ ହେରି । ସାମନ୍ତ ହେ ।

ଦାସ୍ୟ ଭକ୍ତିରେ ବିଗଳିତପ୍ରାଣ ହୋଇ ସେ ଚାହାନ୍ତି ତାଙ୍କର ଆଖିର ଜଳରେ ସେ ମହାପ୍ରଭୁଙ୍କ ପାଦପଦ୍ମକୁ ନିତି ଅଭିଷିକ୍ତ କରୁଥିବେ । ଏହାହିଁ ହେବ ତାଙ୍କର ବଡ଼ଦେଉଳ ସାମନ୍ତଙ୍କ ପାଖରେ ଏକ ନିତ୍ୟ ଖଟଣି, ନିତ୍ୟ ସେବା । ଏହି ଅଶ୍ରୁ-କ୍ଷରଣ ଦ୍ୱାରାହିଁ ସେ ନିଜର

ଅହଂକାର-ସୀମାକୁ ପାରହୋଇ ଯାଇଛନ୍ତି—ଚେତନାର ବାଗ୍‌ବଳୟ ବସ୍ତୃତ ହୋଇ ହୋଇ, ସେ ପରମ ପ୍ରଭୁଙ୍କ ଭାବରେ ପରିପୂର୍ଣ୍ଣ ହୋଇ ଉଠିଛନ୍ତି । ମୃତ୍ୟୁ-ଭୟ ଓ ପାପ ଭୟ ଏହି ଦୁଇଟି ହେଉଛି ଭବଭୟ । ଏଇ ଭୟହିଁ ଜୀବକୁ ଘୋର ସନ୍ତାପ ଆଉ ଜ୍ୱାଳାରେ ଛଟପଟ କରୁଥାଏ । ବଞ୍ଛନିଧିଚରଣ ଜୀବନର କେଉଁ କାର୍ଯ୍ୟ ବା ଅକାର୍ଯ୍ୟକୁ ପାପ ବୋଲି ବୁଝିଛନ୍ତି ? ଏ ଜଗତରେ ବଂଚିବାହିଁ ଏକ ବଡ଼ ପାପ । କାରଣ, ଏଠି ବଂଚିବା ମାନେ ହିଁ ପାପ ଭିତରେ ବଂଚିବା । ବଂଚିବାର ସମସ୍ତ ମାର୍ଗ ଏଠି ପାପାବର୍ତ୍ତରେ ପରିପୂର୍ଣ୍ଣ । ଯେତେ ବୁଦ୍ଧିମାନ୍ ଓ ସତର୍କ ମନୁଷ୍ୟ ହେଲେ ବି, ବଳବାନ୍ ଇନ୍ଦ୍ରିୟମାନଙ୍କ ଜାଲ ଭିତରୁ ମୁକୁଳିବାର ସାମର୍ଥ୍ୟ ଏଠି କେତେଜଣଙ୍କର ବା ଅଛି ? ପଞ୍ଚଜ୍ଞାନେନ୍ଦ୍ରିୟ ଓ ପଞ୍ଚକର୍ମେନ୍ଦ୍ରିୟକୁ ଦମନ କଲେ ବି ଜୀବାତ୍ମା ଆପଣାର ମନ ଇନ୍ଦ୍ରିୟଟିର ଦାସ ହେବାକୁ ବାଧ୍ୟ ହୋଇପଡ଼େ । ଆପଣାର ଅହଂକାର ଜୀବନଯାତ୍ରା ପଥରେ ସର୍ବଦା ଏକ ମାୟାକୁହେଳୀ ସୃଷ୍ଟି କରି ଅନ୍ତର୍ଦୃଷ୍ଟିକୁ ଆଚ୍ଛନ୍ନ କରି ରଖେ । ତେଣୁ ସଂସାର ଯାତ୍ରାରେ ଆମର ସମସ୍ତ କର୍ମ ମାୟାଗ୍ରସ୍ତ ହୋଇପଡ଼େ । ଯେଉଁମାନେ ଏହି "ମାୟା"ର ପ୍ରଭାବକୁ ବୁଝନ୍ତି ସେମାନେ ମାୟାଘାତ ବାଞ୍ଛନିଧିଙ୍କ ପରି ଅନୁଶୋଚନାରେ କାତର ହୋଇ ମାୟାଧରଙ୍କ ପାଖେ ଶରଣାପନ୍ନ ହୋଇ କାନ୍ଦି କାନ୍ଦି ଜଣାନ୍ତି —

ଆହେ ବିଶ୍ୱମ୍ଭର
ଭବଭୀତ ମୁଁ ଯେ ନିରନ୍ତର
ମାୟାର ଝଟକ ବଡ଼ଇ ପ୍ରବଳ
କଂପାଏ ମୋ ଉର ଥରହର ।

କିନ୍ତୁ "କଳାଶ୍ରୀମୁଖ ଭଜନ କୋଇଲି" ଭଜନରେ ସେ ଶ୍ରୀଜଗନ୍ନାଥଙ୍କ ଉପରେ ସଂପୂର୍ଣ୍ଣ ବିଶ୍ୱାସ ସ୍ଥାପନ କରିଛନ୍ତି—ସଂପୂର୍ଣ୍ଣ ଭରସା ରଖିଛନ୍ତି । ଶରଣାଗତ ଭକ୍ତର ଦାବୀ ନେଇ ସେ ଗାଇଛନ୍ତି—

କୋଇଲି ଲୋ ଗରୁ ସିନା ମୋ ପାତକ ଭାର
ଗରୁଡ଼ଧ୍ୱଜଙ୍କୁ ତାହା କେତେକ ମାତର ଲୋ କୋଇଲି ।
…କୋଇଲି ଲୋ ଠିକେ ଏ ସଂସାର କରେ ବଣା
ଠୁଳେ ବାଞ୍ଛନିଧି ପାତକଗିରି ହେଉ ଚୂନା ଲୋ
କୋଇଲି ।

ଶେଷ ପର୍ଯ୍ୟନ୍ତ ବାଞ୍ଛନିଧିଚରଣ ସଂସାରର ମାୟା ଉପରେ ଖୁବ୍ ସଚେତନ ହୋଇ ଉଠିଥିଲେ । ଏହି ମାୟିକ ସଂସାରର ସମସ୍ତ ଲୀଳାଖେଳା ତାଙ୍କୁ ମନେ ହୋଇଥିଲା ମିଥ୍ୟା ବୋଲି, ମରୀଚିକା ବୋଲି ଏବଂ ଏହି ଜଗତରେ ସେ ନିଜକୁ ଭାବୁଥିଲେ ବିଦେଶୀଟିଏ ବୋଲି ।

"କୋଇଲି ଲୋ ଧାମ ତାଙ୍କ ହରାଇ ମୁଁ ଆସି
ଧରାତଳେ ରହିଛଇଁ ହୋଇ ପରବାସୀ ଲୋ କୋଇଲି ।

ବାଞ୍ଛନିଧିଚରଣଙ୍କ ପରି ଜଣେ ସମାଜସେବୀ, ଜାତୀୟତାବାଦୀ କର୍ମବୀର ଆପଣା ଅନ୍ତର ଭିତରେ ନିଜକୁ ଏଠାରେ ଯେ ଜଣେ ପ୍ରବାସୀ ବୋଲି ମନେ କରୁଥିଲେ, ତାହା ତାଙ୍କର ଯଥାର୍ଥ କବି-ବ୍ୟକ୍ତିତ୍ୱର ଉପଲବ୍‌ଧି । ସେ ମୂଳତଃ ଥିଲେ କବି ଓ ପ୍ରେମିକ ଏବଂ ଏହି ପ୍ରେମିକତାହିଁ ତାଙ୍କ ହୃଦୟକୁ ଶେଷ ଅବଧି ଭକ୍ତିଭାବପରିପୂର୍ଣ୍ଣ କରି ରଖିଥିଲା । ତାଙ୍କର ବାହ୍ୟ କର୍ମମୟ ଜୀବନ ଓ ଜୀବନଯାପନର ଆଦର୍ଶକୁ ମଧ୍ୟ ଏହି ପ୍ରେମଭକ୍ତିପୂର୍ଣ୍ଣ ଅନ୍ତର ନିୟନ୍ତ୍ରଣ କରୁଥିଲା । ଦେଶ ଥିଲା ତାଙ୍କ ଆଗରେ ଦେବମୋତୃକା । ସାହିତ୍ୟ ଥିଲା ସାରସ୍ୱତ ସାଧନା । ଆପଣା କର୍ମ ଲାଗି ସେ ଦେଶବାସୀଙ୍କ ପାଖରୁ କିଛି ଉପାଧି ବା ପୁରସ୍କାର ପ୍ରତ୍ୟାଶା କରିନାହାନ୍ତି । ସେକଥା କେବେ ବି ତାଙ୍କ ମୁଣ୍ଡକୁ ଜୁଟିନାହିଁ । ତାଙ୍କ ସାଙ୍ଗରେ ବହୁବାର ମିଶିଥିବା ଲୋକେ ଜାଣନ୍ତି ଭିତରେ ଭିତରେ ସେ ଖୁବ୍ ଉଦାସୀନ ଥିଲେ, ସତ୍ୟସନ୍ଧାନୀ ଥିଲେ, ଈଶ୍ୱରପ୍ରାପ୍ତି ଲାଗି ବ୍ୟାକୁଳ ଥିଲେ । ତାଙ୍କ ବାହ୍ୟ ମନରେ କେବଳ ଜାତି ଓ

ସାହିତ୍ୟର ଉନ୍ନତ ଆକାଂକ୍ଷା ମୁଖ୍ୟ ସ୍ଥାନ ଅଧିକାର କରିଥିଲା । ଜାଗତିକ ପ୍ରାପ୍ତି ଅପ୍ରାପ୍ତି ତାଙ୍କୁ କେବେ ବିଚଳିତ କରୁ ନ ଥିଲା । ସାଂସାରିକ ଆଶା ଆକାଂକ୍ଷା ଯଦିବା କଦାଚିତ୍ ତାଙ୍କ ମନକୁ ଅଧିକାର କରୁଥିଲା, ସେ ସେଥିପ୍ରତି ତତ୍କ୍ଷଣାତ୍ ସଚେତନ ହୋଇ ତାଙ୍କର ଆରାଧ୍ୟ ଜଗନ୍ନାଥ ଦେବଙ୍କ ପାଖେ ଏକ ପ୍ରାର୍ଥନା କରୁଥିଲେ—

କୋଇଲି ଲୋ ପିଟିଲୁ ସେ ଭବ ଗଣ୍ଠି ମୋର
ଫନ୍ଦା ଧନ ମୋର ସେ ଯେ କମଳାଙ୍କ ବର ଲୋ
କୋଇଲି ।

ଅତି ବିକଳ ହୋଇ ସେ ପ୍ରାଣର ବ୍ୟାକୁଳତା ନିବେଦନ କରିଛନ୍ତି—

କୋଇଲି ଲୋ ଭବଜଳଧିରୁ କରେ ଗୁଣି
ଭବଭୀତ ବିଚ୍ଛନ୍ଦେ ରଖିଲୁ ଚକ୍ରପାଣି ଲୋ କୋଇଲି ।

ଏହି ଭାବଭାବନା-ପରିପୂର୍ଣ୍ଣଅନ୍ତର ବିଚ୍ଛନ୍ଦଚରଣ ଶେଷରୁ ଆଉ କୌଣସି ସଙ୍କୋଚ ବା ଭୀତି ଦ୍ୱାରା ଆକ୍ରାନ୍ତ ନ ହୋଇ, ପରିପୂର୍ଣ୍ଣ ସାହସର ସହିତ ଘୋଷଣା କରିଛନ୍ତି—

କୋଇଲି ଲୋ ! ଯମପାଶ ନ ଲାଗିବ ଗଳେ
ଯିବି ସବୁ ଲୋକ ଲଂଘି ଜଗନ୍ନାଥ ଆଳେ ଲୋ କୋଇଲି ।

କୋଇଲି ଲୋ ! ହେଉ ମୋର ବିଷ୍ଣୁପଦେ ବାସ
ହରିଚନ୍ଦନେ ମଗନ ହେଉ ମୋ ମାନସ ଲୋ କୋଇଲି ।

୧୯୫୭ ମସିହା ଅଗଷ୍ଟ ମାସ ୧୨ ତାରିଖ ରବିବାର ଦିନ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଶ୍ରୀମନ୍ଦିର ଗରୁଡ଼ସ୍ତମ୍ଭ ନିକଟରେ ଦିନ ସାଢ଼େ ଏଗାର ଘଣ୍ଟାଠାରୁ ସନ୍ଧ୍ୟା ସାଢ଼େ ଛଅଘଣ୍ଟା ପର୍ଯ୍ୟନ୍ତ ଶ୍ରୀଜଗନ୍ନାଥ ଜଣାଣ ଭଜନର ବିଭିନ୍ନ କବିରଚିତ ୧୦୮ଟି ଗୀତ ସେ ସ୍ୱକଣ୍ଠରେ ଗାନ କରି ତାଙ୍କ ସଂକଳିତ ଶ୍ରୀଜଗନ୍ନାଥ-ଭଜନାବଳୀ ମହାପ୍ରଭୁଙ୍କ ନିକଟରେ ନିବେଦନ କରିଥିଲେ । ଓଡ଼ିଆ ଭକ୍ତି ସାହିତ୍ୟ କ୍ଷେତ୍ରରେ ଏହି ସଞ୍ଚୟନଟି ଅପୂର୍ବ ହୋଇଛି । ଓଡ଼ିଆ ଭଜନ ସାହିତ୍ୟରେ ବିଚ୍ଛନ୍ଦଚରଣ ନିଜର ଯେଉଁ କେତୋଟି ଭଜନ ସଂଯୋଜିତ କରିଛନ୍ତି, ତାହା ସେହି ପ୍ରାଚୀନ ରାଗ-ରାଗିଣୀରେ ଲିଖିତ ହେଲେହେଁ ଭାଷା, ଶୈଳୀ ଓ ଭାବରେ ଅପୂର୍ବ ଚମତ୍କାରିତାକୁ ପ୍ରାପ୍ତ ହୋଇଛି । ଆତ୍ମ-ସମୀକ୍ଷଣ, ଆତ୍ମ-ନିବେଦନ, ଆତ୍ମ-ପ୍ରକ୍ଷାଳନର ମହାଆବେଗପୂର୍ଣ୍ଣ ଏହି ଭଜନଗୁଡ଼ିକ ଭିତରେ, ବିଚ୍ଛନ୍ଦଚରଣ ଏକ ସାର୍ବଜନୀନ ଈଶ୍ୱରପରାୟଣଭାବୁକତା ପ୍ରଦର୍ଶନ କରିଛନ୍ତି । ସେ ଭଗବାନଙ୍କୁ ନିଜ ପାଇଁ କିଛି ସାଂସାରିକ ଭୋଗ ସୁଖ ମାଗିନାହାନ୍ତି । ଜଣେ ବୈରାଗୀ କିନ୍ତୁ ବୈଷ୍ଣବର ହୃଦୟ ନେଇ ସେ ଶ୍ରୀଜଗନ୍ନାଥଙ୍କର ଶରଣାପନ୍ନ ହୋଇଛନ୍ତି । ତାଙ୍କର ସେଇ ଭଜନ ଜଣାଣଗୁଡ଼ିକ ଭିତରେ କେବଳ ବିଚ୍ଛନ୍ଦୀୟ ଆତ୍ମାର ଆକୁଳ ନିବେଦନ ପ୍ରକାଶ ପାଇନାହିଁ, ଏକ ସାର୍ବଜନୀନ ମୁମୁକ୍ଷୁ ଆତ୍ମାର ଆକୁଳ ଆକୁତିରେ ସେଗୁଡ଼ିକ ଅଶ୍ରୁ-ମେଦୁର ଓ ପ୍ରେମଭକ୍ତିର ଆବେଗରେ ଶୁଚିପୂର୍ଣ୍ଣ ଏବଂ ମୋକ୍ଷଦାୟୀ ।

ଏହି ଭକ୍ତିଭାବପୂର୍ଣ୍ଣ ଭଜନଗୁଡ଼ିକ ଭିତରେ ବିଚ୍ଛନ୍ଦଚରଣ ଏକ ଚିରନ୍ତନ କବିର ଆସନ ଅଧିକାର କରିଛନ୍ତି । ଇତି ।

ଜୟ ମା କଳିଙ୍ଗଭାରତୀ



# ସ୍ମୃତିଦର୍ପଣରେ ସାହିତ୍ୟପାଇଁ ସଂଗ୍ରାମ ଓ ବିଚ୍ଛନ୍ଦଚରଣ

**ଶ୍ରୀ ରଜତକୁମାର କର,** ସଭାପତି, କଳିଙ୍ଗଭାରତୀ

ସ୍ୱର୍ଗତ ବିଚ୍ଛନ୍ଦଚରଣ ପଟ୍ଟନାୟକ ଓଡ଼ିଶାରେ ମହାନ୍ ସାଂସ୍କୃତିକ ଆନ୍ଦୋଳନ ଭଞ୍ଜଜୟନ୍ତୀର ପ୍ରବର୍ତ୍ତକ ଓ କଳିଙ୍ଗଭାରତୀର ପ୍ରତିଷ୍ଠାତା । ତାଙ୍କ ରଚିତ ଆତ୍ମଜୀବନୀର ସେ ନାମକରଣ କରିଥିଲେ "ସାହିତ୍ୟ ପାଇଁ ସଂଗ୍ରାମ" । ସାଂସ୍କୃତିକ ଆନ୍ଦୋଳନର ପୁରୋଭାଗରେ ରହି ସର୍ବଦା ବ୍ୟସ୍ତ ରହୁଥିବାରୁ ସେ ଆତ୍ମଜୀବନୀ ଅସମ୍ପୂର୍ଣ୍ଣ ରହିଗଲା । ସାହିତ୍ୟ ସଂସ୍କୃତିର ସ୍ଥିତି ପାଇଁ ତାଙ୍କର ଆଜୀବନ ସଂଗ୍ରାମର ପ୍ରାଥମିକ ବ୍ୟବସ୍ଥା ମାତ୍ର ତାଙ୍କ ଆତ୍ମଜୀବନୀରେ ବର୍ଣ୍ଣିତ ହୋଇଛି । ସାହିତ୍ୟ-ସମାଜର ଏକ ସଙ୍ଗୀତରେ ପ୍ରାଚୀନ ସାହିତ୍ୟ ପ୍ରତି ଆକ୍ଷେପ ହେତୁ ତାହା ବିରୁଦ୍ଧରେ ସଭାସ୍ଥଳୀରେ ବିଦ୍ରୋହ ଘୋଷଣା କରି ବିଚ୍ଛନ୍ଦଚରଣ ବିଜୟୀ ହୋଇଥିବା ବିଷୟ ତାଙ୍କ ଆତ୍ମଜୀବନୀରେ ବର୍ଣ୍ଣିତ ହୋଇଛି । ତତ୍‌ପରବର୍ତ୍ତୀ ଘଟଣାପ୍ରବାହ ବିଚ୍ଛନ୍ଦଚରଣଙ୍କ ସ୍ୱକୀୟ ଲେଖନୀରେ ବର୍ଣ୍ଣିତ ହୋଇଥିଲେ ସୁଧୀ ସମାଜ ପ୍ରକୃତ ରସାସ୍ୱାଦନ କରିବାକୁ ସମର୍ଥ ହୋଇଥାଆନ୍ତେ ।

## ସାହିତ୍ୟପାଇଁ ସଂଗ୍ରାମର ସୂତ୍ର

ସାହିତ୍ୟ ସମାଜର ସହକାରୀ ସମ୍ପାଦକ ତଥା ସମ୍ପାଦକ ଭାବେ ଦାୟିତ୍ୱ ନିର୍ବାହ କରିବା ସମୟରେ ପ୍ରାଚୀନ ସାହିତ୍ୟର ପ୍ରଚାର ଓ ପ୍ରସାର ନିମନ୍ତେ ଆୟାସ କରି ବିଚ୍ଛନ୍ଦଚରଣ ବହୁ ପ୍ରତିକୂଳ ଅବସ୍ଥାର ସମ୍ମୁଖୀନ ହୋଇଥିଲେ । ଖଞ୍ଜ ହେବା ଭଳି ଶାରୀରିକ ଅସାମର୍ଥ୍ୟର ସୁଯୋଗ ନେବା ନିମନ୍ତେ ତାଙ୍କର ପରିପନ୍ଥୀମାନେ ଉଦ୍ୟମ କରିଥିଲେହେଁ "ପଙ୍ଗୁ ଲଙ୍ଘୟତେ ଗିରି" ଭଳି ପ୍ରଭୁଙ୍କ କୃପାରେ ସେ ସମସ୍ତ ପ୍ରତିବନ୍ଧକ ପର୍ବତ ଅତିକ୍ରମ କରି ସ୍ୱକୀୟ ଉଦ୍ଦାମ ଜାତିପ୍ରୀତି ତଥା ପ୍ରଭୂତ ମନୋବଳର ପରିଚୟ ଦେଇଥିଲେ ।

ନିକଟରେ ଦିନେ ବିଚ୍ଛନ୍ଦଚରଣଙ୍କ ପ୍ରସଙ୍ଗରେ ତାଙ୍କର ପୁରାତନ ବନ୍ଧୁ ବିଶିଷ୍ଟ ସାହିତ୍ୟିକ ଡକ୍ଟର ଉମେଶ ଚନ୍ଦ୍ର ପାଣିଗ୍ରାହୀ କହୁଥିଲେ ଯେ ସାହିତ୍ୟ ସମାଜ ସଭାରେ ପ୍ରଥମବାର ଯୋଗଦେବାକୁ ଆସି ସେ ଦେଖିଲେ ଯେ ଗୁଡ଼ିଏ ଉତ୍ତ୍ୟକ୍ତ ସଭ୍ୟ ଶ୍ରୀ ବିଚ୍ଛନ୍ଦଚରଣଙ୍କୁ ଶୂନ୍ୟେ ଶୂନ୍ୟେ ଟେକି ନେଇ ସଭାଗୃହ ବାହାରେ ଗୁଡ଼ିଦେଲେ । ବିଚ୍ଛନ୍ଦଚରଣଙ୍କ ଅପରାଧ ଥିଲା ଯେ ସେ ପ୍ରାଚୀନ ସାହିତ୍ୟ ପ୍ରତି ତାଚ୍ଛଲ୍ୟ ବିରୁଦ୍ଧରେ ତୀବ୍ର ପ୍ରତିବାଦ କରି ସେହି ତାଚ୍ଛଲ୍ୟକାରୀ-ମାନଙ୍କୁ ଅସ୍ତବ୍ୟସ୍ତ କରି ପକାଇଥିଲେ । ପରବର୍ତ୍ତୀ-କାଳରେ ତାଙ୍କ ସମାଲୋଚକମାନଙ୍କ ପରିହାସୋକ୍ତି 'ବିଚ୍ଛନ୍ଦବାବୁ ଓ କଳିଙ୍ଗଭାରତୀ ପ୍ରାଚୀନ ସାହିତ୍ୟ ଓ ଭଞ୍ଜ ପାଇଁ ଠିକା ନେଇଛନ୍ତି" ପ୍ରକୃତରେ ଯଥାର୍ଥ ଥିଲା । ଓଡ଼ିଆ ଜାତିର ଗର୍ବ ଗୌରବ ଓ ବୈଶିଷ୍ଟ୍ୟ ପ୍ରାଚୀନ ସାହିତ୍ୟରେ ଓ ଭଞ୍ଜ ସାହିତ୍ୟରେ ବିଶେଷଭାବେ ପ୍ରକଟିତ ହୋଇଥିବାରୁ ତାର ସଂରକ୍ଷଣ ପାଇଁ ବିଚ୍ଛନ୍ଦଚରଣ ସତତ ଚେଷ୍ଟିତ ଥିଲେ । ଜନ୍ମଭୂମି ଉତ୍କଳର ଗୌରବଗାଥା ସର୍ବଦା ବିଚ୍ଛନ୍ଦଚରଣଙ୍କୁ ଉଦ୍‌ବୁଦ୍ଧ କରିଥିଲା । ନିଜର କବିତାରେ ସେହି ମହିମା ଗାନକରି ସକଳ ସମ୍ମୁଖରେ ତାର ପ୍ରଚାର କରିବା ସଙ୍ଗେ ସଙ୍ଗେ ସେହି ଗୌରବ କ୍ଷୁଣ୍ଣ କରିବା ଅପଚେଷ୍ଟା ପ୍ରତିହତ କରିବାରେ ସେ ବ୍ରତୀ ଥିଲେ ।

ବିଚ୍ଛନ୍ଦରଚିତ ଉତ୍କଳ ଗୌରବ ଗୀତିମାନଙ୍କରୁ ତାଙ୍କ ଜାତିପ୍ରୀତିର ଗଭୀରତା ଅନୁମେୟ । ଉତ୍କଳର ହୃତ ଗୌରବ ପାଇଁ କି ମମତା, କି ଦରଦ ! ସେହି ଜାତିପ୍ରୀତିମୂଳକ ଗୀତଗୁଡ଼ିକର ଏକତ୍ର ପ୍ରକାଶନ ତାଙ୍କ ଜାତୀୟ ଚିନ୍ତାର ପ୍ରଖ୍ୟାପକ ହେବ ।

ସାହିତ୍ୟ ପାଇଁ ଏ ସଂଗ୍ରାମରେ ଅବତୀର୍ଣ୍ଣ ହେବା ସମୟରେ ବିଚ୍ଛନ୍ଦଚରଣ ଥିଲେ ଏକାକୀ । ନିଃସଙ୍ଗ ଜୀବନ, ଶାରୀରିକ ଅସାମର୍ଥ୍ୟ ତାଙ୍କୁ ସଂଗ୍ରାମରୁ ନିବୃତ୍ତ କରାଇ ପାରିନାହିଁ । ବାକ୍ଚାତୁରୀ ତାଙ୍କୁ ଅସମର୍ଥ କରାଇ ବିଧାତା ଯେପରି ତାଙ୍କୁ ସମର୍ଥ ଶତ୍ରୁମାନଙ୍କ ସଙ୍ଗେ ସଂଗ୍ରାମ କରିବା ପାଇଁ ସାଧନା କରାଇଥିଲା । ନିଜର ପରିପନ୍ଥୀମାନଙ୍କ ଚରିତ୍ର ସମ୍ବନ୍ଧରେ କହିବାକୁ ଯାଇ ଅଧିକାଂଶ ସମୟରେ ପାତିମାଙ୍କଡ଼ମାନଙ୍କର ଉଦାହରଣ ଦିଅନ୍ତି । ପଳେଇଲେ ଗୋଡ଼ାନ୍ତି ଓ ଗୋଡ଼େଇଲେ ପଳାନ୍ତି—ଏହାହିଁ ତାଙ୍କର ଚରିତ୍ର । ଯୁଦ୍ଧଭୂମି ପରିତ୍ୟାଗ କଲେ ସେମାନେ ପଶ୍ଚାଦ୍ଧାବନ କରିବେ ଓ ପଶ୍ଚାଦ୍ଧାବନ କଲେ ସେମାନେ ପଳାୟନ କରିବେ ।

ବିଚ୍ଛନ୍ଦଚରଣଙ୍କର ଏହି ଉକ୍ତି ମୋ ଜୀବନରେ ବହୁ ପ୍ରଭାବ ପକେଇଛି । ୪୩ ବର୍ଷ ବୟସ ଭିତରେ ବହୁବାର ଶତ୍ରୁସଂକୁଳ ପରିବେଶ ମଧ୍ୟରେ ବିଚ୍ଛନ୍ଦଚରଣଙ୍କ ଉକ୍ତି ମନେରଖି ମୁଁ ସାହିତ୍ୟ, ସଂସ୍କୃତି ତଥା ସାମାଜିକ ପରିସ୍ଥିତିର ପ୍ରତିକୂଳପନ୍ଥୀମାନଙ୍କ ଚକ୍ରାନ୍ତ ଆଗରେ ମଥା ନତ କରି ପ୍ରାଣ ଆତଙ୍କରେ ପଳାୟନ କରିନାହିଁ । ବିଚ୍ଛନ୍ଦଙ୍କ ଉପଦେଶମତେ ମୁଁ ସେମାନଙ୍କର ପଶ୍ଚାଦ୍ଧାବନ କରିଛି, ସେମାନେ ପଳାୟନ କରିଛନ୍ତି । ଜୀବନ ସଂଗ୍ରାମ ବହ୍ନି ପ୍ରଜ୍ୱଳିତ କରିବା ନିମନ୍ତେ ଉତ୍କଳର ପ୍ରାଚୀନ ଡଗଡମାଳିର ଏଭଳି ପ୍ରାଣବନ୍ତ ଉକ୍ତି ବିଚ୍ଛନ୍ଦ ପ୍ରାପ୍ତ ହୋଇଥିଲେ ତାଙ୍କ ଜନନୀଙ୍କଠାରୁ । ବହୁ ସମୟରେ ନିଜ ଜନନୀଙ୍କ କଥା କହିବା ସମୟରେ ବିଚ୍ଛନ୍ଦଚରଣଙ୍କ ଚକ୍ଷୁରୁ ଧାରଧାର ଲୋତକ ବହି ଆସେ । ମୋର ସଦ୍‌ଗୁରୁ ଠାକୁର ଅନୁକୂଳଚନ୍ଦ୍ରଙ୍କ ଉକ୍ତି "ମାତୃଭକ୍ତି ଅଟୁଟ ଯତ, ସେହି ଛେଳେଇ ହଏ କୃତୀ ତତ" ଉକ୍ତି ମନେ ପଡ଼ିଯାଏ । "ପ୍ରଗାଢ଼ ମାତୃଭକ୍ତି ହିଁ କୃତିତ୍ୱର ରାଜପଥ" ଉକ୍ତି ବିଚ୍ଛନ୍ଦଙ୍କଠାରେ ପ୍ରତିଫଳିତ ହୋଇଥିଲା । ତାଙ୍କଠାରୁ ତଥାକଥିତ ଶିକ୍ଷାଠାରୁ ଦୂରରେ ଥିବା ତାଙ୍କ ଜନନୀଙ୍କର ବହୁ ଶିକ୍ଷଣୀୟ ଉକ୍ତି ଶୁଣିବାକୁ ମିଳୁଥିଲା । ଥରେ ଜ୍ୟେଷ୍ଠପୁତ୍ର ପଦ୍ମଚରଣଙ୍କ ଉପରେ ଅଭିମାନ କରି ଜନନୀ ଗ୍ରାମ ସନ୍ନିକଟ ଏକ ପର୍ବତ ଗହ୍ୱରରେ ଆତ୍ମଗୋପନ କରିଥିଲେ । ସମଗ୍ର ଗ୍ରାମବାସୀ ଗ୍ରାମର ଏହି ମହୀୟସୀ ମହିଳାଙ୍କ ନିକଟରେ କ୍ଷମାଗ୍ରହି ଗ୍ରାମକୁ ପ୍ରତ୍ୟାବର୍ତ୍ତନ କରିବା ପାଇଁ ନିବେଦନ କଲେ । କଥାପ୍ରସଙ୍ଗରେ ବିଚ୍ଛନ୍ଦଜନନୀ କହିଥିଲେ, "ମରିବ ହଂସ ନ ଖାଇବ ଗୋରୁ ମାଂସ ।" ଶାଗୁଣା ଖାଏ ଗୋରୁ ମାଂସ, ହଂସ ଖାଏ ପଦ୍ମ ମୃଣାଳ । ଖାଦ୍ୟ ଅଭାବରେ ଗୋମାଂସ ଭକ୍ଷଣ ଅପେକ୍ଷା ଏହି ପଦ୍ମମୃଣାଳ ରସିକ ମରାଳର ମୃତ୍ୟୁବରଣ ସଂଗ୍ରାମୀ ବିଚ୍ଛନ୍ଦଚରଣଙ୍କ ସାହିତ୍ୟ ସଂସ୍କୃତି ପାଇଁ ସଂଗ୍ରାମର ଥିଲା ମୂଳମନ୍ତ୍ର ଓ ସୂତ୍ର । ଉତ୍ତରାଧିକାର ସୂତ୍ରରେ ବିଚ୍ଛନ୍ଦଚରଣଙ୍କଠାରୁ ଏହି ମନ୍ତ୍ର ମୁଁ ପ୍ରାପ୍ତ ହୋଇଅଛି । ସାହିତ୍ୟ, ସଂସ୍କୃତି ତଥା ସାମାଜିକ ସ୍ଥିତି ବଜାୟ ରଖିବା ପାଇଁ ଅତୀତ ତଥା ବର୍ତ୍ତମାନ ସଂଗ୍ରାମରେ ମୋର ପ୍ରେରଣାର ଉତ୍ସ ସେହି ଉକ୍ତି "ମରିବ ହଂସ ନ ଖାଇବ ଗୋରୁମାଂସ" ।

ସାହିତ୍ୟ ପାଇଁ ଏକାକୀ ସଂଗ୍ରାମ କରି ସ୍ୱର୍ଗତ ବିଚ୍ଛନ୍ଦଚରଣ ପଟ୍ଟନାୟକ ଯେତେବେଳେ ଶତ୍ରୁବ୍ୟୂହ ମଧ୍ୟରେ ପଡ଼ିଗଲେ, ସେତେବେଳେ ସେ ଯେଉଁ ସେନାବାହିନୀ ଗଠନ କଲେ ତାହା ସ୍ୱସ୍ଥ ସାହିତ୍ୟ ସମାଜ ଓ କଳିଙ୍ଗ ଭାରତୀ ।

## ସାହିତ୍ୟପାଇଁ ସଂଗ୍ରାମର ଅମୋଘାସ୍ତ୍ର

ସ୍ୱସ୍ଥ ସାହିତ୍ୟ ସମାଜର ତରୁଣ ସେନାବାହିନୀ ସହିତ ପ୍ରବୀଣ ସେନାପତି ବିଚ୍ଛନ୍ଦଚରଣଙ୍କ ଯୋଗାଯୋଗର ପଟାନ୍ତର ନାହିଁ । ହାଇସ୍କୁଲର ବାଳକ ସହ

ସହ ୪୫ ବର୍ଷ ବୟସ୍କ ପ୍ରୌଢ଼ର ଅକପଟ ଅନ୍ତରଙ୍ଗ ବନ୍ଧୁତ୍ୱହିଁ ବଞ୍ଛନିଧିଙ୍କ ସେନାବାହିନୀର ଥିଲା ଅମୋଘ ଅସ୍ତ୍ର । ସେହି ଅସ୍ତ୍ରବଳରେ ବଳୀୟାର ଥିଲେ ଏହି ତରୁଣ ସେନାମାନେ । ନିଜର ପାରିବାରିକ ସମସ୍ୟାଠାରୁ ଆରମ୍ଭ କରି ଧର୍ମ, ସାହିତ୍ୟ, ସଂସ୍କୃତି ପ୍ରଭୃତି ସମସ୍ତ ବିଷୟର ସମାଧାନ ସୂତ୍ର ଦେଉଥିଲେ ବଞ୍ଛନିଧିଚରଣ । କଳାଙ୍ଗ ଘରଣ୍ଡି ଅନୁଷ୍ଠାନକୁ ତାଙ୍କ ଭାଷାରେ "ପ୍ରତିଭାର ମଧୁଚକ୍ର" ଭାବେ ରୂପ ଦେବାକୁ ଇଚ୍ଛା କରି ନିଜର ଶିଷ୍ୟମାନଙ୍କର ଅନ୍ତର୍ନିହିତ ଶକ୍ତି ଆବିଷ୍କାର କରିବା ସଙ୍ଗେ ସଙ୍ଗେ ତାର ସମ୍ୟକ ବିକାଶ ନିମନ୍ତେ ଉଦ୍ୟମ କରୁଥିଲେ । ମୁଁ ୧୯୪୫ ମସିହାରେ କଟକ ପ୍ରାକ୍ଟିସିଙ୍ଗ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ୭ମ ଶ୍ରେଣୀ ଛାତ୍ର ଥିଲାବେଳେ "ରଘୁ ଅରକ୍ଷିତ" ନାଟକରେ କୃଷ୍ଣ ଭୂମିକାରେ ଅଭିନୟ କରି ଯେଉଁ ଗୀତ ଗାଇଥିଲି, ସେ ଗୀତ ଶୁଣିବା ଦିନଠୁଁ ବଞ୍ଛନିଧିଚରଣ ମତେ ତାଙ୍କ ସେନାବାହିନୀ, ଛାତ୍ର ସାହିତ୍ୟ ସମାଜର ସଭ୍ୟ କରି ନେବାର ଇଚ୍ଛା କରିଥିଲେ ବୋଲି ମୋ ସହ ପ୍ରଥମ ସାକ୍ଷାତ ବେଳେ ସେ ପ୍ରକାଶ କରିଥିଲେ ଓ ସେହି-ଦିନଠାରୁ ମୋର ତାଙ୍କ ପ୍ରତି ପ୍ରଗାଢ଼ ଅନୁରାଗ ଜନ୍ମି ଥିଲା ।

ପ୍ରଥମ ସାକ୍ଷାତରେ ସେ ମୋ କଣ୍ଠସଙ୍ଗୀତ ଶୁଣି-ଥିଲେ ଓ ମୋ ଦ୍ୱାରା ଓଡ଼ିଶାର ଛାନ୍ଦ ଓ ରାଗରାଗିଣୀ-ସମ୍ବଳିତ ଓଡ଼ିଶୀ ସଙ୍ଗୀତର ସୁରକ୍ଷା ହେବ ବୋଲି କହିଥିଲେ । କେବଳ କଥାରେ ପ୍ରେରଣା ଦେଇ ସେ ତାଙ୍କ କର୍ତ୍ତବ୍ୟ ସମ୍ପାଦନ କରି ନ ଥିଲେ । ଓଡ଼ିଶୀ ସଙ୍ଗୀତର ସଫଳ ରୂପାୟନ ପାଇଁ ସେ ମତେ ବିଶିଷ୍ଟ ସଙ୍ଗୀତଜ୍ଞ ସ୍ୱର୍ଗତ ସିଂହାରୀ ଶ୍ୟାମସୁନ୍ଦର କରଙ୍କ ନିକଟକୁ ପଠାଇଥିଲେ । ସେତେବେଳକୁ ଆମେ ସବୁ "ହାଫ୍ ପ୍ୟାଣ୍ଟ ପିନ୍ଧା ଟୋକା" ରାମଚନ୍ଦ୍ର ଭବନ ଓ ଟାଉନହଲରେ ବଞ୍ଛନିଧିଚରଣଙ୍କ ପ୍ରେରଣାରେ ଉଚ୍ଚ-ସ୍ୱରରେ ଅନର୍ଗଳ ଭାଷଣ ଦେଇ ପ୍ରାଚୀନ ସାହିତ୍ୟ, ସଂସ୍କୃତିବିରୋଧୀ ପାଶ୍ଚାତ୍ୟ ଶିକ୍ଷା ପ୍ରଭାବାନ୍ୱିତ ଶିକ୍ଷିତ-ଗୋଷ୍ଠୀଙ୍କୁ "ବିଜାତୀୟ" ବୋଲି ଆଖ୍ୟା ଦେଇ ସଭା-ସ୍ଥଳରେ ଗର୍ଜନ କରୁଥାଉ **ସାହିତ୍ୟ ସଂଗ୍ରାମରେ ସାଲିସ ନାହିଁ** । ସିଂହାରୀ ଶ୍ୟାମସୁନ୍ଦର ଆମମାନଙ୍କୁ (ବିଶେଷ କରି ମତେ ଓ ବୃନ୍ଦାବନ ବସୁଙ୍କୁ) ପିସ୍ତଲ ମାର୍କା ଟୋକାଆଖ୍ୟା ଦେଇଥାନ୍ତି । ମତେ ଦେଖିବାମାତ୍ରେ ସିଂହାରୀ ଏହି ଆଖ୍ୟା ଦେଇ କହିଲେ, "ତୁମେ ସବୁ ସଙ୍ଗୀତ ଶିଖିଲେ ଭଲ ହେବ ।" ମୁଁ ତାଙ୍କଠୁଁ ସଙ୍ଗୀତ ଶିକ୍ଷା ଆରମ୍ଭ କଲି । ପ୍ରଥମେ କବିସୂର୍ଯ୍ୟଙ୍କ "ମନ ଜମି ଯା ସିନ୍ଧୁଜେମା ପ୍ରାଣଧନେ" ସଙ୍ଗୀତ ଶିକ୍ଷା କଲି । ସଙ୍ଗୀତ ଶିକ୍ଷା କେତେଦୂର ହୋଇଛି ଜାଣିବା ନିମନ୍ତେ ବଞ୍ଛନିଧି-ଚରଣ ଇଚ୍ଛା ପ୍ରକାଶ କରିବାରୁ ମୁଁ ସଙ୍ଗୀତଟି ଗାନ କଲି । ସଙ୍ଗୀତ ଶୁଣିବାମାତ୍ରେ ବଞ୍ଛନିଧିଚରଣ କ୍ରୋଧରେ ଅଗ୍ନିଶର୍ମା ହୋଇଗଲେ । ତାଙ୍କର ଏ ପ୍ରକାର ଭାବ ଦେଖି ମୁଁ ମଧ୍ୟ ଆଚମ୍ବିତ ହେଲି । ବଞ୍ଛନିଧିଚରଣ କହିଲେ, "ଏ ସଙ୍ଗୀତ ତୁ ବିଜାତୀୟ ଢଙ୍ଗରେ ଶିଖିଛୁ । ଏହା ଆମ ପାରମ୍ପରିକ ଓଡ଼ିଶୀ ସଙ୍ଗୀତ ନୁହେଁ । ସିଂହାରୀ ଏହାକୁ ହିନ୍ଦୁସ୍ତାନୀ ଭାବରେ ତତେ ଶିଖାଇ-ଛନ୍ତି ।" ମୋର ସଙ୍ଗୀତ ଶିକ୍ଷାର ଇତି ହେଲା । କୌଣସି ମୁହଁଉପ୍ରୋଧ ନ ରଖି ସିଂହାରୀଙ୍କୁ ଡକାଇ ବଞ୍ଛନିଧି-ଚରଣ ଭର୍ତ୍ସନା କରିଥିଲେ । ଓଡ଼ିଶୀ ଗାନ କରିବା ପ୍ରଣାଳୀ ସ୍ୱତନ୍ତ୍ର । ହିନ୍ଦୁସ୍ତାନୀ ଗାନ ଭଳି ହେଲେ ଏହା ବିକୃତ ହେବ ବୋଲି ସେ ଦୃଢ଼ ମତ ପ୍ରକାଶ କରିଥିଲେ ଓ ବେତାରକେନ୍ଦ୍ରରେ ବିକୃତ ଭାବରେ ପରିବେଷିତ ଓଡ଼ିଶୀ ସଙ୍ଗୀତ ଗାୟକଙ୍କ ବିରୋଧରେ ନିଜର ମତ ପ୍ରକାଶ କରୁଥିଲେ । ବଞ୍ଛନିଧିଙ୍କ ଉପରେ କଟକ ବେତାର କେନ୍ଦ୍ରର ଓଡ଼ିଶୀ ସଙ୍ଗୀତ ଗାୟକମାନେ ବିଦେଶୀ ପ୍ରଭାବାନ୍ୱିତ ଶ୍ରୋତାମାନଙ୍କ ରୁଚି ଅନୁକୂଳ ହେବା ଭଳି ଲଘୁ ଢାଞ୍ଚା ଗାନ ପରିହାର କରି ପାରମ୍ପରିକ ଭାବରେ ଗାନ କରିବାକୁ ଲାଗିଲେ । ଶୁଦ୍ଧ ଓଡ଼ିଶୀ ଗାନ ଓ ଓଡ଼ିଶୀ ନୃତ୍ୟ ପରିବେଷଣ ପାଇଁ ସେ ଆଜୀବନ ସଂଗ୍ରାମ କରିଥିଲେ ।

## ପଡ଼ୋଶୀ ପ୍ରଦେଶ ସଂସ୍କୃତି ଅନୁପ୍ରବେଶ ପ୍ରତିହତ

୧୯୫୩ ମସିହାରେ ବିଚ୍ଛନ୍ଦଚରଣଙ୍କ ଦ୍ୱାରା ୧୯୪୪ରୁ ପ୍ରବର୍ତ୍ତିତ ମହାନ୍ ଜାତୀୟ ଆନ୍ଦୋଳନ "ଭଞ୍ଜ ଜୟନ୍ତୀ" ନମବର୍ଦ୍ଧିଷ୍ଣୁ ହୋଇ ରାମଚନ୍ଦ୍ରଭବନ ଓ କଟକ ଟାଉନହଲ ପରିସରରୁ ମୁକ୍ତ ହୋଇ କଲିଜିଏଟ ସ୍କୁଲର ମୁକ୍ତ ପ୍ରାଙ୍ଗଣରେ ଅନୁଷ୍ଠିତ ହେଲା । ସେତେବେଳକୁ ରବୀନ୍ଦ୍ର ଜୟନ୍ତୀ ଅନୁଷ୍ଠାନ ବହୁ ପଛରେ ଆରମ୍ଭ ହୋଇ ମଧ୍ୟ ସରକାର ତଥା ସରକାରୀ କର୍ମଚାରୀଙ୍କ ସକ୍ରିୟ ପୃଷ୍ଠପୋଷକତାରେ ବହୁ ଆଡ଼ମ୍ବରରେ ଅନୁଷ୍ଠିତ ହେଉଥାଏ । ଇଉନିଅନ କ୍ଲବରେ ଅନୁଷ୍ଠିତ ଏହି ଉତ୍ସବ ଏକ ଜାତୀୟ କବିଙ୍କ ଜୟନ୍ତୀ ପରିବର୍ତ୍ତେ ପ୍ରାନ୍ତୀୟ ବଙ୍ଗ ସାହିତ୍ୟପ୍ରେମୀ ତଥା ବଙ୍ଗଭାଷୀଙ୍କ ଗୌରବ ପ୍ରଖ୍ୟାପନ ତଥା ଉତ୍କଳୀୟ ସଂସ୍କୃତି ପ୍ରତି ହେୟଜ୍ଞାନର ଏକ ବିରାଟ ପ୍ରଦର୍ଶନୀରେ ରୂପାୟିତ ହୋଇଥିଲା । କୋଣାର୍କକୁ ବଙ୍ଗଶିଳ୍ପୀଙ୍କ ଅବଦାନ ବୋଲି କହିଥିବା ବଙ୍ଗୀୟ ଐତିହାସିକଙ୍କ ଦମ୍ଭୋକ୍ତି ତଥା ବିଜୟ ଚନ୍ଦ୍ର ମଜୁମଦାର ସମ୍ପାଦିତ "Typical Selections from Oriya literature" ରେ ବିଚ୍ଛନ୍ଦ କଳ୍ପିତ ଓଡ଼ିଆ ସାହିତ୍ୟ ସଂସ୍କୃତିର ସୁମହାନ ପ୍ରତୀକ ଭଞ୍ଜଙ୍କ ପ୍ରତି ନିଦାରୁଣ କଟାକ୍ଷ ସାଙ୍ଗକୁ ରବୀନ୍ଦ୍ର ଜୟନ୍ତୀରେ ଓଡ଼ିଆ ଶିଳ୍ପୀଙ୍କ ଦ୍ୱାରା ବଙ୍ଗୀୟ ଭାଷାରେ ସଙ୍ଗୀତ ଗାନ ତଥା ବଙ୍ଗୀୟ ରୀତିରେ ନୃତ୍ୟ ପରିବେଷଣ ବିଚ୍ଛନ୍ଦ-ଚରଣଙ୍କ ପ୍ରତି ଏକ "ଯୁଦ୍ଧଂ ଦେହି" ଥିଲା । ଓଡ଼ିଶା ସଂସ୍କୃତିର ହୃତ୍‌ପିଣ୍ଡ କଟକ ସହର ବକ୍ଷରେ ବଙ୍ଗୀୟ ସଂସ୍କୃତିର ବିଜୟ ଅଭିଯାନର ଦୃଶ୍ୟ ବିଚ୍ଛନ୍ଦଚରଣ ପ୍ରତ୍ୟକ୍ଷ କରି ନ ଥିଲେ ।

୧୯୫୧ ଓ ୧୯୫୨ ର ରବୀନ୍ଦ୍ର ଜୟନ୍ତୀର ପ୍ରତ୍ୟକ୍ଷଦର୍ଶୀ ବିବରଣୀ ଦେବା ପାଇଁ ମୁଁ ଓ ବନ୍ଧୁ ହୃଦାନନ୍ଦ ରାୟ ଶ୍ମୁକ ସାରଣି ଭଳି ପ୍ରେରିତ ହୋଇ-ଥିଲୁ । କଟକ ଇଉନିୟନ କ୍ଲବ ପ୍ରାଙ୍ଗଣସ୍ଥିତ ପଡ଼ୋଶୀ ପ୍ରଦେଶ ସଂସ୍କୃତିର ଉତ୍କଳୀୟ ଅନୁପ୍ରବେଶରେ ଉତ୍କଳୀୟ ସଂସ୍କୃତିର ସଞ୍ଜୀବନ ପାଇଁ ସତତ ଚେଷ୍ଟିତ ବିଚ୍ଛନ୍ଦଚରଣଙ୍କ ପ୍ରାଣରେ ଗଭୀର ଦୁଃଖ ଦେଇଥିଲା । "ଓଡ଼ିଆ ଏକଟା ସ୍ୱତନ୍ତ୍ର ଭାଷା ନଏ" ବୋଲି କହୁଥିବା ଜାତିକୁ ମଧୁସୂଦନ, ଗୌରୀଶଙ୍କର, ପଣ୍ଡିତ ଗୋବିନ୍ଦ ରଥ ଓ ତତ୍‌କାଳୀନ ବିଚ୍ଛନ୍ଦ ପଟ୍ଟନାୟକ (ବିଚ୍ଛନ୍ଦ ଚରଣ ନୁହନ୍ତି) ପ୍ରଭୃତି ଉପଯୁକ୍ତ ଜବାବ ଦେଇ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା କରିଥିଲେ । ଓଡ଼ିଆ ଭାଷା ସ୍ୱତନ୍ତ୍ର ହେଲେ ମଧ୍ୟ ଓଡ଼ିଶା ସଂସ୍କୃତି ବଙ୍ଗର ପ୍ରଭାବରୁ ମୁକ୍ତ ହୋଇ ନ ଥିଲା । ଓଡ଼ିଆ ଜାତିର କୁତ୍ସା ରଟନା କରି ଆକ୍ଷେପୋକ୍ତି କରିଥିବା ବିଜୟଚନ୍ଦ୍ର ମଜୁମଦାରଙ୍କ ମୁଖବନ୍ଧ ସମ୍ବଳିତ Typical Selections from Oriya literature ଏମ୍.ଏ. ଶ୍ରେଣୀରେ ପାଠ୍ୟ ହୋଇଥିବାରୁ ତାହା ବିରୁଦ୍ଧରେ ବିଚ୍ଛନ୍ଦଚରଣଙ୍କ ନିର୍ଦ୍ଦେଶରେ ଆମ୍ଭେମାନେ ୧୯୪୮ ମସିହାରୁ କ୍ରମାଗତ ଆନ୍ଦୋଳନ ଚଳାଇଥିଲୁ । ବିଜୟଚନ୍ଦ୍ର ମଜୁମଦାର ଓ ତାଙ୍କ ସମର୍ଥକ ବଙ୍ଗ-ଭାବାପନ୍ନ ଓଡ଼ିଆମାନଙ୍କୁ ବିଜାତୀୟ ବୋଲି ଘୋଷଣା କରି ଆମେମାନେ ସେମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲୁ । ୧୯୪୮ ମସିହାରେ ୧୦ମ ଶ୍ରେଣୀର ଛାତ୍ର ଥାଇ ସୁଦ୍ଧା ବିଚ୍ଛନ୍ଦଙ୍କ ପ୍ରେରଣାପୁଷ୍ଟ ପ୍ରଥମ ଭାଷଣ ଦେଇ ଟାଉନହଲରେ ମୁଁ କହିଥିଲି, "ବିଜାତୀୟମାନଙ୍କ ମୂଳୋତ୍ପାଟନ ହେବ । ବିଜାତୀୟଙ୍କ ରକ୍ତର ସରୋବରରେ ଜାତୀୟତାର ପଦ୍ମ ପ୍ରସ୍ଫୁଟିତ ହେବ ।" ଏ ଭାଷଣ ପରେ ବିଚ୍ଛନ୍ଦଚରଣଙ୍କ ଅପୂର୍ବ ଉଲ୍ଲାସ ଏବେ ୩୦ ବର୍ଷ ପରେ ମଧ୍ୟ ମୋ ଚକ୍ଷୁ ସମ୍ମୁଖରେ ଆଭାସି ଉଠୁଛି । ବିଜୟଚନ୍ଦ୍ର ମଜୁମଦାରଙ୍କ ମନ୍ତବ୍ୟ ସମ୍ବନ୍ଧରେ ଭାଷଣ ଦେଇ ବିଚ୍ଛନ୍ଦଚରଣ ଏତେ ଉତ୍କ୍ଷିପ୍ତ ହେଲେ ଯେ ସେ ବହି ୩ ଖଣ୍ଡକୁ ଟେବୁଲ ଉପରୁ ତଳକୁ ଫିଙ୍ଗିଦେଲେ ଏବଂ କହିଲେ "ଆଜି-ଠାରୁ ଏହାକୁ ଜାତି ଫିଙ୍ଗିଲା" । କେବଳ ସେତିକରେ ସନ୍ତୁଷ୍ଟ ନ ହୋଇ ସେହି ବହିଗୁଡ଼ିକ ଉପରକୁ ନିଜର

ଗ୍ରନ୍ଥ ମାଧ୍ୟମରେ ରଚିତ କବିତା ଗ୍ରନ୍ଥ "କବିତା କୁମୁଦ" ନିକ୍ଷେପ କରି କହିଲେ, "ବିଜାତୀୟତାର ଏହି ସ୍ତୂପ ଉପରେ ମୁଁ ଏହି କବିତାକୁମୁଦ ରୂପକ ଆଟମ ବମ୍ ନିକ୍ଷେପ କରୁଛି।" ଏହି ଘଟଣା ପରେ ନିଆଁଖୁଣ୍ଟା ସମ୍ପାଦକ ସ୍ୱର୍ଗତ ଗୋଦାବରୀଶ ମହାପାତ୍ର ତାଙ୍କ ପତ୍ରିକାରେ "ବିଚ୍ଛନ୍ଦଙ୍କ ଆଟମ ବମ୍" ଶୀର୍ଷକ ଏକ ବ୍ୟଙ୍ଗ ରଚନା କରି ବୈଜ୍ଞାନିକ ବିଚ୍ଛନ୍ଦଚରଣ କିପରି କବିତାକୁମୁଦ ରୂପକ ଆଟମ ବମ୍ ସୃଷ୍ଟି କରୁଛନ୍ତି ବୋଲି କହି ପରିହାସ କରିଥିଲେ।

ପ୍ରକୃତପକ୍ଷେ ବିଚ୍ଛନ୍ଦକୃତ "କବିତା କୁମୁଦ" ଏକ ଆଟମ ବମ୍ ସ୍ୱରୂପ ଥିଲା। ଓଡ଼ିଶାର ପରମ୍ପରା-ସମ୍ମତ ଛାନ୍ଦ ଗ୍ରନ୍ଥ ହିଁ ଓଡ଼ିଆର କବିତା ରଚନାର ସରଣୀ ବୋଲି କହି ସେ ଯୁବଲେଖକଗୋଷ୍ଠୀକୁ ଗ୍ରନ୍ଥରେ ଆଧୁନିକ ଭାବଧାରା ସମନ୍ୱିତ କବିତା ରଚନା କରିବାକୁ ପ୍ରେରଣା ଦେଇଥିଲେ ଓ ନିଜେ କବିତା କୁମୁଦରେ ଗ୍ରନ୍ଥ କବିତାମାନ ଲେଖିଥିଲେ। ଗ୍ରନ୍ଥ ଓ ଓଡ଼ିଶୀର ସଂରକ୍ଷଣ ପାଇଁ ଆମେମାନେ ଶପଥପତ୍ରରେ ସ୍ୱାକ୍ଷର କରିଥିଲୁ। ଉପେନ୍ଦ୍ର, ଘନକୃଷ୍ଣ, କବିସୂର୍ଯ୍ୟ ପ୍ରବର୍ତ୍ତିତ ଗ୍ରନ୍ଥରେ କବିତା ଲେଖିବା ପାଇଁ ଓ ଛନ୍ଦ-ବିହୀନ ପରମ୍ପରାବର୍ଜିତ କବିତା ଓ କବିଙ୍କ ବିରୁଦ୍ଧରେ ଆନ୍ଦୋଳନ କରିବା ନିମନ୍ତେ ବ୍ରତ ଗ୍ରହଣ କରିଥିଲୁ। ଗ୍ରନ୍ଥ ପ୍ରାଚୀନ ଯୁଗୀୟ ଓ ଆଧୁନିକ ଯନ୍ତ୍ର-ଯୁଗରେ ଏହା ଅଚଳ ହୋଇ ପଡ଼ୁଛି ବୋଲି ଆମ ସଭାରେ କେତେକ ସାହିତ୍ୟିକ ବକ୍ତୃତା ପ୍ରସଙ୍ଗରେ ଉଲ୍ଲେଖ କରିଥିବାରୁ ବିଚ୍ଛନ୍ଦଚରଣଙ୍କ ନିର୍ଦ୍ଦେଶରେ "ଗ୍ରନ୍ଥ ଓ ଯନ୍ତ୍ରଯୁଗ" ଶୀର୍ଷକ ଏକ ଦୁଇଦିନିଆ ଆଲୋଚନାଚକ୍ର କଟକ ଟାଉନହଲରେ ଆୟୋଜିତ ହେଲା ଓ ବହୁ ସମର୍ଥ ଆଧୁନିକ କବି ଓ ସାହିତ୍ୟିକଙ୍କ ସହ ଆମର ବାଗ୍‌ଯୁଦ୍ଧ ବିଚ୍ଛନ୍ଦଚରଣଙ୍କ ଅଧି-ନାୟକତ୍ୱରେ ସମାହିତ ହେଲା।

## ସାମାଜିକ କଟାକ୍ଷ ପ୍ରତି ଅକୁତୋଭୟ

ଗ୍ରନ୍ଥ ଓ ବିଚ୍ଛନ୍ଦଚରଣଙ୍କର ଅଭେଦ୍ୟ ସମ୍ପର୍କ ଓ ଉଭୟଙ୍କ ପ୍ରତି ମୋର ପ୍ରଗାଢ଼ ଅନୁରକ୍ତି ସେତେ-ବେଳେ ମତେ ରେଭେନ୍‌ସା କଲେଜ ସହପାଠୀଙ୍କ ପରିହାସ, ବ୍ୟଙ୍ଗର ମୁକାବିଲା କରାଇଛି। "ଆରେ ତୁମେମାନେ ଓଡ଼ିଆ ସାହିତ୍ୟକୁ ଶ୍ରେଷ୍ଠ କରିଦେବ ଶ୍ରେଷ୍ଠାକୁ ଧରି" "ବିଗତ ହୋଇଛି ଛନ୍ଦ ଯାହାର ସେ ବିଚ୍ଛନ୍ଦ। ସେଇ ଛନ୍ଦହୀନ ବ୍ୟକ୍ତି କିପରି ତୁମର ନେତା ?" ଭଳି ଉକ୍ତିର ପୃଷ୍ଠଭାଗରେ ରହିଥିବା ମନୋବୃତ୍ତିର ସମ୍ମୁଖୀନ ହେବାରେ ବହୁବାର ଅସ୍ୱ-ସ୍ତିକର ଲାଞ୍ଛନା କରିବାକୁ ପଡ଼ୁଥିଲା।

ଆମ ଦ୍ୱାରା ଅନୁଷ୍ଠିତ ବିଭିନ୍ନ ଜୟନ୍ତୀ ଉତ୍ସବରେ ନାନା ପ୍ରକାର ଅପୌକ୍ତିକ ପ୍ରସଙ୍ଗ ଉତ୍‌ଥାପନ କରିବା ନିମନ୍ତେ କେତେକ ଗ୍ରନ୍ଥ ଅଧ୍ୟାପକମାନଙ୍କ ଦ୍ୱାରା ପ୍ରେରିତ ହୋଇଥାନ୍ତି। ଏହି ସମୟରେ ବିଚ୍ଛନ୍ଦଚରଣଙ୍କ ସେନାପତିଭାବେ ମୋର କାର୍ଯ୍ୟକୁ ବ୍ୟଙ୍ଗ କରି "ବାଇଡଙ୍କ" ନାମକ ପତ୍ରିକା ମତେ "ଖଞ୍ଜି ଶାର୍ଦ୍ଦୂଳର ରଜତ ଲାଙ୍ଗୁଳ" ବୋଲି ଆଖ୍ୟା ଦେଇଥିଲେ। ସେହି ଖଞ୍ଜି ଶାର୍ଦ୍ଦୂଳଙ୍କ ଲାଙ୍ଗୁଳ ଆଖ୍ୟା ପାଇବା ମୋ ପକ୍ଷରେ ପରମ ଗୌରବ ଓ ସୌଭାଗ୍ୟ ହୋଇ ରହିଛି। ସାପ୍ତାହିକ ମାତୃଭୂମିର "ମୋଟା ବୁଦ୍ଧିଆର ସୂକ୍ଷ୍ମ ବିଚାର"ରେ ବିଚ୍ଛନ୍ଦ ଗୋଟିପୁଅ ନଚାଉଛନ୍ତି ବୋଲି ମୋତେ ଓ ହ୍ଲାଦାନନ୍ଦବାବୁଙ୍କୁ ଆକ୍ଷେପ କରା-ଯାଇଥିଲା। ହ୍ଲାଦାନନ୍ଦବତୀ ଓ ରଜତସୁନ୍ଦରୀ ବା ଲାବଣ୍ୟବତୀ ରାୟ ଓ କୋଟିବ୍ରହ୍ମାଣ୍ଡସୁନ୍ଦରୀ କରି ପ୍ରଭୃତି ଆକ୍ଷେପୋକ୍ତିକୁ ବିଚ୍ଛନ୍ଦଚରଣଙ୍କ ସହ ଉପଭୋଗ କରୁଥିଲୁ। ବିଚ୍ଛନ୍ଦଚରଣଙ୍କ ଅଧିନାୟକତ୍ୱରେ ଆମର ଆନ୍ଦୋଳନର ବ୍ୟାପକତା ଫଳରେ ଉତ୍କଳ ବିଶ୍ୱ-ବିଦ୍ୟାଳୟ ଓଡ଼ିଆ ଏମ୍. ଏ. ଶ୍ରେଣୀରୁ ବିଜୟଚନ୍ଦ୍ର ମଜୁମଦାରଙ୍କ ପୁସ୍ତକକୁ ବାଦ ଦିଆଗଲା। ଏ ଦିଗରେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଚନ୍ଦ୍ରାମଣି ଆଚାର୍ଯ୍ୟ

ବିଶେଷ ଉଦ୍ୟମ କରିଥିଲେ । କଟକ ଇଉନିୟନ କ୍ଲବ ପ୍ରାଙ୍ଗଣରେ ବର୍ଗୀୟ ସଂସ୍କୃତିର ରଣହୁଙ୍କାର ସ୍ୱଚ୍ଛନ୍ଦ-ଚରଣଙ୍କ ଚିତ୍ତ ମଥିତ କରିଥିଲା ବୋଲି ବୋଧହୁଏ ଦୀର୍ଘ ୨୦ ବର୍ଷ ପରେ ସେହି ଇଉନିୟନ କ୍ଲବର ପ୍ରାଙ୍ଗଣରେ ସ୍ୱଚ୍ଛନ୍ଦକଳ୍ପିତ ଭଞ୍ଜମଣ୍ଡପର ଭିତ୍ତି ସ୍ଥାପିତ ହୋଇ ଉତ୍କଳୀୟ ସଂସ୍କୃତିର ବିଜୟ ଧ୍ୱଜା ସଗର୍ବେ ଉତ୍ତୋଳିତ ହେଲା । ଗଭୀର ଦୁଃଖ ହେଉଛି ଯେ ସ୍ୱଚ୍ଛନ୍ଦଚରଣ ଏହା ଦେଖିପାରିଲେ ନାହିଁ ।

## ସାହିତ୍ୟ ପାଇଁ ସଂଗ୍ରାମର ବ୍ୟାପକତା

ବିପୁଳ ଜନସମାବେଶ ମଧ୍ୟରେ ୧୯୫୩ରେ ଭଞ୍ଜଜୟନ୍ତୀ କରାଯିବା ସ୍ଥିର କରାଗଲା । ସ୍ୱର୍ଗତ ଡାକ୍ତର ବନବିହାରୀ ପଟ୍ଟନାୟକଙ୍କ ସଭାପତିତ୍ୱରେ ଅଭ୍ୟର୍ଥନା ସମିତି ଗଠିତ ହୋଇ ଭଞ୍ଜଜୟନ୍ତୀ ମହାଡ଼ମ୍ବରରେ ପାଳନ କରାଗଲା ।

ଏହି ଭଞ୍ଜ ଜୟନ୍ତୀ ଉପଲକ୍ଷେ ମୁଁ ରଚନା କରିଥିବା ଭଞ୍ଜ ଜୀବନୀସମ୍ବଳିତ "କବିସମ୍ରାଟ" ନାଟକ ଓ ଶ୍ରୀ ଉଦୟନାଥ ମିଶ୍ରଙ୍କ ରଚିତ ଲାବଣ୍ୟବତୀ କାବ୍ୟର ନାଟ୍ୟରୂପ "ଲାବଣ୍ୟବତୀ" ପରିବେଷିତ ହେବା ନିମନ୍ତେ ସ୍ଥିର କରାଗଲା । ଲାବଣ୍ୟବତୀ ନାଟକରେ ଥିବା ଭଞ୍ଜୀୟ କବିତାର ସ୍ୱର ସଂଯୋଜନା ପାଇଁ ନିମନ୍ତ୍ରିତ ହୋଇ ଆସିଲେ ସିଂହାରୀ ଶ୍ୟାମସୁନ୍ଦର କର । ଗୁରୁଦେବ ସ୍ୱଚ୍ଛନ୍ଦଚରଣ ମତେ ଦାୟିତ୍ୱ ଦେଲେ ଓଡ଼ିଶୀ ସଙ୍ଗୀତର ଶୁଦ୍ଧତା ତଦାରଖ କରିବା ନିମନ୍ତେ । ଲାବଣ୍ୟବତୀ ନାଟକର ଆରମ୍ଭ ହେବ କେଳି ସରୋବର ବର୍ଣ୍ଣନାରୁ । ରାମକେରୀ ରାଗରେ ଗୀତଟି ହେଲା—

"ମନ ଦେଇ ଶୁଣ କୋବିଦେ ନୃପସୁତା ସୁକେଶୀ
କୂଳରେ ବକୁଳ ମୂଳରେ ପୀଠ ଉପରେ ବସି ।"

ସିଂହାରୀ ମହାଶୟ ଏହାକୁ ସ୍ୱର ଦେଲେ ହିନ୍ଦୁସ୍ଥାନୀ ଢଙ୍ଗରେ । ଏଥିରେ ଗୁରୁ ଲଘୁ ନିୟମରେ ହ୍ରସ୍ୱ ଓ ଦୀର୍ଘ ଉଚ୍ଚାରଣ ଉପରେ ଜୋର ଦିଆଗଲା । ନାଟ୍ୟକାର ଉଦୟନାଥ ମିଶ୍ର ଏ ଆଧୁନିକ ସ୍ୱର ଶ୍ରବଣରେ ଆନନ୍ଦରେ ମଶଗୁଲ ହୋଇଗଲେ । ସହଜ ରୀତିରେ ରାମକେରୀ ରାଗ ଗାନ ନ ହୋଇ ଏଭଳି ବିଜାତୀୟ ରୀତିରେ ପରିବେଷଣ ହେବାରୁ ମୁଁ ତୀବ୍ର ପ୍ରତିବାଦ କଲି । ଓଡ଼ିଶୀ ସଙ୍ଗୀତରେ ଦୀର୍ଘ ହ୍ରସ୍ୱ ନାହିଁ ବୋଲି କହିଲି । ଉତ୍‌କ୍ଷିପ୍ତ ହୋଇ ଉଦୟନାଥବାବୁ କହିଲେ, "ଏପରି ପ୍ରାଚୀନ ରୀତିରେ ସଙ୍ଗୀତ ଗାନ କଲେ ଲୋକେ ତୁମ ଭଞ୍ଜଙ୍କୁ ଜୋତା ଫିଙ୍ଗିବେ ।" କ୍ରୋଧରେ ମୁଁ ଅଗ୍ନିଶର୍ମା ହୋଇଗଲି । ଭଞ୍ଜଙ୍କ ପ୍ରତି ଏ ଆକ୍ଷେପୋକ୍ତି ଅସହ୍ୟ । ତୀବ୍ର ବାଦାନୁବାଦ ପରେ ଲାବଣ୍ୟବତୀ ନାଟକର ଅଭିନୟ ଓ ସ୍ୱର ସଂଯୋଜନା ବନ୍ଦ ରହିଲା । ସ୍ୱଚ୍ଛନ୍ଦଚରଣଙ୍କ କାନକୁ କଥା ଗଲା ପରେ ସେ ଚିତ୍କାର କରି କହିଲେ, "No Compromise with principle" ସାଲିସ କରି ସେ ମାନ୍ତିକୁ ବଳି ଦେଇ ଦେଇ ନାହାନ୍ତି । ଆଜି ତାଙ୍କ ମାନ୍ତିକୁ ବଜାୟ ରଖିଥିବାରୁ ମୋ ମୁଣ୍ଡରେ ଶାଢ଼ୀ ବାନ୍ଧିଦେଲେ । ଉଦୟନାଥବାବୁ ଭଞ୍ଜଙ୍କ ପାଇଁ ଆକ୍ଷେପୋକ୍ତି ଲାଗି ଦୁଃଖ ପ୍ରକାଶ କଲେ । ସିଂହାରୀ ଶ୍ୟାମସୁନ୍ଦର ବିଦାୟ ନେଲେ ଓ ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ ଆସି ପାରମ୍ପରିକ ରୀତିରେ ରାମକେରୀ ଓ ଅନ୍ୟାନ୍ୟ ଛାନ୍ଦର ସ୍ୱର ଶିକ୍ଷା ଦେଲେ ।

ଛାନ୍ଦ ଓ ଓଡ଼ିଶୀର ଶୁଦ୍ଧତା ରକ୍ଷା ନିମନ୍ତେ ଉଦ୍ୟମ କରିବା ସଙ୍ଗେ ସଙ୍ଗେ ଭଞ୍ଜ ଜୟନ୍ତୀ ଉତ୍ସବ ସମୟରେ ପରିବେଷିତ ଉତ୍କଳର ଜାତୀୟ ଅନୁଷ୍ଠାନ ପାଲା, ଦାସକାଠିଆ, ଓଡ଼ିଶୀ ନୃତ୍ୟ ପ୍ରଭୃତିର ବିଶୁଦ୍ଧ ପରିବେଷଣ ନିମନ୍ତେ ସ୍ୱଚ୍ଛନ୍ଦଚରଣ ସତତ ବ୍ରତୀ ଥିଲେ । No compromise with principle ମାନ୍ତିରେ ସେ ଅଟଳ ରହିଥିଲେ । ଗୁରୁଦେବ ସ୍ୱଚ୍ଛନ୍ଦଚରଣଙ୍କର ଏହି "No Compromise" କହିବା ସମୟର ଭୀମ ମୂର୍ତ୍ତି ବହୁବାର ଜୀବନରେ ମନେ ପଡ଼ଯାଏ ଓ ସେଇ ସାଲିସ କରି ଜୀବନକୁ ପାଳିସ କରିବାକୁ ଇଚ୍ଛା

ନ କରି ବହୁ ବାଧାବିଘ୍ନ ଓ ବିପଦକୁ ବରଣ କରିବାରେ ସ୍ୱଜନ ତଥା ଶୁଭେଚ୍ଛୁ ବନ୍ଧୁବର୍ଗଙ୍କ ସମାଲୋଚନାର ଶରବ୍ୟ ହେଲେହେଁ ମୋ ମନରେ କିପରି ଏକ ଆଧ୍ୟାତ୍ମିକ ସନ୍ତୋଷ (Spiritual satisfaction) ଆସିଛି । ଏହି No Compromise ମତରେ ଉତ୍କଳର ଜଣେ ବିଶିଷ୍ଟ ପାଲାଗାୟକ ପାରମ୍ପରିକ ପଗଡ଼ି ନ ପିନ୍ଧି ହାତରେ ଚିନି ଧରି ନ ଥିବାରୁ ସେ ତାଙ୍କୁ ଜୟନ୍ତୀ ମଞ୍ଚରେ ପାଲି ପରିବେଷଣ କରିବାକୁ ଅନୁମତି ଦେଇ ନ ଥିଲେ । ବିଚ୍ଛନ୍ଦଚରଣ ଚୁଟି ରଖି କାନରେ କୁଣ୍ଡଳ ପିନ୍ଧି କାହିଁକି ବକ୍ତୃତା ଦେଉନାହାନ୍ତି ବୋଲି ଏଇ ପ୍ରସଙ୍ଗରେ ତାଙ୍କୁ କେତେକ ସମାଲୋଚନା କଲାବେଳେ ବିଚ୍ଛନ୍ଦଚରଣ ଅବିଚଳିତ ରହିଥିଲେ । ପାଲି ଗାୟକର ପୋଷାକ ସ୍ୱୟଂ ଉତ୍କଳ ଗଜପତିଙ୍କର । ଜ୍ଞାନର ସମ୍ମାନ ସ୍ୱରୂପ ଗଜପତି ପାଲି ଗାୟକଙ୍କୁ ଏହି ପୋଷାକ ପରିଧାନ ନିମନ୍ତେ ଅନୁମତି ଦେଇଥିଲେ । ସେଇ ପାରମ୍ପରିକ ପରିଚ୍ଛଦର ବ୍ୟତିକ୍ରମ ବିଚ୍ଛନ୍ଦଙ୍କ ଦୃଷ୍ଟିରେ ଗର୍ହିତ ଥିଲା ।

ଓଡ଼ିଶା ସଂସ୍କୃତିର ମହନୀୟତାର ତିନି ଦିଗର ତିନୋଟି ପ୍ରତୀକ ନିର୍ବାଚନ କରିବାରେ ବିଚ୍ଛନ୍ଦଚରଣଙ୍କ ଅନ୍ତର୍ଦୃଷ୍ଟି ଅତ୍ୟନ୍ତ ତୀକ୍ଷ୍ଣ ଥିଲା । କଳାରେ କୋଣାର୍କ, ଦର୍ଶନରେ ଜଗନ୍ନାଥ ଓ ସାହିତ୍ୟରେ ଭଞ୍ଜଙ୍କୁ ପ୍ରତୀକ-ଭାବେ ଗ୍ରହଣ କରି କଳିଙ୍ଗ ଭାରତୀର ଆନୁଷ୍ଠାନିକ ମୁଦ୍ରା (crest) ରେ ସ୍ଥାନ ଦେଇଛନ୍ତି ।

## ସଂଗ୍ରାମରେ ଅନମନୀୟତା

ଭଞ୍ଜ ଥିଲେ ବିଚ୍ଛନ୍ଦଙ୍କ ଦୃଷ୍ଟିରେ ଉତ୍କଳୀୟ କୃଷ୍ଟିର ସର୍ବୋତ୍ତମ ବିକାଶର ପୂର୍ଣ୍ଣାଙ୍ଗ ପ୍ରକାଶ । ତାଙ୍କ ଜୟନ୍ତୀ ହିଁ ଓଡ଼ିଆ ସଂସ୍କୃତିର ଜୟନ୍ତୀ । ଭଞ୍ଜ ଜୟନ୍ତୀକୁ ଏକ ଗଣ ସାଂସ୍କୃତିକ ଆନ୍ଦୋଳନ କରିବାରେ ଆମମାନଙ୍କ ଉଦ୍ୟମ ବିଚ୍ଛନ୍ଦଚରଣଙ୍କ ଦର୍ଶନଦ୍ୱାରା ହିଁ ପୁଷ୍ଟ ହୋଇଥିଲା । ଭଞ୍ଜଙ୍କ ପ୍ରତି କୌଣସି ଆକ୍ଷେପ ଓଡ଼ିଆ ଜାତିର ମହନୀୟ ସଂସ୍କୃତି ପ୍ରତି ଆକ୍ଷେପ ଓ ଆଜୀବନ ଉତ୍କଳ ସଂସ୍କୃତିର ପୂଜାରୀ, ଉତ୍କଳମାତାର ଏକନିଷ୍ଠ ଭକ୍ତ, ଓଡ଼ିଆ ଜାତିର ଅତୀତ ଗୌରବର ଏକନିଷ୍ଠ ସ୍ମରଣ ବିଚ୍ଛନ୍ଦଚରଣଙ୍କ ପକ୍ଷେ ତାହା ଥିଲା ଅସହ୍ୟ । ନିଜର ବହୁଦିନର ସାଥୀ ବିଙ୍କୁଲି ବାଡ଼ି ଧରି ଭୀମ ମୂର୍ତ୍ତି ଧାରଣ କରି ସେ ଏଇ ଭଞ୍ଜବିରୋଧୀଙ୍କ ସହ ସଂଗ୍ରାମରେ ଅବତୀର୍ଣ୍ଣ ହୁଅନ୍ତି । ଗର୍ଜନ ଓ ସର୍ଜନରେ ସେ ଭଞ୍ଜ ନିନ୍ଦୁକଙ୍କୁ ମୁକାବିଲା କରନ୍ତି । Orissa Review ରେ ବିଚ୍ଛନ୍ଦଚରଣଙ୍କ ଭଞ୍ଜୀୟ ପ୍ରେମ କବିତାର ଇଂରାଜୀ ଅନୁବାଦ ପ୍ରକାଶନ ଦେଖି ତତ୍କାଳୀନ ମୁଖ୍ୟମନ୍ତ୍ରୀ ଏହାକୁ "Unpublishable Trash" ବୋଲି file ରେ ଆଖ୍ୟା ଦେବାରୁ ବିଚ୍ଛନ୍ଦ-ଚରଣ ଉତ୍‌କ୍ଷିପ୍ତ ହୋଇ ତୀବ୍ର ପ୍ରତିବାଦ କରି ଇସ୍ତଫା ଦେବାକୁ ପ୍ରସ୍ତୁତ ଥିଲେ । ତତ୍‌କାଳୀନ ସଚିବ ସାହିତ୍ୟିକ ପ୍ରାଣନାଥ ମହାନ୍ତିଙ୍କ ମଧ୍ୟସ୍ଥତାରେ ସେ ତିକ୍ତତାର ଅବସାନ ଘଟିଲା । ଭଞ୍ଜ ଜୟନ୍ତୀ ଉତ୍ସବର ଅତିଥି ତତ୍‌କାଳୀନ ରେଭିନ୍ୟୁ ବୋର୍ଡ଼ ଚେୟାରମ୍ୟାନ ମନମଣି ସେନାପତିଙ୍କ ଭଞ୍ଜଙ୍କ ପ୍ରତି ଆକ୍ଷେପର ତୀବ୍ର ପ୍ରତିବାଦ କରି ବିଚ୍ଛନ୍ଦଚରଣ ନିଜର ନିର୍ଭୀକତାର ପରିଚୟ ଦେଇଥିଲେ ।

ସରକାରୀ ଚାକିରୀ ତାଙ୍କ ପକ୍ଷରେ ଗୌଣ ଥିଲା । ଜାତିର ସମ୍ମାନ, ସଂସ୍କୃତିର ଗୌରବ, ସାହିତ୍ୟର ବିକାଶ ସର୍ବଦା ତାଙ୍କର ଧ୍ୟେୟ ଓ ଜୀବନର ମୁଖ୍ୟ ଥିଲା । ଏଇ ଆଭିମୁଖ୍ୟ ନେଇ ସେ ନିଜର ପାରିବାରିକ ସମୃଦ୍ଧି ପାଇଁ ଆଦୌ ଦୃଷ୍ଟି ଦେଇ ନ ଥିବାରୁ ତାଙ୍କର ଅକାଳ ବିୟୋଗ ପରେ ତାଙ୍କର ପରିବାରବର୍ଗ ଅତ୍ୟନ୍ତ ଅସହାୟ ଓ ନିଃସ୍ୱ ହୋଇପଡ଼ିଲେ ।

## ଜାତୀୟତା ପାଇଁ ସଂଗ୍ରାମ

ଓଡ଼ିଆର ଅମୂଲ୍ୟ ସମ୍ପଦ ବିଶ୍ୱ ଜନତାର ଦୃଷ୍ଟି ଆକର୍ଷଣ କରୁ ଏଇ ମହାନ୍ ଜାତୀୟ ଲକ୍ଷ୍ୟ ନେଇ ସେ

ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସହ ମିଳି ପ୍ରାଚୀ ସମିତିରେ ଯୋଗ ଦେଇ ତାହାର ସମ୍ପାଦକ ହେଲେ । ଏ ହେଉଛି କଳିଙ୍ଗ ଭାରତୀ ଓ ଉତ୍କଳ ଗ୍ରନ୍ଥ ସାହିତ୍ୟ ସମାଜ ଜନ୍ମର ବହୁ ପୂର୍ବର କଥା । ସେ ପ୍ରାଚୀ ସମିତି ତରଫରୁ ପ୍ରକାଶିତ ବହୁ ପୁସ୍ତକ ସମ୍ପାଦନା କରିବା ସଙ୍ଗେ ସଙ୍ଗେ "The Prachi" ନାମକ ତ୍ରୈମାସିକ ଇଂରାଜୀ ପତ୍ରିକାର ସମ୍ପାଦନା କରୁଥିଲେ । ଏହି ପ୍ରାଚୀ ପତ୍ରିକାରେ ଉତ୍କଳର ଐତିହାସିକ, ରାଜନୈତିକ ତଥା ସାଂସ୍କୃତିକ ଗୌରବ ପ୍ରଖ୍ୟାପନ ପାଇଁ ବଛନ୍ଦ-ଚରଣଙ୍କ ଲେଖନୀ ଉତ୍ପର ହୋଇ ଉଠିଥିଲା । ମୂଳରୁ ସେ ଉତ୍କଳର ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ପାଇଁ ମଧୁସୂଦନ ଓ ଗୋପବନ୍ଧୁଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ । ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ପାଇଁ ସେ ଯୁବକମାନଙ୍କୁ ନେଇ **ଉତ୍କଳ ଦେଶମିଶ୍ରଣ ସଂଘ** ଗଠନ କରି ଓଡ଼ିଶାରେ କମିଟି ଆଗରେ ମେଦିନୀପୁର ମିଶ୍ରଣ ପାଇଁ ସାକ୍ଷ୍ୟ ଦେବାନିମନ୍ତେ ଯୁବକ ବନ୍ଧୁମାନଙ୍କୁ ମେଦିନୀପୁର ପଠାଇଥିଲେ । ୧୯୩୧ରୁ ସମ୍ପାଦନା କରୁଥିବା "ପ୍ରାଚୀ" ଇଂରାଜୀ ପତ୍ରିକାରେ ଏହି ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ସପକ୍ଷରେ ସେ ସର୍ବଦା ମତପ୍ରକାଶ କରୁଥିଲେ । ଶ୍ରୀ ମୁରାରିମୋହନ ଜେନାଙ୍କ ସମ୍ପାଦିତ ପ୍ରଥମ ବଛନ୍ଦ ସ୍ମୃତି ଗ୍ରନ୍ଥ ବଛନ୍ଦ ସ୍ମରଣିକାରେ ପ୍ରକାଶିତ ବଛନ୍ଦ-ବାବୁଙ୍କ ଅନ୍ୟତମ ସମର୍ଥ ଶିଷ୍ୟ ଡାକ୍ତର କୃଷ୍ଣପ୍ରସାଦ ମିଶ୍ରଙ୍କ ପ୍ରବନ୍ଧ "ସେଦିନର ଛବି"ରୁ ନିମ୍ନ ଅଂଶ ଏ ପ୍ରସଙ୍ଗରେ ଉଦ୍ଧାର କରୁଛି—

"ଏହି ପ୍ରାଚୀ ପତ୍ରିକାରେ ପ୍ରକାଶିତ ମିଦନାପୁର ବିଷୟରେ ଲିଖିତ ତାଙ୍କର ଇଂରାଜୀ ପ୍ରବନ୍ଧ "History's verdict against Bengal's unholy claim" ସମଗ୍ର ବଙ୍ଗରେ ଚହଳ ପକେଇ ଦେଇଥିଲା । ସେହି ପ୍ରବନ୍ଧରେ ପ୍ରକଟିତ ଗୁରୁଦେବଙ୍କ ଜାତୀୟତାବୋଧ ବହୁ ଉତ୍କଳୀୟଙ୍କ ପ୍ରାଣରେ ଆଲୋଡ଼ନ ସୃଷ୍ଟି କରିଥିଲା । ସେଥିରେ ସେ ଲେଖିଥିଲେ— Personally we are ready to offer our heads to be smashed to provide cement that would weld forever the disunion of our land. It is our considered opinion that from the blood of the martyrs will spring the tree of greater Orissa." ଏହି ପ୍ରବନ୍ଧ ସେତେବେଳେ ସମସ୍ତ ଉତ୍କଳବାସୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ଏପରିକି ଦେଶପ୍ରାଣ କୁଳବୃଦ୍ଧ ମଧୁସୂଦନ ବଛନ୍ଦ-ବାବୁଙ୍କୁ ଏଥିପାଇଁ ଅଭିନନ୍ଦନ ଜଣେଇବା ପାଇଁ ବ୍ୟକ୍ତିଗତ ଭାବରେ ତାଙ୍କ ନିକଟକୁ ଆସିଥିଲେ । ଏ ବିଷୟରେ ପ୍ରାଚୀ ପତ୍ରିକାରୁ ନିମ୍ନଲିଖିତ ଅଂଶ ଉଦ୍ଧାର କରାଯାଇପାରେ—"Mr. M. S. Das, the father of New Orissa personally came down to us and in the overflow of his usual patriotic fervour congratulated us on our having been on what, in his opinion, also was the right track of nationalism."

ମଧୁବାବୁଙ୍କ ଭାଷାରେ ଜାତୀୟତା ପାଇଁ ସଂଗ୍ରାମର ପ୍ରକୃତ ପଥର ପଥିକ ଥିଲେ ଗୁରୁଦେବ ବଛନ୍ଦ-ଚରଣ । ତାଙ୍କଠୁ ଶୁଣିଛି ଯେ ମଧୁବାବୁ ତାଙ୍କୁ ବ୍ୟକ୍ତିଗତ ଭାବେ ସାଧୁବାଦ ଜଣେଇବା ପାଇଁ ପ୍ରାଚୀ ସମିତିକୁ ଆସି କହିଲେ, "ମିଷ୍ଟର ଦାସ କାର କାଛେ ଯାୟନା । ତୋମାର କାଛେ ଏସେଛେ ।" ବଛନ୍ଦଙ୍କ ସେବକ ପିଅନ ମାୟାଧରକୁ ମଧୁବାବୁ କହିଥିଲେ "ତୋ ବାବୁର ଗୋଡ଼ ଦୁଇଟା ସଳଖ ଥିଲେ ମୁଁ ତାକୁ ଲଣ୍ଡନ ନେଇଯାଇଥାନ୍ତି ।" ବଛନ୍ଦଙ୍କ ଇଂରାଜୀ ରଚନାଶୈଳୀ ପ୍ରସିଦ୍ଧ ଲେଖକ Macaulay (ମ୍ୟାକଲେ) ସାହେବଙ୍କ ଭଳି ଥିଲା ବୋଲି ତତ୍କାଳୀନ ଇଂରାଜୀ ଅଧ୍ୟାପକମାନଙ୍କ ମତ ଥିଲା ଓ ସେଥିପାଇଁ ସେ ନିଜର ସହପାଠୀ ପୁରୀ ଜିଲ୍ଲା ସାହେବଙ୍କ ନାତିଙ୍କ

ଇଂରାଜୀ ଶିକ୍ଷକ ନିଯୁକ୍ତ ପାଇବା କଥା ଆତ୍ମଜୀବନୀରେ ଉଲ୍ଲେଖ ରହିଛି । ଇଂରାଜୀ ତାଙ୍କର ଦ୍ୱିତୀୟ ମାତୃଭାଷା ଥିଲା । ସେ ନିଜର ବଳିଷ୍ଠ ଚିନ୍ତାଧାରା ଅବଲୀଳାକ୍ରମେ ସେଥିରେ ପ୍ରକାଶ କରି ପାରୁଥିଲେ । ଭଞ୍ଜ, ଦୀନକୃଷ୍ଣ, କବିସୂର୍ଯ୍ୟ, ଭକ୍ତଚରଣଙ୍କ ବହୁ କବିତା ସେ ସ୍ୱସମ୍ପାଦିତ ପ୍ରାଚୀ, ବୈତରଣୀ ଓ Orissa Review ପ୍ରଭୃତିରେ ପ୍ରକାଶ କରିଥିଲେ । ଓଡ଼ିଶୀ ସଙ୍ଗୀତ ଓ ଓଡ଼ିଶୀ ନୃତ୍ୟ ଓଡ଼ିଶା ବାହାରେ ପ୍ରକାଶିତ ହେଉ—ଏହି ବ୍ୟାକୁଳତା ଥିବାରୁ ସେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ରଚିତ ଓଡ଼ିଶୀ ନୃତ୍ୟ ଓ ଓଡ଼ିଶୀ ସଙ୍ଗୀତ ଦୁଇଟି ପୁସ୍ତିକା ଲେଖକଙ୍କ ଅନୁରୋଧ-କ୍ରମେ ଇଂରାଜୀରେ ଅନୁବାଦ କରି ଦେଇଥିଲେ ଓ ସେଥିରେ ଅନୁବାଦକ ରୂପେ ନିଜ ନାମ ଦେବା ନିମନ୍ତେ କୌଣସି ସର୍ତ୍ତ ରଖି ନ ଥିଲେ । ପରେ ଇଂରାଜୀ ପୁସ୍ତିକାରେ ଅନୁବାଦକ ରୂପେ ନାମ ନ ଦେଖି ପ୍ରଶ୍ନ କରନ୍ତେ ସେ ଉତ୍ତରରେ କହିଥିଲେ, "ଇଂରାଜୀ ଲେଖା ମୋର ହାତର ଖେଳ । ଅନୁବାଦକ ହୋଇ କି ଗୌରବ ମିଳିବ ? ଓଡ଼ିଶୀ ସଙ୍ଗୀତ ନୃତ୍ୟର ପ୍ରଚାର ହେଉ ।"

୧୯୩୬ ମସିହାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ସନ୍ଧାନରେ ସେ ପ୍ରାଚୀରେ ଲେଖିଥିଲେ, "The Oriya Nation expresses its profound gratitude to the British Government for their recognition at long last of the claim of the Oriyas to their separate political existence. We are vowed to reach the goal of the Greater Orissa, every inch whereof is as dear to us as our life breath. ଓଡ଼ିଶା ଭୂଖଣ୍ଡର ପ୍ରତି ଇଞ୍ଚ ତାଙ୍କ ନିଃଶ୍ୱାସ ପ୍ରଶ୍ୱାସ ଭଳି ପ୍ରିୟ ଥିଲା । ନିଜ ରଚିତ "My Dream" କବିତାରେ ସେ ଉତ୍କଳ ଜନନୀ ପ୍ରତି ତାଙ୍କର ପ୍ରଗାଢ଼ ମମତାର ଅପୂର୍ବ ନିଦର୍ଶନ ଦେଇଛନ୍ତି । ଏଇ ପ୍ରଗାଢ଼ ଜାତି ପ୍ରୀତି ବଶବର୍ତ୍ତୀ ହୋଇ ପରିବାରର କୌଣସି ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟି ନ ଦେଇ ଦିନରାତି ପ୍ରାଚୀନ ସାହିତ୍ୟର ପରିପ୍ରଚାର ଓ ପ୍ରସାର ନିମନ୍ତେ ସେ ଯତ୍ନବାନ ଥିଲେ । ଭଞ୍ଜଙ୍କ ସମ୍ବନ୍ଧୀୟ ସମାଲୋଚନା ଗ୍ରନ୍ଥର ପ୍ରଣୟନ ଓ ପ୍ରକାଶନକାଳୀନ ପ୍ରୁଫ ସଂଶୋଧନ ତଥା କଳିଙ୍ଗ ଭାରତୀ ସୋଭେନିର, ଗୌରଚନ୍ଦ୍ର ଗୀତାବଳୀ, ଭଞ୍ଜ ସୋଭେନିର ପ୍ରଭୃତି ଗ୍ରନ୍ଥାବଳୀର ସମ୍ପାଦନା ତଥା ପ୍ରୁଫ ସଂଶୋଧନରେ ଦିନରାତି ବସି କାର୍ଯ୍ୟ କଲାବେଳେ ତାଙ୍କ ପାଦ ଦୁଇଟି ଫୁଲିଯାଏ । ସେଥିପାଇଁ ବିଚ୍ଛନ୍ଦଙ୍କ ଭ୍ରୂକ୍ଷେପ ନ ଥାଏ । ତାଙ୍କର ଏପରି ବ୍ୟବସ୍ଥାକୁ ସେ ନାମ ଦେଇଥାନ୍ତି "ବିଦେହ ଅସ୍ତିତ୍ୱ" । ଦୈହିକ ଅସ୍ତିତ୍ୱର ଊର୍ଦ୍ଧ୍ୱରେ ଏକ ଦେହାତୀତକୁ ଅନୁଭୂତ ସମ୍ବଳିତ ବିଚରାବସ୍ଥାର ସ୍ଥିତିରେ ନିମଜ୍ଜି ରହୁଥିଲେ ବିଚ୍ଛନ୍ଦଚରଣ ଓ ଏହି ବିଦେହ ଅସ୍ତିତ୍ୱ ମଧ୍ୟରେ ନିମଜ୍ଜାଇ ରଖୁଥିଲେ ମୋ ଭଳି ବହୁ ଶିଷ୍ୟ ଓ ସଖାମାନଙ୍କୁ ।

କଳିଙ୍ଗ ଭାରତୀ ଗୋଷ୍ଠୀ ଶିଷ୍ୟମାନଙ୍କର ସେ ଥିଲେ ସଖା, ଉପଦେଷ୍ଟା ଓ ଦ୍ରଷ୍ଟା । ମମତାର ବନ୍ଧନରେ ସମସ୍ତ ଶିଷ୍ୟମଣ୍ଡଳୀକୁ ସେ ବାନ୍ଧି ରଖିଥିଲେ । ଶିଷ୍ୟ-ମାନେ ପରୀକ୍ଷାରେ କୃତିତ୍ୱ ଅର୍ଜନ କଲେ ବିଚ୍ଛନ୍ଦଚରଣ ନିଜର କୃତିତ୍ୱ ମଣୁଥିଲେ ଓ ମିଷ୍ଟାନ୍ନ ବଣ୍ଟନ କରୁ-ଥିଲେ । ଶିଷ୍ୟମାନଙ୍କ ବିବାହ ଉତ୍ସବରେ ସେ ନିଜକୁ ବରକର୍ତ୍ତା ଛଡ଼ା ଅନ୍ୟ କେଉଁ ଦୃଷ୍ଟିରେ ଦେଖୁ ନ ଥିଲେ । ଶିଷ୍ୟମାନଙ୍କ ବିବାହ ଆଡ଼ମ୍ବର ମଧ୍ୟରେ ବିଚ୍ଛନ୍ଦଚରଣ ସତେ ଯେପରି ବିଜୟ ଉତ୍ସବ ପାଳନ କରୁଥିଲେ । ବିଚ୍ଛନ୍ଦ ସ୍ମରଣିକାରେ ବନ୍ଧୁ ହୃଦାନନ୍ଦ ରାୟ ତାଙ୍କ "ଆଉ କେଉଁ କହିବ ନାହିଁ" ଶୀର୍ଷକ ପ୍ରବନ୍ଧରେ ତାଙ୍କର କେତେକ ବ୍ୟକ୍ତିଗତ ଘଟଣର ଯେଉଁ ଅଂଶ ପ୍ରକାଶ କରିଛନ୍ତି ତାହାର ଉଦ୍ଧାର ଏଠାରେ ପ୍ରାସଙ୍ଗିକ । ଜୟପୁରରେ ଥିବା ସମୟରେ

ହୃଦାନନ୍ଦବାବୁଙ୍କୁ ସେ ଲେଖିଥିଲେ, "ମୁଁ ଏଠାରେ ରହି ଭାବୁଛି ତୁମେମାନେ ଅନୁପସ୍ଥିତ ନୁହଁ; ଜୟପୁର ଯାଏ ମୋ ଆତ୍ମା ତୁମମାନଙ୍କ ମାଧ୍ୟମରେ ସଂପ୍ରସାରିତ ହୋଇଯାଇଛି ମାତ୍ର । ତୁମମାନଙ୍କ ବିଳାସରେ ମୁଁ ବିଳାସୀ, ତୁମମାନଙ୍କ ଆୟୁରେ ମୁଁ ଆୟୁଷ୍ମାନ୍ । ମୋର ମର ଶରୀର କେବେ ଖସିପଡ଼ିପାରେ—କିନ୍ତୁ ମୋର ଯେଉଁ ନିଃଶ୍ୱାସ କଳିଙ୍ଗଭାରତୀ ରଙ୍ଗରେ ରଞ୍ଜିତ ତାହା ତୁମମାନଙ୍କ ନାସାପଥରେ ପରମ୍ପରାକ୍ରମେ ପ୍ରବାହିତ ରହିବ । ଜୟ ମା କଳିଙ୍ଗ ଭାରତୀ ।" ବ୍ୟକ୍ତିତ୍ୱର ସଂପ୍ରସାରଣର କି ଅଭୂତପୂର୍ବ ନିଦର୍ଶନ ! ଏକକ ସତ୍ତାରୁ ଗୋଷ୍ଠୀ ସତ୍ତାକୁ ଉନ୍ନୀତ ହେବାର କି ଅପୂର୍ବ ସାଧନା ! ଏ ଅପରୂପ ଭାଷା, ଏ ଅପରିସୀମ ଚିନ୍ତା, ଏ ଅତଳସ୍ପର୍ଶୀ ଅନୁରାଗ ବିଚ୍ଛନ୍ଦଚରଣଙ୍କ ସାହିତ୍ୟ ପାଇଁ ସଂଗ୍ରାମ ଜୀବନକୁ ରାଗରଞ୍ଜିତ କରିବା ସହ ସେହି ସଂଗ୍ରାମରେ ଝାସ ଦେଇଥିବା ସୈନିକକୁଳର ଜୀବନକୁ ମହିମାନ୍ୱିତ କରିଥିଲା । ମମତା, ନିଷ୍ଠା ଓ ଆଦର୍ଶପ୍ରାଣତାର ସମନ୍ୱୟରେ ସେ ଅନୁଷ୍ଠାନକୁ ବ୍ୟକ୍ତି-ସ୍ତରକୁ ଆଣିଥିଲେ ଓ ବ୍ୟକ୍ତିକୁ ଅନୁଷ୍ଠାନ ସ୍ତରକୁ ତୋଳି ନେଇଥିଲେ । ହୃଦାନନ୍ଦବାବୁଙ୍କୁ ଲେଖିଥିବା ପତ୍ରରେ ତାଙ୍କ ଉକ୍ତି "କଳିଙ୍ଗଭାରତୀ ଆମ୍ଭମାନଙ୍କର ଦ୍ୱିତୀୟ ପରିବାର, ଦ୍ୱିତୀୟ ଗୃହ—ଏ ଚିନ୍ତା ଏଣିକି ଭୂୟସୀ ହେଉ"; ପୁଣି "ଦ୍ୱିତୀୟ ପରିବାର, ଦ୍ୱିତୀୟ ଘରକଥା ଭାବ; ଖୁବ୍ ନିବିଡ଼, ଖୁବ୍ ଘନ ଭାବରେ ଭାବ । ଭଗବାନଙ୍କ ଦୁଆରେ କରାଘାତ ନ କରିବା ପର୍ଯ୍ୟନ୍ତ ତାହା ଫିଟିବ ନାହିଁ ।" ଅନୁଷ୍ଠାନକୁ ଜୀବନ୍ୟାସ ଦେବାପାଇଁ ଅପୂର୍ବ ସଂଗଠନ ଶକ୍ତି, ଆଦର୍ଶ ପ୍ରତିଷ୍ଠା କରିବା ପାଇଁ ବିପୁଳ ମନୋବଳ, ଆଦର୍ଶ ପ୍ରତିଷ୍ଠାର୍ଥେ ସହକର୍ମୀ ତଥା ଅନୁଗାମୀଙ୍କ ପ୍ରତି ପ୍ରଗାଢ଼ ମମତା ବିଚ୍ଛନ୍ଦ ପତ୍ରାବଳୀରେ ପରିସ୍ଫୁଟ । ମୁଁ ମଧ୍ୟ ଜୟପୁରରେ ଥିଲାବେଳେ ମତେ ଅନୁରୂପ ପତ୍ରମାନ ଦେଇ ମୋର ତନ୍ଦ୍ରାଭଙ୍ଗ କରୁଥିଲେ । ମୁଁ ତାଙ୍କ ସମସ୍ତ ପତ୍ର ସାଇତି ନ ପାରିବା ଅପକର୍ମ ପାଇଁ ଲଜ୍ଜିତ । ତାଙ୍କର ଘନ ଘନ ପତ୍ରର ସାମୟିକ ଉତ୍ତର ମଧ୍ୟ ଦେବାରେ ମୋର ବିଳମ୍ବ ପାଇଁ ସେ ମତେ ସବୁବେଳେ ଭାଷାକୋଷପ୍ରଣେତା ଗୋପାଳ ପ୍ରହରାଜଙ୍କ ଉଦାହରଣ ଦେଉଥିଲେ । ଓଡ଼ିଆ ଭାଷାକୋଷ ସମ୍ପାଦନାରେ ସେ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ସହାୟକ ଥିଲେ । ବିଚ୍ଛନ୍ଦଚରଣ ପ୍ରତ୍ୟେକ ଲୋକର ଆଚରଣରୁ ଶିକ୍ଷଣୀୟ ଗ. ସା. ଗୁ. ନେବାକୁ ଚାହୁଁଥିଲେ ଓ ସେହି ଗ. ସା. ଗୁ. ଗ୍ରହଣ କରିବା ନିମନ୍ତେ ଆମମାନଙ୍କୁ ଉପଦେଶ ଦେଉଥିଲେ ! ଗୋପାଳଚନ୍ଦ୍ର ପ୍ରହରାଜଙ୍କ କଥା କହିବାକୁ ଯାଇ ସେ କହନ୍ତି, ଗୋପାଳବାବୁ ପ୍ରତ୍ୟହ ୧୦ଟି ଚିଠି ଓଡ଼ିଶାର ବିଭିନ୍ନ ଲୋକଙ୍କୁ ଲେଖିବା ଦ୍ୱାରା ଲୋକସମ୍ପର୍କ ରକ୍ଷା କରି ପାରିଥିଲେ । ଗୁରୁଦେବଙ୍କ ସେ ଉପଦେଶ ଏ ପର୍ଯ୍ୟନ୍ତ ବି ପାଳି ପାରିଲି ନାହିଁ । ମୃତ୍ୟୁର ଅବ୍ୟବହିତ ପୂର୍ବରୁ ସେ ମତେ ଯେଉଁ ପତ୍ର ଦେଇଥିଲେ ତାହା ଏଠାରେ ଉଦ୍ଧାର କରୁଛି । ସେଥିରୁ ତାଙ୍କର ଜାତିପ୍ରୀତି ତଥା ଜାତୀୟ ସଂସ୍କୃତି ପ୍ରସାର ନିମନ୍ତେ ଅନୁଷ୍ଠାନର ପ୍ରତିଷ୍ଠା ପାଇଁ ବ୍ୟାକୁଳତା ପରିସ୍ଫୁଟ ।

୯ । ୨ । ୧୯୭୦ ରେ ଅର୍ଥାତ୍ ମୃତ୍ୟୁର ଏକବର୍ଷ ପୂର୍ବରୁ ( ମୃତ୍ୟୁ ୧୪ । ୧ । ୭୧) କଳିଙ୍ଗ-ଭାରତୀ ସୋଭେନିର୍ ଗ୍ରନ୍ଥ ସହ ଏକ ପତ୍ର ପ୍ରେରଣ କରି ଲେଖିଥିଲେ, "ତୁ ବହୁଦିନ ନୀରବ ରହିବାରେ ମନ ଉପରେ ଦୁଶ୍ଚିନ୍ତାର ଗୋଟିଏ ବୋଝ ଚଢ଼ି ଯାଇଥିଲା । ଚିଠି ପାଇବା ପରେ ତାହା ଉତୁରିଗଲା । ଏଥିସହିତ ବହୁ ପ୍ରତ୍ୟାଶିତ ଓ ବହୁ ସାଧ୍ୟ ସାଧନାରେ ପ୍ରକାଶିତ ସ୍ମାରକ ଗ୍ରନ୍ଥ ପାଇବୁ । ବହୁ ଲୋକେ କହୁଛନ୍ତି ଏ ଧରଣର ଗ୍ରନ୍ଥ ଅନ୍ୟ କେହି ଅନୁଷ୍ଠାନ ଏ ଯାଏଁ ଓଡ଼ିଶାରେ ପ୍ରକାଶ କରିନାହାନ୍ତି । ୧୨୫୦ ଖଣ୍ଡ ଛପା ହୋଇଅଛି । ୨୫୦ ଖଣ୍ଡ ବିଣାବିଣିରେ ଯାଉ । ଆଉ ୧୦୦୦ ଖଣ୍ଡ ସମସ୍ତେ ନିଜ ନିଜର ବ୍ୟକ୍ତିଗତ ପ୍ରସାର ଘଟାଇ ବିକ୍ରୟ କର । ନାଗି ବିଶ୍ୱବିଦ୍ୟାଳୟର

ପ୍ରତିଷ୍ଠାତା ପ୍ରଫେସର କାର୍ଭେଙ୍କ ପରି ଆମ୍ଭମାନଙ୍କୁ ହେବାକୁ ହେବ । ସେ ଭାରତରୁ ଆରମ୍ଭ କରି ବଳାତ ଯାଏ ଦ୍ୱାର ଦ୍ୱାର ବୁଲି ଭିକ୍ଷା କରିଅଛନ୍ତି । ବର୍ତ୍ତମାନ ତାଙ୍କୁ ୧୦୩ ବର୍ଷ । ବ୍ରତନିଷ୍ଠ ହେବାକୁ ହେବ । କଳଙ୍ଗଭାରତୀ ଓଡ଼ିଶାରେ ନୂତନ ଇତିହାସ ସୃଷ୍ଟି କରି ପ୍ରତିଭାର ମଧୁଚକ୍ର ରୂପେ ବିରାଜମାନ ରହୁ ।"

ପ୍ରତିଭାର ମଧୁଚକ୍ର ରୂପେ ରୂପାୟିତ ହେଉ କଳଙ୍ଗ ଭାରତୀ, ବ୍ରତନିଷ୍ଠ ହୁଅନ୍ତୁ ଏହାର ସଭ୍ୟସମୂହ । ଓଡ଼ିଶାରେ ନୂତନ ଇତିହାସ ସୃଷ୍ଟି କରୁ ଏ ଅନୁଷ୍ଠାନ । ଏ ଥିଲା ସାହିତ୍ୟିକ, ସଂଗଠକ, ଜାତିପ୍ରେମୀ, ଆଦର୍ଶବାଦୀ ବିଚ୍ଛନ୍ଦଚରଣଙ୍କ ଦୁର୍ବାର ଅଭିଳାଷ । ସାରା ଜୀବନ ସେ ପ୍ରତିଭାର ସନ୍ଧାନୀ ଓ ପୂଜାରୀ । ଭଞ୍ଜ ପ୍ରତିଭାର ପୂଜା ସଙ୍ଗେ ନିଜର ସହଯୋଗୀ ଯୁବକମାନଙ୍କ ପ୍ରତିଭାର ସେ ଥିଲେ ସମଜଦାର ଗ୍ରାହକ ଓ ପ୍ରକୃତ ପ୍ରୋତ୍ସାହନକାରୀ ।

ବିଚ୍ଛନ୍ଦ ସ୍ମରଣିକା ଗ୍ରନ୍ଥରେ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା ବର୍ଣ୍ଣନା କରିଛନ୍ତି କିପରି ବିଚ୍ଛନ୍ଦଚରଣ ସାହିତ୍ୟ ସମାଜ ସମ୍ପାଦକ ଭାବରେ ସାପ୍ତାହିକବ୍ୟାପୀ ସାହିତ୍ୟ ସପ୍ତାହ ପାଳନ କରି ନବୀନ ସାହିତ୍ୟିକମାନଙ୍କୁ ଉତ୍ସାହିତ କରିଥିଲେ । ସେ କହନ୍ତି ତାଙ୍କ ଭାଷଣ ଶୁଣି "ବିଚ୍ଛନ୍ଦ-ଚରଣ ତାଙ୍କୁ ଅସୀମ ପ୍ରେରଣାରେ ପୁଲକିତ କରି ଦେଇଥିଲେ ଓ ସେହି ସୂତ୍ରରେ ସାହିତ୍ୟ ସମାଜ ସାନ୍ନିଧ୍ୟ ଲାଭ କରିବା ତାଙ୍କ ପକ୍ଷେ ସହଜ ହୋଇଥିଲା ।" କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ଜୟଦେବ ନାଟକ ପରିବେଷଣ ପରେ ତାଙ୍କୁ ବହୁ ଭାବରେ ପ୍ରଶଂସା କରି ସେ ନିଜ ଫାଉଣ୍ଟେନ ପେନ ଉପହାର ଦେଇଥିଲେ । ପ୍ରତିଭାର ପୂଜାରୀ ଓ ପୃଷ୍ଟପୋଷକ ବିଚ୍ଛନ୍ଦଚରଣ ନିଜେ ଅସାଧାରଣ ପ୍ରତିଭାଶାଳୀ ଥିଲେ ଓ ସ୍ୱକୀୟ ପ୍ରତିଭାକୁ ବ୍ୟକ୍ତିଗତ ସମୃଦ୍ଧି ପାଇଁ ବ୍ୟବହାର ନ କରି ଜାତିର ହିତ ଉଦ୍ଦେଶ୍ୟରେ ନିୟୋଜିତ କରିଥିଲେ ।

୧୯୭୧ ମସିହାରେ ସେ ଶଯ୍ୟାଶାୟୀ ହେଲେ । ତାଙ୍କ ନିଜର ଓ ଆମ ସମସ୍ତଙ୍କର ବିଶ୍ୱାସ ଥିଲା ସେ ଆରୋଗ୍ୟ ଲାଭ କରି ଫେରିବେ । ରୋଗଶଯ୍ୟା ନିକଟରେ ପହଞ୍ଚିବାବେଳେ ବହୁ ସମୟ ଧରି ହାତରେ ହାତ ରଖିବାରେ କି ଶାନ୍ତି ତାଙ୍କର ! ହାତରେ ହାତ ମିଶାଇ ସତେ ଯେପରି ବହୁତ କଥା କହିଯାଉଥିଲେ ବିନା ବଚନରେ—କେବଳ ଭାବରେ । ହୃଦୟର ଅପୂର୍ବ ବିନିମୟ ! ଶଯ୍ୟା ପାର୍ଶ୍ୱରେ ଥିବା ଅନ୍ୟାନ୍ୟ ରୋଗୀମାନଙ୍କର ବିସ୍ମୟଅଭିଭୂତ ଦୃଷ୍ଟି ନିବଦ୍ଧ ଥିଲା ବିଚ୍ଛନ୍ଦଙ୍କ ଏଇ ଅନୁଗତ ଶିଷ୍ୟମାନଙ୍କ ଆଡ଼େ । ମନରେ ଭାସିଯାଏ ୧୯୫୬ ମସିହାର ଛବି । ଭଞ୍ଜ ଜୟନ୍ତୀ ସପ୍ତାହର ଶେଷ ଦିବସରେ ଗୁରୁତର ଅସୁସ୍ଥ ହୋଇ ଡାକ୍ତରଖାନାରେ ଭର୍ତ୍ତି ହେଲେ । ବହୁମୂତ୍ର ରୋଗ ଭଲ ହେବାକୁ ବହୁ ସମୟ ଲାଗିବାରୁ ସେ ଡାକ୍ତରଖାନାରେ ପଡ଼ିରହିଲେ । ସେଇ ସମୟରୁ ବିଚ୍ଛନ୍ଦଚରଣଙ୍କ ଜୀବନ-ଧାରା ଭିନ୍ନଗାମୀ ହେଲା । ସେଲି, ବାଇରନ, କାଳିଦାସ, ଭଞ୍ଜ, ଓମାରଖାଏମଙ୍କ ପ୍ରେମ କବିତାରେ ମଶଗୁଲ ପ୍ରେମିକ ରସିକ ବିଚ୍ଛନ୍ଦଚରଣ ଶଯ୍ୟାରେ ଥାଇ ତିଲକଙ୍କ ଗୀତାଠାରୁ ଆରମ୍ଭ କରି ଗୀତାର ବିଭିନ୍ନ ସଂସ୍କରଣ ପାଠ କଲେ । ରାମାୟଣ, ଉପନିଷଦ ପ୍ରଭୃତି ଆର୍ଯ୍ୟ ସଂସ୍କୃତିର ବହୁ ମୂଲ୍ୟବାନ ଗ୍ରନ୍ଥ ପାଠ କରିବା ସଙ୍ଗେ ଶୃଙ୍ଗାର ରସର ପ୍ରାଦୁର୍ଭାବ ହ୍ରାସ ପାଇ ତାର ସ୍ଥାନ ଗ୍ରହଣ କଲା ଭକ୍ତିରସ । ଭଞ୍ଜ ସାହିତ୍ୟରେ ଆର୍ଯ୍ୟ ସଂସ୍କୃତିର ବାର୍ତ୍ତାର ସନ୍ଧାନ ପାଇଲେ ବିଚ୍ଛନ୍ଦଚରଣ । କେବଳ ପ୍ରାଚୀନ ସାହିତ୍ୟ ନୁହେଁ, ଆର୍ଯ୍ୟ ସଂସ୍କୃତି ଓ ଭାରତର ଆଧ୍ୟାତ୍ମିକତା ଦର୍ଶନ ବିଷୟରେ ଆଲୋଚନା କରି ଆମର ମନକୁ ଭାରତୀୟ ସଂସ୍କୃତି ଓ ଆଧ୍ୟାତ୍ମବାଦ ଆଡ଼କୁ ଆକୃଷ୍ଟ କରିବାରେ ସମର୍ଥ ହୋଇଥିଲେ । ଆଜି ସଦ୍‌ଗୁରୁ ଭାବରେ ଠାକୁର ଅନୁକୂଳ ଚନ୍ଦ୍ରଙ୍କୁ ଗ୍ରହଣ କରି ତାଙ୍କ ଆର୍ଯ୍ୟକୃଷ୍ଟି ସମ୍ବନ୍ଧୀୟ ଭାବଧାରା ପର୍ଯ୍ୟା-ଲୋଚନାବେଳେ ଦେଖୁଛି ମୋର ସାହିତ୍ୟ ଜୀବନର

ଗୁରୁ ସ୍ୱର୍ଗତ ବିଚ୍ଛନ୍ଦଚରଣ ବହୁ ଆଗରୁ ମୋ ମନରେ ସେ ବିଷୟରେ ରେଖାପାତ କରିଥିଲେ । ବର୍ଣ୍ଣାଶ୍ରମ, ଅବତାର ତତ୍ତ୍ୱ ପ୍ରଭୃତି ସେତେବେଳେ ସେ ଯାହା କହୁଥିଲେ ମୁଁ ତାର ବିରୋଧ କରୁଥିଲି, କିନ୍ତୁ ଆଜି ସଦ୍‌ଗୁରୁ ଗ୍ରହଣ ପରେ ମୁଁ ତାହା ସ୍ୱୀକାର କରୁଛି । ସେ ଗୁରୁଙ୍କୁ ଗ୍ରହଣ କରିଥିଲି ବୋଲି ମୁଁ ଆଜି ସଦ୍‌ଗୁରୁଙ୍କ ପାଖରେ ପହଞ୍ଚି ପାରିଛି । ଏ ବିଷୟରେ ତଥା ବିଚ୍ଛନ୍ଦଙ୍କ ଆଧାତ୍ମ୍ୟବାଦର ବିଶଦ ଆଲୋଚନା ସମ୍ଭବ ହୋଇ ପାରୁ ନ ଥିବାରୁ ଅନ୍ୟତ୍ର ତାର ଆଲୋଚନା କରିବା ବାସନା ରହିଲା । ପ୍ରତିଭାର ମଧୁଚକ୍ର କଳିଙ୍ଗ ଭାରତୀରୁ ଉଭୁରିଥିବା ତାଙ୍କ ଛାତ୍ରମାନେ ବିଶିଷ୍ଟ ଅଧ୍ୟାପକ, ଇଞ୍ଜିନିଅର, ଡାକ୍ତର, ଅଫିସର ଓ ରାଜନୀତିଜ୍ଞ ହୋଇ ପାରିଛନ୍ତି । ସମସ୍ତେ ବିଚ୍ଛନ୍ଦଙ୍କ ପ୍ରେରଣାରେ ବଳୀୟାନ ହୋଇଛନ୍ତି ବୋଲି ମୁକ୍ତ କଣ୍ଠରେ ସ୍ୱୀକାର କରନ୍ତି । ବ୍ୟକ୍ତିଗତଭାବେ ମୁଁ ଅନୁଭବ କରିଛି ଯେ ସେ ତାଙ୍କ ଏକମାତ୍ର ପୁତ୍ର ପୁରୁଷୋତ୍ତମ (କିଶୋରୀ) ଓ ମୋ ମଧ୍ୟରେ ତଫାତ୍ ଦେଖିନାହାନ୍ତି । ଜନ୍ମିତ ପୁତ୍ର ଓ ସଂସ୍କୃତି ସନ୍ତାନ ମଧ୍ୟରେ ଅଭେଦତ୍ୱ ଦେଖି ସେ ଭାରତୀୟ ଗୁରୁକୁଳ ପରମ୍ପରାକୁ ଆଧୁନିକ ଯୁଗର ସାହିତ୍ୟ କ୍ଷେତ୍ରରେ ପ୍ରତିଷ୍ଠା କରି ଦେଇଗଲେ । କବିତା କୁମୁଦର ବିଭିନ୍ନ କବିତାର ଭିତିରେ ସେ କହନ୍ତି "ନଇଁ ପଡ଼ ନା ରେ ମୋ ଠେକ ମଣ୍ଡଳି" । ତାଙ୍କର ମୌଳି ଅର୍ଥାତ୍ ମସ୍ତକ କେବେହେଲେ ଅନ୍ୟାୟ ଆଗରେ ନତ ହୋଇନାହିଁ । "ବିଚ୍ଛନ୍ଦ ମଣ୍ଡଳି ନତ କାହାଠାରେ" ନ ହେଉ ବୋଲି ଦୁର୍ବାର ଆତ୍ମ-ବିଶ୍ୱାସ ତାଙ୍କୁ ଚିର ଅମ୍ଳାନ କରି ରଖିଛି । ପରିସ୍ଥିତି ଓ ପରିପନ୍ଥୀ ଆଗରେ ମଥା ନତ ନ କରି ସେ ଓଡ଼ିଶାର ସଂସ୍କୃତି ଓ ଭାରତର ଆଧ୍ୟାତ୍ମିକତା ଧ୍ୱଜା ଉତ୍ତୋଳନ ପାଇଁ ଆଜୀବନ ସଂଗ୍ରାମ କରି ମରଣଜୟୀ ହୋଇ ପାରିଛନ୍ତି ।

ଜୟ ମା କଳିଙ୍ଗ ଭାରତୀ ।

୨୭-୪-୭୭



ବିଟାଳିରେ ପଥରେ ଲେଖନୀରେ ଅକ୍ଷରେ
ବିରାଟ କଳାର ମନ୍ଦିର
ଗଢ଼ିଲ ଏହୁ ଜାତି ତେଣୁ ଆଜି ଅଖ୍ୟାତି
ହୋଇଛି ଶେଳ ହୃଦେ ତାର ହେ
ବାଗୀଶ୍ୱର !

ସମୃଦ୍ଧ ତା କଳା ବିପଣୀ
ହୋଇ ପ୍ରସନ୍ନ କର ପୁଣି
ବୀଣା, ତୂଳୀ, ବିଟାଳି, ଲେଖନୀ ଶକ୍ତିଶାଳୀ
କରେ ମୋଦରେ ଧରୁ ଧନୀ ହେ
ବାଗୀଶ୍ୱର !

# ଦୈନିକ 'ଆଶା' ସହିତ ବିଚ୍ଛନ୍ଦବାବୁଙ୍କ ସମ୍ପର୍କ

ଶ୍ରୀ ଚନ୍ଦ୍ରଶେଖର ମହାପାତ୍ର

( ପ୍ରବନ୍ଧଟି କଳଙ୍ଗଭାରତୀ ସଭାପତି ରଜତକୁମାର କର ୧୯୭୦ରେ ଗଞ୍ଜାମ ଫୁଲବାଣୀ ସ୍କୁଲ ପରିଦର୍ଶକ ଥିବା ସମୟରେ ରଚିତ । ଶ୍ରୀ କରଙ୍କ ଅନୁରୋଧକ୍ରମେ ବିଚ୍ଛନ୍ଦବାବୁଙ୍କ ସହ ଆଶା ପତ୍ରିକାର ସମ୍ପର୍କ କଥା ଶ୍ରୀ ମହାପାତ୍ର ଏକ ପ୍ରବନ୍ଧାକାରରେ ଲେଖି ରଖିଥିଲେ ଯାହା କି ଏହି ବିଚ୍ଛନ୍ଦ ସ୍ମରଣିକା ଗ୍ରନ୍ଥ ନିମନ୍ତେ ସାଇତା ହୋଇ ରହିଥିଲା ।—ସମ୍ପାଦକ)

୧୯୧୩ ଏପ୍ରିଲ ୧୩ ତାରିଖ ଓଡ଼ିଆ ନବମୀ, ମହାବିଷୁବ ସଂକ୍ରାନ୍ତିରେ ଜନ୍ମଲାଭ କରି 'ଆଶା' ନିଜର ପ୍ରତିଭା ବଳରେ ସମଗ୍ର ଉତ୍କଳରେ କି ପ୍ରଭାବ ବିସ୍ତାର କରିଥିଲା, ତାହା ଓଡ଼ିଶା ଇତିହାସରେ ଅମର । ୧୯୨୮ ଏପ୍ରିଲ ୧୩ ତାରିଖରେ ଆଶା ଦୈନିକ ଖବରକାଗଜ-ରୂପେ ଆତ୍ମପ୍ରକାଶ କଲା ଓ ଉତ୍କଳର ପ୍ରଧାନ ଓ ପ୍ରଥମ ଦୈନିକ ହିସାବରେ ସମଗ୍ର ଉତ୍କଳବାସୀଙ୍କର ହୃଦୟ ଅଧିକାର କରିଥିଲା । ଏଥିଭିତରେ ଦୀର୍ଘ ୪୪ ବର୍ଷ ଗତ ହୋଇଥିଲେ ମଧ୍ୟ ଯେ କୌଣସି ଦୈନିକ ଖବରକାଗଜକୁ ଲୋକେ 'ଆଶା' ନାମରେ ନାମିତ କରନ୍ତି ।

ଦୈନିକ ଆଶାର ଅଭ୍ୟୁଦୟ ସମୟରେ ଉତ୍କଳ ସାହିତ୍ୟାକାଶରେ ବିଚ୍ଛନ୍ଦ ସୂର୍ଯ୍ୟଙ୍କ ସମୋନ୍ନତ କିରଣ ସମସ୍ତଙ୍କ ହୃଦୟରେ ଆଲୋକ ପ୍ରଦାନ କରୁଥିଲା । କି ସାହିତ୍ୟିକ, କାବ୍ୟରସିକ, ଭକ୍ତିସାହିତ୍ୟପ୍ରେମୀ— ସମସ୍ତଙ୍କର ଦୃଷ୍ଟି ଆକୃଷ୍ଟ ହୋଇଥିଲା ବିଚ୍ଛନ୍ଦବାବୁଙ୍କ ସୁଧାସ୍ରାବୀ ଲେଖନୀପ୍ରତି ।

'ଆଶା'ର ସମ୍ପାଦକ ଗୋଷ୍ଠୀରେ ସେତେବେଳକୁ ସ୍ଥାନ ପାଇଥିଲେ ଶ୍ରୀ ରାମପ୍ରସାଦ ସିଂହ, ଶ୍ରୀ ଶରତ୍ ଚନ୍ଦ୍ର ମହାପାତ୍ର ଓ ଶ୍ରୀ ଗୋଦାବରୀଶ ମହାପାତ୍ର । ୧୯୩୪ରେ ଗୋଦାବରୀଶବାବୁ ସାମାନ୍ୟ ମନୋମାଳିନ୍ୟ ଫଳରେ ସହସମ୍ପାଦକ ଦାୟିତ୍ୱ ପରିତ୍ୟାଗ କରି ଶାରଦା ପ୍ରେସରୁ ନିଆଁଖୁଣ୍ଟା ପ୍ରକାଶନର ବ୍ୟବସ୍ଥା କଲେ । ଏଣୁ ଆଶା ସମ୍ପାଦକୀୟ ସ୍ତମ୍ଭ ପୂରଣ କରିବା ଦାୟିତ୍ୱ ପଡ଼ିଲା ଶଶିବାବୁଙ୍କ ଉପରେ ।

ଶଶିବାବୁ ଏ ଦାୟିତ୍ୱରେ ରହିବା ଫଳରେ, ପ୍ରେସ ପରିଚାଳନା ନିମନ୍ତେ ଅର୍ଥ ବିଭ୍ରାଟ ବିକଟରୂପ ଧାରଣ କରେ । ଏଣୁ ରଥବାବୁଙ୍କ ଦୃଷ୍ଟି ପଡ଼ିଲା ବିଚ୍ଛନ୍ଦବାବୁଙ୍କ ଉପରେ । ତା ପୂର୍ବରୁ ବିଚ୍ଛନ୍ଦବାବୁ ଆଶା ନିମନ୍ତେ ସାମୟିକ ଲେଖା ପଠାଉଥିଲେ । ତାଙ୍କର ଭାଷା, ଭାବ, ବିଳିଷ୍ଟ ସମାଲୋଚନା ଶଶି-ବାବୁଙ୍କ ହୃଦୟ ଆକର୍ଷଣ କରିଥିଲା । ଫଳରେ ବିଚ୍ଛନ୍ଦ-ବାବୁଙ୍କୁ ସହ-ସମ୍ପାଦକରୂପେ ପାଇବା ପାଇଁ ସେ ଦୃଢ଼ପ୍ରତିଜ୍ଞ ହେଲେ ।

ଶଶିବାବୁଙ୍କ ଅନୁରୋଧ ଉପେକ୍ଷିତ ହେଲା ନାହିଁ । ବିଚ୍ଛନ୍ଦବାବୁ ଆସିଲେ ବ୍ରହ୍ମପୁର—ମାତ୍ର ମାସେ ଦୁଇ ମାସ ପାଇଁ । ଏଠାର ବାତାବରଣ ତାଙ୍କ ପ୍ରତି ଉପଯୋଗୀ ନ ହେବା କାରଣରୁ ହେଉ ବା ତାଙ୍କ ଚଳାଚଳରେ ଅସୁବିଧା ଦୃଷ୍ଟିରୁ ହେଉ, ସେ ଶଶିବାବୁଙ୍କଠାରୁ ବିଦାୟ ନେଲେ । ଚୁକ୍ତି ରହିଲା ଦୈନିକ ଆଶା ପାଇଁ ସେ ପ୍ରତ୍ୟହ ସମ୍ପାଦକୀୟ ପଠାଇବେ । ୧୯୪୦ରେ ଆଶା ପ୍ରେସ ସ୍ଥାନାନ୍ତରିତ ହେଲେ ମଧ୍ୟ ଏ ବ୍ୟବସ୍ଥା ଚାଲୁ ରହିଥିଲା ଓ ପ୍ରତ୍ୟହ ବିଚ୍ଛନ୍ଦବାବୁଙ୍କ ବସାରୁ ସମ୍ପାଦକୀୟ ଆଣିବା ଦାୟିତ୍ୱ ଥିଲା ମୋ ଉପରେ । ପ୍ରାୟ ବର୍ଷେ ପର୍ଯ୍ୟନ୍ତ ପ୍ରତ୍ୟହ ମୁଁ ତାଙ୍କ ସହିତ ସାକ୍ଷାତ କରି ମଧ୍ୟ ଦିନେ ତାଙ୍କର ବିରକ୍ତିଭାବ ଲକ୍ଷ୍ୟ କରି ନ ଥିଲି । ସବୁବେଳେ ମୁହଁରେ ତାଙ୍କର ହସ । ସେ ହସରୁ ଯେପରି ଅମୃତ ଝରି ପଡ଼ୁଥିଲା । ଜୀବନରେ ମୁଁ ସେ ହସ କଦାପି ଭୁଲିବି ନାହିଁ ଓ ତାଙ୍କ କଥାର ମାଧୁର୍ଯ୍ୟ ମୁଁ ବୁଢ଼ା ହେଲିଣି ତଥାପି ଅନ୍ୟ କେଉଁଠି ପାଉନାହିଁ । ଖୋଜୁଛି ହୁଏତ ପରପାରରେ ମିଳିପାରେ ।

# ଧନ୍ୟ ମଣେ ପୂଜି ତୁମର ସ୍ମୃତି

( ରାଗ—ବଙ୍ଗଳା )

**ଶ୍ରୀ ବଂଶୀଧର ମିଶ୍ର**, ଆର.ଡ.ସି. ଅଫିସ, କଟକ

ଛନ୍ଦର ସାଧକ ହେ ଛନ୍ଦ ଗୁରୁ
ଆଜ ତବ ପୂତ ପ୍ରତିଭା ସ୍ମରୁ ।
ବରଷ ବରଷ ଯାଇଛୁ ବିତି
ଲଭିନାହିଁ ମନୁ ତୁମର ସ୍ମୃତି ।
ବରଷକ ପରେ ! ପୂଜା କରୁ ଭଞ୍ଜ ମଣ୍ଡପ ପରେ ।୧।

ଭଞ୍ଜ ସାହିତ୍ୟର ସାଧକବର
ଭଞ୍ଜ ସାହିତ୍ୟର କଲ ପ୍ରସାର ।
ଭଞ୍ଜ ସାହିତ୍ୟଠୁଁ ସାହିତ୍ୟ ନାହିଁ
ଭଞ୍ଜ ସାହିତ୍ୟର ଚରଚ୍ଚା ପାଇଁ ।
କଳିଙ୍ଗ ଭାରତୀ ! ପ୍ରତିଷ୍ଠା କରିଲ ହେ ମହାମତି ।୨।

ଉତ୍କଳ ଯୁବ ସାହିତ୍ୟ ସମାଜ
ଆଉ ଏକ କୃତ୍ତି ବିରାଜେ ଆଜ ।
ଗଢ଼ିଥିଲ ମନେ ପୋଷି ସୁଆଶା
ଯୁବମାନେ ଦେଶ ଜାତି ଭରସା !
ଦେଲ ତାଙ୍କୁ ଶିକ୍ଷା ! ପ୍ରାଚୀନ ସାହିତ୍ୟ ହେଉ ସୁରକ୍ଷା ।୩।

ପାଇ ତୁମଠାରୁ ମହତ ଶିକ୍ଷା
ଲଭି ତୁମଠାରୁ ମହତ ଦୀକ୍ଷା
ଆଦ୍ୟ ଗୁରୁ ରୂପେ ତୁମକୁ ବରି
ତୁମର ନାମରେ ଶପଥ କରି
ମନ ପ୍ରାଣ ଢାଳି ! ଭଞ୍ଜ ସାହିତ୍ୟ ହେଲା ଜପାମାଳି ।୪।

ଆରମ୍ଭ କରିଲ ଭଞ୍ଜ ଜୟନ୍ତୀ
ଆଲୋଚନା ହେଲ ଭଞ୍ଜଙ୍କ କୃତି ।
କବି, ବାଗ୍ମୀ, ବକ୍ତା, ଚିନ୍ତି ଚିତ୍ତରେ
ଭଞ୍ଜ ସାହିତ୍ୟରେ ଯେ ଦୀପ୍ତିରେ
କରି ଶୁଦ୍ଧ ମନ ! ସନ୍ତୁଷ୍ଟ କରିଲ ଶ୍ରୋତାଙ୍କ ମନ ।୫।

ଭଞ୍ଜ ଜନ୍ମଭୂମିରେ ହେ ନିର୍ମିତ
ସାହିତ୍ୟ ସମାଜର ପ୍ରତିଷ୍ଠିତ
କଳିଙ୍ଗ ଗ୍ରନ୍ଥାଗାରେ କିର୍ତ୍ତି
ରହିଥାଉ ଚିରେ ନ ହେଉ ଶେଷ
ସ୍ୱର୍ଗଧାମେ ରହି ! ଏହି ସ୍ମୃତିରେ ପ୍ରାଣେ ଦେଉଥିବ ତୃ ।୬।

ତୁମ ପ୍ରତିଷ୍ଠିତ ଏମନ୍ତ କୃତି
ଉତ୍କଳମାତରେ ରଖି ନିତ୍ୟେ
ତୁମର ଆଦର୍ଶ ତୁମରି ନୀତି
ପାଳନ କରନ୍ତୁ ପ୍ରତି ବରଷ
କଳିଙ୍ଗ ଭାରତୀ ! ଧନ୍ୟ ମଣେ ପୂଜି ତୁମରି ସ୍ମୃତି ।୭।



# ସ୍ୱଚ୍ଛନ୍ଦ ଛନ୍ଦ ଗୀତିକା

( ରାଗ ଚୈଖି )

**ଶ୍ରୀ କୁଳମଣି ମହାରଣା**

ଶୁଣିମା ବିବୁଧଜନ     ଧୀର ଚିତ୍ତେ ନିବେଦନ
ସ୍ୱଚ୍ଛନ୍ଦଛନ୍ଦ ଗୀତିକା  ଗ୍ରନ୍ଥେ ଜଣାଣ
ନାମ ସ୍ୱଚ୍ଛନ୍ଦ ଚରଣ     ଆଶ୍ରିତଚ୍ଛନ୍ଦାଚରଣ
ଆଜ ପୁଣ୍ୟଜୟନ୍ତୀରେ  କରି ସ୍ମରଣ
କରୁଅଛୁଁ ଅଶ୍ରୁତର୍ପଣ
ଜୀବିତରେ ଦେଇନାହୁଁ  ଯୋଗ୍ୟ ସମ୍ମାନ । ୧ ।

ସ୍ୱ-ନୋହେଁ ଛନ୍ଦହୀନ     ବିଶେଷେ ବିଶିଷ୍ଟ ଯେଣ
ଛନ୍ଦରେ  ଥିଲା ପୂରିତ  ତବ ଜୀବନ
ହୋଇଣ ଖଞ୍ଜ ଚରଣ     ଭଞ୍ଜରେ କରି ବରଣ
ଗଢ଼ିଲ  କଳିଙ୍ଗଭାରତୀ  ଅନୁଷ୍ଠାନ
ଶୁଣିଲ  ଉପହାସମାନ
ନ ରହି ନୀରବ  କଲ  କର୍ମ  ସାଧନ । ୨ ।

ତବ ବାକ୍ୟ କେତେପଦ     ଅଟେ ଅମୂଲ୍ୟ ସମ୍ପଦ
ମରିଗଲେ ବାପଧନ କରିବ ମନ
ମାଆ ପିନ୍ଧେ ଛିଣ୍ଡାକନା     ପାଠ ଦେଲ ବାରାଙ୍ଗନା
ଚିହ୍ନାଇ  ଦେଉଛି  ନିଜ ବାପ ନ ଚିହ୍ନ
ମଣୁଛି ପ୍ରଲାପ  ବଚନ
ଉପଇନ୍ଦ୍ର ଦେଶ କୁଆ ନୁହନ୍ତି ଶ୍ୱାନ । ୩ ।

ଯେବେ ଉଠିବେ  ଗରଜି     ଜାତି ଶଂଖ  ଯିବେ ବାଜି
ଶୁଦ୍ଧ ଓଡ଼ିଶୀ ହୋଇବ ଦେଶ ଭୂଷଣ
ଉପେନ୍ଦ୍ରଭଞ୍ଜ ଜୟନ୍ତୀ     ଆରମ୍ଭିଲ ମହାମତି
ଗଢ଼ିଗଲ ଉପଯୁକ୍ତ  ଦାୟାଦମାନ
ହୃଦାନନ୍ଦ, ରଜତ ପୁଣ
ମୁରାରି, ଶରତ,  ଶୈଳେଶ୍ୱର ପ୍ରମାଣ । ୪ ।

ଆହେ ଅମର ସାଧକ     ରଖିଗଲ ଜାତି ଟେକ
ପୁରପଲ୍ଲୀରୁ  ଶୁଭୁଛି  ତବ ସର୍ଜନ
ଉତ୍କଳ କଳାମଣ୍ଡିତ     ଶୁଦ୍ଧ ଓଡ଼ିଶୀ ସଙ୍ଗୀତ
ଗାଉଛନ୍ତି ଓଡ଼ିଆଏ  କରି  ଗର୍ଜନ
କୁଳମଣି କରେ  ଜଣାଣ
ଅମର ପୁରୁ ଆଶିଷ କର ବର୍ଷଣ । ୫ ।



# ରବି ଋତୁରେ ଜଳସେଚନ ସୁବିଧା ଥିବା ବିଭିନ୍ନ କିସମ ଜମି ପାଇଁ ଅଧିକ ଅମଳକ୍ଷମ ଧାନ ବିହନ

| ଜମି ପ୍ରକାର | ବିହନ କିସମ | କେତେ ଦିନରେ ଅମଳ ହୁଏ |
|---|---|---|
| **ଟିପ ଓ ମଝିଆଳ ଜମି** | ସୁଫଳା | ୧୦୫ |
| | ପାରିଜାତ | ୧୧୦ |
| | ଅନ୍ନପୂର୍ଣ୍ଣା | ୧୧୦ |
| | ବାଲା | ୧୧୦ |
| | କାବେରୀ | ୧୧୫ |
| | ପୂଷା ୨-୨୧ | ୧୧୫ |
| | କଳିଙ୍ଗ-୨ | ୧୨୦ |
| **ମଝିଆଳ ଓ ଗହିର** | ରତ୍ନା | ୧୨୫ |
| | ପଦ୍ମା | ୧୨୫ |
| | କୁମାର | ୧୩୦ |
| | ହେମ | ୧୪୦ |
| | ଜୟା | ୧୪୦ |
| | ସୋନା | ୧୪୦ |
| | ଆଇ. ଆର-୮ | ୧୪୫ |
| | ଜୟନ୍ତୀ | ୧୪୫ |
| | ରାଜେଶ୍ୱରୀ | ୧୪୫ |
| | ଆଇ. ଆର-୨୦ | ୧୪୫ |
| | ଶକ୍ତି | ୧୪୫ |
| | ବିଜୟା | ୧୫୦ |

**କୃଷି ନିର୍ଦ୍ଦେଶାଳୟ**
ଓଡ଼ିଶା, ଭୁବନେଶ୍ୱର

## ଓଡ଼ିଶା ସାହିତ୍ୟ ଏକାଡେମୀ
## ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ
## ଓଡ଼ିଶା ଲଳିତକଳା ଏକାଡେମୀ

ଭୁବନେଶ୍ୱର-୭୫୧୦୦୬

### ଯେ କୌଣସି ମର୍ଯ୍ୟାଦାସମ୍ପନ୍ନ ଗ୍ରନ୍ଥାଗାର ପାଇଁ ଅପରିହାର୍ଯ୍ୟ—

* ସାହିତ୍ୟ ଓ ସଂସ୍କୃତି ବିଷୟକ ଗବେଷଣାମୂଳକ ଜ୍ଞାନ ଆହରଣ ପାଇଁ
* ନୃତ୍ୟ ସଙ୍ଗୀତ, ନାଟ୍ୟକଳା ସମ୍ପର୍କରେ ବୈଷୟିକ ଓ ତାତ୍ତ୍ୱିକ ଜ୍ଞାନ ପାଇଁ
* ଚିତ୍ର, ଭାସ୍କର୍ଯ୍ୟ ବିଷୟକ ତାତ୍ତ୍ୱିକ ଜ୍ଞାନ ଆହରଣ ପାଇଁ ଏକାଡେମୀ ଦ୍ୱାରା ପ୍ରକାଶିତ ୧୩୮ ଖଣ୍ଡ ମୂଲ୍ୟବାନ ଗ୍ରନ୍ଥ ଏବଂ ଗବେଷଣାମୂଳକ ସାହିତ୍ୟ ପତ୍ରିକା 'କୋଣାର୍କ' ର ଏ ପର୍ଯ୍ୟନ୍ତ ପ୍ରକାଶିତ ସମସ୍ତ ସଂଖ୍ୟା ଏକାନ୍ତ ଆବଶ୍ୟକ ।

**ରିହାତି**—ସ୍କୁଲ, କଲେଜ, ରେଜିଷ୍ଟାର୍ଡ଼ ପାଠାଗାର ଓ ସାଧାରଣ ଅନୁଷ୍ଠାନକୁ ୨୦%, ପୁସ୍ତକ ବିକ୍ରେତାଙ୍କୁ ୨୫% ।
ପୁସ୍ତକ ତାଲିକା ଏବଂ ବ୍ୟବସାୟିକ ସର୍ତ୍ତପାଇଁ ଉପର ଠିକଣାରେ ଯୋଗାଯୋଗ ସ୍ଥାପନ କରନ୍ତୁ ।

*With Best Compliments from :*



# SHAILASREE ENTERPRISERS

B-33, INDUSTRIAL ESTATE, CUTTACK



